# ଉତ୍କଳ ପ୍ରସଙ୍ଗ

**The Utkal Prasanga**
**July 2011**

| ୬୭ ଭାଗ | ୧୨ଶ ସଂଖ୍ୟା | ଆଷାଢ଼-ଶ୍ରାବଣ | ଜୁଲାଇ - ୨୦୧୧ |
|---|---|---|---|

**ସୁରେନ୍ଦ୍ର ନାଥ ତ୍ରିପାଠୀ**
ପ୍ରମୁଖ ଶାସନ ସଚିବ

**ଡକ୍ଟର ହୁସେନ ରବିଗାନ୍ଧୀ**
ସମ୍ପାଦକ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

ସମ୍ପାଦନା ସହଯୋଗୀ
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**
**ସଚିଦାନନ୍ଦ ବାରିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ :
**ରାଜୁ ସିଂ ଓ ମନୋରଂଜନ ମହାନ୍ତି**

କମ୍ପ୍ୟୁଟର ସେଟିଂ ଓ ଡିଜାଇନିଂ
**ନିଯୁକ୍ତି ଖବର ପ୍ରକାଶନ**
ଭୁବନେଶ୍ୱର-୧୦

ପ୍ରତିଖଣ୍ଡ : ଟ.୫.୦୦


---




ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।



ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧

ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissa.gov.in
ଫୋନ : ୦୬୭୪-୨୫୩୦୨୧୧

# ସୂଚୀ


| | | | |
|---|---|---|---|
| ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା : ଏକ ଗଣପର୍ବ | ପ୍ରଫେସର ବୈଷ୍ଣବ ଚରଣ ସାମଲ | ......... | ୧ |
| ବାହୁବିହୀନ ବାସୁଦେବ ଶ୍ରୀଜଗନ୍ନାଥ | ରଜତ କୁମାର କର | ......... | ୪ |
| ଶ୍ରୀଗୁଣ୍ଡିଚା ଯାତ (କବିତା) | ଡ଼ଃ ଅମୂଲ୍ୟ ମହାପାତ୍ର | ......... | ୬ |
| ଶ୍ରୀମନ୍ଦିର ସେବାରେ ଆଳତି ଓ ସେବାକାରୀ ସେବକ | ଡଃ ରମାକାନ୍ତ କର | ......... | ୭ |
| ଜଣେ ମିସନାରୀଙ୍କ ଦୃଷ୍ଟିରେ 'ଶ୍ରୀଗୁଣ୍ଡିଚା' | ଡକ୍ଟର ବଳରାମ ଦାସ | ......... | ୯ |
| କପିଳ ସଂହିତାରେ ଶ୍ରୀକ୍ଷେତ୍ର | ଡକ୍ଟର ଉମେଶ ଚନ୍ଦ୍ର ଚିହ୍ନରା | ......... | ୧୨ |
| ସମର୍ପଣ (କବିତା) | ମିଶ୍ର ସତ୍ୟନାରାୟଣ | ......... | ୧୬ |
| ଭାରତୀୟ ଦର୍ଶନରେ ପୁରୁଷୋତ୍ତମ ଜଗନ୍ନାଥ | ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର | ......... | ୧୭ |
| ଚକାଆଖି (କବିତା) | ପରୀକ୍ଷିତ ମିଶ୍ର | ......... | ୨୧ |
| ଓଡ଼ିଆ ସଂସ୍କୃତିରେ ଶ୍ରୀଜଗନ୍ନାଥ ଓ ରଥଯାତ୍ରା | ଡକ୍ଟର ହରିହର କାନୁନ୍‌ଗୋ | ......... | ୨୨ |
| ଶ୍ରୀଜଗନ୍ନାଥ ଚେତନା ଓ ଭକ୍ତକବି ବଳରାମ ଦାସ | ଡକ୍ଟର ତ୍ରିନାଥ ପଟ୍ଟନାୟକ | ......... | ୨୬ |
| ସନ୍ଥକବି ଭୀମଭୋଇ ଓ ଶ୍ରୀଜଗନ୍ନାଥ | ଡକ୍ଟର ଉଦ୍ଧବ ଚରଣ ନାୟକ | ......... | ୨୯ |
| ଓଡ଼ିଆ ଭକ୍ତି ସଙ୍ଗୀତରେ ଶ୍ରୀଜଗନ୍ନାଥ ଚେତନା | ଡକ୍ଟର ଶ୍ରୀଚରଣ ଦାସ | ......... | ୩୨ |
| ଜଗନ୍ନାତ ଜଗନ୍ନାଥ | ଦେବାଶୀଷ ଚକ୍ରବର୍ତ୍ତୀ | ......... | ୩୬ |
| ମାଣିକ | ସୁଧୀର ମାନସିଂହ | ......... | ୩୯ |
| ଶ୍ରୀଜଗନ୍ନାଥଙ୍କ ସଂସ୍କୃତିରେ ଶ୍ରୀଲକ୍ଷ୍ମୀ | ଡଃ ତୁଳସୀ ଓଝା | ......... | ୪୨ |
| କ୍ଷେତ୍ର ଶ୍ରୀପୁରୁଷୋତ୍ତମ | ପ୍ରମୋଦ କୁମାର ନାୟକ | ......... | ୪୯ |
| ମହୋଦଧିର ମହାତୀର୍ଥ ସ୍ୱର୍ଗଦ୍ୱାର | ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର | ......... | ୫୩ |
| ଜଗନ୍ନାଥ ଯେ ଷୋଳକଳା | ଅଧ୍ୟାପକ ବିକ୍ରମ କେଶରୀ ବର୍ମା | ......... | ୫୯ |
| କଳା ଠାକୁର(କବିତା) | ଗଣେଶ ଚନ୍ଦ୍ର ଦାଶ | ......... | ୬୦ |
| ତାଳଧ୍ୱଜ ରଥରେ ଚକସଂଖ୍ୟାର ତାତ୍ପର୍ଯ୍ୟ | ମହୀମୋହନ ତ୍ରିପାଠୀ | ......... | ୬୧ |
| ମହାପ୍ରଭୁ (କବିତା) | ଶୁଭସ୍ମିତା ମହାନ୍ତି | ......... | ୬୨ |
| ଜଗନ୍ନାଥସ୍ୱାମୀ ନୟନ ପଥଗାମୀ ଭବତୁ ମେ | ଉର୍ମିଳା ମିଶ୍ର | ......... | ୬୩ |
| ଶ୍ରୀଜଗନ୍ନାଥଙ୍କ ସେବାରେ ରାଘବ ଦାସ ମଠ | ଅପୂର୍ବ ରଂଜନ ରାୟ | ......... | ୬୫ |
| କଳ୍ପବଟ (କବିତା) | ଶ୍ୟାମ ପ୍ରକାଶ ସେନାପତି | ......... | ୬୭ |
| ସତ୍ୟ ଶିବ ସୁନ୍ଦରର ଶୋଭାଯାତ୍ରା | ଡଃ ଦୁର୍ଯ୍ୟୋଧନ ଦାସ | ......... | ୬୮ |

| | | | |
|---|---|---|---|
| ବାଇଶି ପାହାଚ | କୃଷ୍ଣଚନ୍ଦ୍ର ସୁଆର | ......... | ୭୨ |
| ଇଚ୍ଛାମୟ (କବିତା) | ଡାକ୍ତର ସରୋଜିନୀ ଷଡଙ୍ଗୀ | ......... | ୭୪ |
| ପୁରୁଷୋତ୍ତମ କ୍ଷେତ୍ର ଓ ପଞ୍ଚତୀର୍ଥ | ଶ୍ରୀନିବାସ ଆଚାର୍ଯ୍ୟ | ......... | ୭୫ |
| ଦେହି ପଦ ପଲ୍ଲବମୁଦାରମ୍ | ମଧୁସୂଦନ ପଟ୍ଟନାୟକ | ......... | ୭୯ |
| କେଡେ ବିଚିତ୍ର ଠାକୁର ସତେ ! | ବସନ୍ତ କୁମାର ଦାସ | ......... | ୮୩ |
| ଶବର ଦେବତା ଜଗନ୍ନାଥ ଓ ବୌଦ୍ଧଧର୍ମ | କଲ୍ୟାଣ କୁମାର ପଣ୍ଡା | ......... | ୮୭ |
| ତୁମେ ପରା ମହାବାହୁ (କବିତା) | ଡକ୍ଟର ହେମନ୍ତ କୁମାର ଛୋଟରାୟ | ......... | ୯୦ |
| ବଲାଙ୍ଗୀରର ରଥଯାତ୍ରା | ଅଧ୍ୟାପକ ପବିତ୍ର ମୋହନ ବାରିକ | ......... | ୯୧ |
| ମନ୍ତ୍ରିଡୀର ପ୍ରାଚୀନ ଜଗନ୍ନାଥ ମନ୍ଦିର ଓ ରଥଯାତ୍ରା | ଡଃ ପ୍ରଫୁଲ୍ଲଚନ୍ଦ୍ର ମହାନ୍ତି(ହାରିତସ) | ......... | ୯୩ |
| ଯାଜପୁରର ଜଗନ୍ନାଥ ମନ୍ଦିର | ଡଃ ଜ୍ଞାନରଞ୍ଜନ ପତି | ......... | ୯୭ |
| ବଡ ଠାକୁର (କବିତା) | ସଚ୍ଚିଦାନନ୍ଦ ପ୍ରଧାନ | ......... | ୧୦୦ |
| ସତ୍ତ୍ୱଗୁଣ ସ୍ୱରୂପ ଗୁଣାତୀତ ପରଂବ୍ରହ୍ମ ବିଷ୍ଣୁ | ଈଶ୍ୱରଚନ୍ଦ୍ର ମହାପାତ୍ର | ......... | ୧୦୧ |
| ଅଚ୍ୟୁତାନନ୍ଦଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ | ଦିଲ୍ଲୀପ କୁମାର ବେହୁରା | ......... | ୧୦୪ |
| ବିଚିତ୍ର ଦେବତାର ବିଚିତ୍ର ଲୀଳା | ଡକ୍ଟର ସିଦ୍ଧାର୍ଥ କାନୁନ୍‌ଗୋ | ......... | ୧୦୬ |
| ଶ୍ରୀପୁରୁଷୋତ୍ତମଙ୍କ ଉପାସନା ପଦ୍ଧତିର କ୍ରମବିକାଶ | ପଦ୍ମନାଭ ମହାପାତ୍ର | ......... | ୧୦୮ |
| ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ଓ ରଥଯାତ୍ରାର ଆରମ୍ଭ | ପୀତାମ୍ବର ପ୍ରଧାନୀ | ......... | ୧୧୨ |
| ବସୁପ୍ରହରାଜ ଓ ଶ୍ରୀଜଗନ୍ନାଥ ପ୍ରସଙ୍ଗ | ନିରଞ୍ଜନ ରଥ | ......... | ୧୧୫ |
| ହାତରେ ମୋ ମୁଠା ମୁଠା ଶରଧାବାଲି | ପୂର୍ଣ୍ଣଚନ୍ଦ୍ର ଦାସ | ......... | ୧୧୬ |
| ଅମୃତ ଇଂଗିତ (କବିତା) | ରକ୍ଷକ ନାୟକ | ......... | ୧୧୯ |
| ସର୍ବଧର୍ମ ସମନ୍ୱୟ ଭାବ ଓ ରଥଯାତ୍ରା | ପ୍ରଭାତ କୁମାର ନନ୍ଦ | ......... | ୧୨୦ |
| ଶ୍ରୀଜଗନ୍ନାଥ ଓ ନୀଳଚକ୍ରେ ପତିତପାବନ ବାନା | ସୁରେଶ କୁମାର ପ୍ରଧାନ | ......... | ୧୨୩ |
| ଜଗବନ୍ଧୁ ହେ ଗୋସାଇଁ...! (କବିତା) | ଇଂଜିନିୟର ରଘୁନାଥ ପାତ୍ର | ......... | ୧୨୫ |
| ଉତ୍କଳର ପ୍ରଭୁ ଜଗତ ବିଖ୍ୟାତ (କବିତା) | କାଞ୍ଚନ ମିଶ୍ର | ......... | ୧୨୬ |
| ଜଗତ ଠାକୁର (କବିତା) | କୃଷ୍ଣ ମିଶ୍ର | ......... | ୧୨୬ |
| ଏଇଠି ରହିବି ବସି (କବିତା) | ଚନ୍ଦ୍ରଶେଖର ପଣ୍ଡା | ......... | ୧୨୭ |
| ଦେଖ ସେ ଚକାନୟନ (କବିତା) | ଶକୁନ୍ତଳା ଆଚାର୍ଯ୍ୟ | ......... | ୧୨୮ |






ପ୍ରାଚୀନ କାଳର ସ୍କନ୍ଦ ପୁରାଣ, ବାମଦେବ ସଂହିତା ଓ ସୁତ ପୁରାଣରେ ବର୍ଣ୍ଣିତ ପୁରୁଷୋତ୍ତମ କ୍ଷେତ୍ର ପୁରୀକୁ ଶଙ୍ଖକ୍ଷେତ୍ର ଭାବରେ ବର୍ଣ୍ଣନା କରାଯାଇଛି ।

## ପୁରାଣ ବର୍ଣ୍ଣନା ଅନୁସାରେ ଶଙ୍ଖକ୍ଷେତ୍ରରେ ଅବସ୍ଥିତ ପ୍ରସିଦ୍ଧ ସ୍ଥାନମାନଙ୍କର ନାମ

୧. ବଳଭଦ୍ର, ଜଗନ୍ନାଥ, ସୁଭଦ୍ରା ଓ ସୁଦର୍ଶନ
୨. ଶ୍ରୀକ୍ଷେତ୍ରେଶ୍ୱରୀ ବିମଳା
୩. ଶ୍ରୀମହାଲକ୍ଷ୍ମୀ
୪. ଉତ୍ତର ଦୁର୍ଗ
୫. ବାଟମଙ୍ଗଳା
୬. ଗରୁଡ଼ସ୍ତମ୍ଭ
୭. ଭୋଗମଣ୍ଡପ
୮. କଳ୍ପବୃକ୍ଷ
୯. ରୋହିଣୀକୁଣ୍ଡ
୧୦. ବାଟଗଣେଶ
୧୧. ଉଚ୍ଛ ଗଣପତି
୧୨. ଶ୍ରୀସରସ୍ୱତୀ ଦେବୀ
୧୩. ନବଗ୍ରହ
୧୪. କୋଣାର୍କ ସୂର୍ଯ୍ୟଦେବ
୧୫. ପାଦପଦ୍ମ
୧୬. ଯଜ୍ଞବଟ
୧୭. ଅଗ୍ନେଶ୍ୱର
୧୮. ଇନ୍ଦ୍ରାଣିଦେବୀ
୧୯. କ୍ଷେତ୍ରପାଳ
୨୦. ସ୍ନାନ ଭୈରବୀ
୨୧. ମୁକ୍ତେଶ୍ୱରୀ
୨୨. ଛତ୍ରକାଳୀ
୨୩. ବାଟ ମାର୍କେଣ୍ଡେୟ
୨୪. କାତ୍ୟାୟନୀ
୨୫. ଗୋପେଶ୍ୱର
୨୬. ବେଦ କାଳୀ
୨୭. ପାତାଳେଶ୍ୱର
୨୮. ଭୁବନେଶ୍ୱରୀ
୨୯. ବୈକୁଣ୍ଠେଶ୍ୱର
୩୦. ଯାଜ୍ଞ୍ୟଶ୍ୱେରୀ
୩୧. ଈଶାନେଶ୍ୱର
୩୨. ଶୀତଳା ଦେବୀ
୩୩. ପାକଶାଳା
୩୪. ଦକ୍ଷିଣେଶ୍ୱର
୩୫. କୁଣ୍ଡଳେଶ୍ୱର
୩୬. ରାମ ଚୈତନ୍ୟ ମନ୍ଦିର
୩୭. ବରଢେି ହନୁମାନ
୩୮. ନିର୍ମାଲ୍ୟ ହନୁମାନ
୩୯. ଅଳକା ବାଟିକା
୪୦. ଚକ୍ର ନାରାୟଣ
୪୧. ରାମେଶ୍ୱର
୪୨. ଚତୁର୍ଧାମ
୪୩. କାନପଟା ହନୁମାନ
୪୪. ନିଳାଦ୍ରୀ ବିହାରୀ
୪୫. ବଢେିଶ୍ୱର
୪୬. ଶିଆଳି ଲଟା
୪୭. କୋଇଲି ବୈକୁଣ୍ଠ
୪୮. ତପସ୍ୱୀ ହନୁମାନ
୪୯. ସୁବର୍ଣ୍ଣ କୂପ
୫୦. ଆନନ୍ଦ ବଜାର
୫୧. ଦେବସ୍ନାନ ମଣ୍ଡପ
୫୨. ମେଘନାଦ ପାଚେରୀ
୫୩. ସିଂହଦ୍ୱାର (ପୂର୍ବଦ୍ୱାର)
୫୪. ଅରୁଣ ସ୍ତମ୍ଭ
୫୫. ବଡ଼ଛାଟ ମଠ
୫୬. ଛାଉଣି ମଠ
୫୭. ପଜନତା
୫୮. ପ୍ରହରୀ ହନୁମାନ
୫୯. ଦକ୍ଷିଣ ଦ୍ୱାର
୬୦. ଦୁର୍ଗାମାଧବ
୬୧. ମଙ୍ଗଳେଶ୍ୱରୀ
୬୨. ପଶ୍ଚିମ ଦ୍ୱାର
୬୩. ଉତ୍ତର ଦ୍ୱାର
୬୪. ଶ୍ରୀଲୋକନାଥ
୬୫. ରାମେଶ୍ୱର
୬୬. କାନ୍ଦୁ ନୃସିଂହ
୬୭. କାନ୍ଦୁ ଆଶ୍ରମ
୬୮. ନିକୁମ୍ଭିଳାବଟ
୬୯. ହରଚଣ୍ଡୀ
୭୦. ଚାମୁଣ୍ଡେଶ୍ୱରୀ
୭୧. ବନଦୁର୍ଗା
୭୨. ବାସେଳୀ
୭୩. କପାଳମୋଚନ
୭୪. ମଣିକର୍ଣ୍ଣିକା ତୀର୍ଥ
୭୫. ଘାଟମଙ୍ଗଳା
୭୬. ଭଗବତୀ
୭୭. ମାର୍କେଣ୍ଡେଶ୍ୱର
୭୮. ମାର୍କେଣ୍ଡେୟ ତୀର୍ଥ
୭୯. ସପ୍ତମାତୃକା
୮୦. ଅଳମ୍ବା ଦେବୀ
୮୧. ଅଠରନାଥ
୮୨. ମକରଧ୍ୱଜ ହନୁମାନ
୮୩. ଭାର୍ଗବୀ ନଦୀ
୮୪. ମୁକ୍ତାଶ୍ୱର
୮୫. ବାଟମଙ୍ଗଳା
୮୬. କପାଟେଶ୍ୱର
୮୭. ଭିଲ୍ୱେଶ୍ୱର
୮୮. ସିଦ୍ଧ ହନୁମାନ
୮୯. ଇନ୍ଦ୍ରଦ୍ୟୁମ୍ନ ତୀର୍ଥ
୯୦. ନୀଳକଣ୍ଠେଶ୍ୱର
୯୧. ଆଦି ନୃସିଂହ
୯୨. ଗୁଣ୍ଡିଚା ମଣ୍ଡପ
୯୩. ଅର୍ଦ୍ଧ ସୁଶାନି (ମାଉସୀମା)
୯୪. ମାର୍ଚ୍ଚିକା ଦେବୀ
୯୫. ଚର୍ଚ୍ଚିକା ଦେବୀ
୯୬. ଷୋଡ଼ଶ ପୁତ୍ରୀ
୯୭. ନାରାୟଣୀ
୯୮. ଅଙ୍ଗିରାଶ୍ରମ
୯୯. ଅଙ୍ଗିରାବଟ
୧୦୦. ଦକ୍ଷିଣକାଳୀ
୧୦୧. ଉଗ୍ରେଶ ଆଶ୍ରମ
୧୦୨. ଶ୍ୱେତଗଙ୍ଗା
୧୦୩. ମୁକ୍ତିଶୀଳା
୧୦୪. ଆଦିଶଙ୍କର ପୀଠ
୧୦୫. ସ୍ୱର୍ଗଦ୍ୱାର
୧୦୬. ବରାହୀ ଦେବୀ
୧୦୭. ଶ୍ୟାମାକାଳୀ
୧୦୮. ବଟ ହନୁମାନ
୧୦୯. ଚକ୍ରତୀର୍ଥ
୧୧୦. ଚକ୍ର ନାରାୟଣୀ
୧୧୧. ମହୋଦଧୀ ତୀର୍ଥ
୧୧୨. ଜଗନ୍ନାଥ ବଲ୍ଲଭ
୧୧୩. କାଶୀ ବିଶ୍ୱନାଥ
୧୧୪. ବିଶ୍ୱେଶ୍ୱରୀ
୧୧୫. ନରେନ୍ଦ୍ର ସରୋବର



# ଶ୍ରୀଜଗନ୍ନାଥାଷ୍ଟକ

ଗୋପଅଙ୍ଗନା–ବଦନ– କମଳୁଁ ଯେ ମଧୁପାନ
କଲେକ ଆବର ଯା'ଙ୍କ ମୁରଲୀ–ନାଦ,
କାଳିନ୍ଦୀ–ତଟ–ବିପିନ କଲାକ ମୋଦେ ମଗନ
ରମା ଶମ୍ଭୁ ଆଦିରେ ଯେ ପୂଜିତ–ପଦ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୧)

ବାମକରେ ମୁରଳିକା ଶିରେ ଶିଖିପୁଚ୍ଛ ଶିଖା
କଟୀତଟେ ପୀତାମ୍ବର ଯା'ଙ୍କ ଶୋଭିତ,
କଟାକ୍ଷବାଣ ପ୍ରହାରି ମୋହନ୍ତି ଯେ ଗୋପନାରୀ
ଶ୍ରୀବୃନ୍ଦାକାନନେ ନିତ୍ୟ ହୋଇଣ ସ୍ଥିତ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୨)



ଯେହୁ ମହୋଦଧିତୀରେ ସ୍ୱର୍ଣ୍ଣକାନ୍ତି ନୀଳାଦ୍ରିରେ
ସ୍ଥିତ ମହାମନ୍ଦିରରେ ନିତ୍ୟ ରାଜିତ,
ସାଦରେ ସଙ୍ଗତେ ଘେନି ବଳଭଦ୍ର ଭଦ୍ରା ବେନି
ଦେବଙ୍କୁ ପୟରସେବା କରିଣ ଦତ୍ତ,
ପଥୁକି ମୋ' ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୩)

ଯେହୁ କୃପା–ପାରାବାର ନବନୀରଦ ରୁଚିର
ରମାବାଣୀ–ବିନୋଦନ କମଳାନନ,
ଲକ୍ଷକୋଟି ଦେବରାଜ ଶିରେ ଯା'ଙ୍କ ପଦରଜ
ବହନ୍ତି ବେଦାନ୍ତ ଯା'ଙ୍କୁ କରେ ବଖାଣ,
ପଥୁକି ମୋ' ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୪)



ଯେ ପ୍ରଭୁ କରୁଣାସିନ୍ଧୁ ଅଖିଳ ଜଗତବନ୍ଧୁ
ସିନ୍ଧୁ–ସୁତା–ଚିରି–ଇନ୍ଦୁ ଗମନ୍ତେ ରଥେ,
ବିପ୍ରଗଣ ପଥେ ମିଳି ଗାଆନ୍ତେ ସ୍ତୁତିଆବଳୀ
ଘେନା ଯେ କରନ୍ତି ସ୍ତୁତିକଥା ସୁଚିତ୍ତେ,
ପଥୁକି ମୋ' ନୟନପଥେ,
ହୁଅନ୍ତୁ ପ୍ରାଣସ୍ୱାମୀ ମୋ' ସେ ଜଗନ୍ନାଥେ । (୫)



ବିରଞ୍ଚି ଶିରଭୂଷଣ ପଦ୍ମପଳାଶଲୋଚନ
ନିଳାଦ୍ରି ବିହାରୀ ଯେ ଅନନ୍ତ–ମସ୍ତକେ,
ପୟର ଥାପି ଆସୀନ ସଦା ରସାନନ୍ଦ ଘନ
ମଗନ ଶ୍ରୀରାଧାଅଙ୍ଗ–ଆଶ୍ଳେଷ ସୁଖେ,
ପଥୁକି ମୋ’ ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ’ ସେ ଜଗନ୍ନାଥେ । (୬)

ନମାଗଇଁ ରାଜ୍ୟସୁଖ ନ ମାଗେଁ ମଣି ମାଣିକ୍ୟ
ନମାଗେଁ ନୟନ ନିଧି ବର କାମିନୀ,
ଯାହାଙ୍କ ଚରିତାବଳୀ ଗାଆନ୍ତି ଚନ୍ଦ୍ର ମଉଳି
ପରାଣ ଲୋଡ଼େ ମୋ’ ତାଙ୍କୁ ଦିନଯାମିନୀ,
ପଥୁକି ମୋ’ ନୟନ ପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ’ ସେ ଜଗନ୍ନାଥେ । (୭)

ଅସାର ସଂସାର ବନ୍ଧ ଛେଦ ମୋ’ ଖରେ ମୁକୁନ୍ଦ
ଅଥଳ ପାପପୟୋଧି ଦିଅ ଶୁଖାଇ,
ହେ ନାଥ ! ଦୀନ ଅନାଥ ପାଇଁ ଶାଶ୍ୱତ ନିଶ୍ଚିତ
ପ୍ରେମପତ୍ର କ୍ଷେତ୍ରେ ଏଥି ଅଛ ରୁହାଇ,
ପଥୁକି ମୋ’ ନୟନପଥେ
ହୁଅନ୍ତୁ ପ୍ରାଣସ୍ୱାମୀ ମୋ’ ସେ ଜଗନ୍ନାଥେ । (୮)



ଜଗନ୍ନାଥାଷ୍ଟକଂ ପୁଣ୍ୟଂ ଯଃ ପଠେତ୍ ପ୍ରଯତଃ ଶୁଚିଃ
ସର୍ବପାପ ବିଶୁଦ୍ଧାତ୍ମା ବିଷ୍ଣୁ ଲୋକଂ ସ ଗଚ୍ଛତି,
ପ୍ରାକୃତ ପଦେ ପୟାର ରଚିଲା ବିଚ୍ଛନ୍ଦ ଛାର
ସ୍ଥିରମନେ ଶୁଚିମନ୍ତ ହୋଇ ଗାଇଲେ,
ପାତକି–ପାତକମାନ ହୁଅଇ ହେଳେ ଦହନ
ଅନ୍ତେ ବିଷ୍ଣୁ ଲୋକେ ଗତି ହୁଏ ତା’ ଭଲେ,
ଜୟ ଜୟ ଶ୍ରୀଜଗନ୍ନାଥ
ନିତ୍ୟକାଳ ପଦେ ତୁମ୍ଭ ଲୋଟୁ ମୋ’ ମାଥ । (୯)




(ଓଡ଼ିଆ ରୂପାନ୍ତର : ବିଚ୍ଛନ୍ଦ ଚରଣ ପଟ୍ଟନାୟକ)

(ସଂସ୍କୃତରେ ଲିଖିତ ‘ଜଗନ୍ନାଥାଷ୍ଟକମ୍’କୁ ଶ୍ରୀଚୈତନ୍ୟ ମହାପ୍ରଭୁ ରଚନା କରିଥାନ୍ତୁ କି ଶ୍ରୀଶଙ୍କରାଚାର୍ଯ୍ୟ ରଚନା କରିଥାନ୍ତୁ, ତାହାର ଓଡ଼ିଆ ଅନୁବାଦ କରିଥିଲେ କବି ଓ ଅନୁବାଦକ ସ୍ୱର୍ଗୀୟ ବିଚ୍ଛନ୍ଦ ଚରଣ ପଟ୍ଟନାୟକ । କଟକରେ ୧୯୪୪ରେ ସେ ‘କଳିଙ୍ଗ ଭାରତୀ’ର ପ୍ରତିଷ୍ଠାତା ଓ ଭଂଜ ସାହିତ୍ୟର ପ୍ରସାରକ ଭାବେ ପରିଚିତ ଥିଲେ । ୧୯୪୨ରେ ସେ ଓଡ଼ିଶା ସରକାରଙ୍କଦ୍ୱାରା ଅନୁବାଦକ ଭାବେ ନିଯୁକ୍ତି ପାଇଥିଲେ । ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସଂପର୍କ ବିଭାଗରେ ‘ଉତ୍କଳ ପ୍ରସଙ୍ଗ’ ଓ ‘ଓଡ଼ିଶା ରିଭ୍ୟୁ’ର ସଂପାଦନା କାର୍ଯ୍ୟ ମଧ୍ୟ କରିଥିଲେ । ତାଙ୍କର ସୁପୁତ୍ର ଶ୍ରୀପୁରୁଷୋତ୍ତମ ପଟ୍ଟନାୟକଙ୍କ ସୌଜନ୍ୟରୁ ଏହା ପ୍ରାପ୍ତ ।)




# ରଥ ପଥ କେହି ନାହିଁ
# ସରବେ ଜଗତ ସାଇଁ ।



ଭାରତବର୍ଷ ବହୁ ଜାତି, ବହୁଭାଷା ଓ ବହୁ ଧର୍ମ ତଥା ସଂପ୍ରଦାୟର ଏକ ଯୌଥ ରାଷ୍ଟ୍ର । ପ୍ରତ୍ୟେକ ଜାତିର (ସେ ଭାଷା ଭିତ୍ତିକ ହେଉ କି ଧର୍ମ ବା ସଂପ୍ରଦାୟ ଭିତ୍ତିକ ହେଉ) ନିଜସ୍ୱ କେତେକ ପ୍ରତୀକ ରହିଛି । ତା'ର ପରିଚୟ ପାଇଁ ଏହି ପ୍ରତୀକଗୁଡ଼ିକ ପ୍ରମୁଖ ଭୂମିକା ନିର୍ବାହ କରିଛନ୍ତି ଓ କରୁଛନ୍ତି ।

କିନ୍ତୁ ସମଗ୍ର ଭାରତବର୍ଷର ଜାତି ସମୂହରେ ଓଡ଼ିଆ ଜାତିର ପ୍ରତୀକ ବା ଚିହ୍ନ ଶ୍ରୀଶ୍ରୀଜଗନ୍ନାଥଙ୍କ ପରି ଆଉ କୌଣସି ପ୍ରତୀକ ଜାତୀୟ ଜୀବନରେ ଏତେ ପ୍ରଭାବଶାଳୀ ଭୂମିକା ଗ୍ରହଣ କରି ପାରିନାହିଁ । ଓଡ଼ିଆ ଜାତି ଶହ ଶହ ବର୍ଷର ପରାଧୀନତା ମଧ୍ୟରେ କେବଳ ଶ୍ରୀଶ୍ରୀଜଗନ୍ନାଥଙ୍କୁ ନିଜର ପ୍ରତୀକ ଭାବେ ଦୃଢ଼ତାର ସହ ଆଲିଙ୍ଗନ କରି ସମୟର କ୍ରୂରତା ଓ ରୁକ୍ଷତାକୁ ସଫଳତାର ସହ ମୁକାବିଲା କରି ପାରିଥିଲା । ଏକ ବିଶାଳ ସାମ୍ରାଜ୍ୟ, ଏକ ସମୃଦ୍ଧ ନୌବାଣିଜ୍ୟ, ଏକ ସମୁଜ୍ଜଳ ସାଂସ୍କୃତିକ ପରମ୍ପରା, ଏକ ବିତ୍ତଶାଳୀ ରାଷ୍ଟ୍ରର ମର୍ଯ୍ୟାଦା, ଏକ ଅତି ଉନ୍ନତ ଭାଷା, ସାହିତ୍ୟର ଶୈଳୀ – ସବୁ କିଛି ହରାଇ ମଧ୍ୟ ଏହି ଜାତି ତିଷ୍ଠିଥିଲା ମାତ୍ର ଗୋଟିଏ ପ୍ରତୀକ – ଶ୍ରୀଶ୍ରୀଜଗନ୍ନାଥ ଓ ତାଙ୍କ ନାମରେ ନାମିତ ଏକ ସଂସ୍କୃତିର ଛାୟାରେ । ଏଇ ଟିକକ ଚିହ୍ନ ହିଁ ପୁନର୍ବାର ଏ ଜାତିକୁ ଇତିହାସର ମହାବାତ୍ୟା ତଥା ମହାସୁନାମିରୁ ରକ୍ଷା କରି ଏକ ଜାତି ଓ ପ୍ରାନ୍ତର ମର୍ଯ୍ୟାଦା ପ୍ରଦାନ କରିବାରେ ପ୍ରେରଣା ଦେଇଥିଲା ଏବଂ ସହାୟତା କରିଥିଲା ।

ଯେତେବେଳେ ଏଇ ଜାତିଟି– ଅର୍ଥାତ୍ ଓଡ଼ିଆ ଜାତିଟି ଯେକୌଣସି ପ୍ରାକୃତିକ, ରାଜନୈତିକ ବା ସାମାଜିକ ଦୁରବସ୍ଥାର ସମ୍ମୁଖୀନ ହୋଇଛି, ସେତେବେଳେ ସେ ଏଇ ପ୍ରତୀକ ବା ଚିହ୍ନଟିକୁ ବୁକୁରେ ରକ୍ଷାକବଚ ଭାବେ ଧାରଣ କରି ସେଇ ସଂକଟରୁ ମୁକୁଳିବାକୁ ଉଦ୍ୟମ କରିଛି ଏବଂ ସଫଳ ମଧ୍ୟ ହୋଇଛି । ସେ ସଂକଟ ରକ୍ତବାହୁର ଆକ୍ରମଣ ହେଉ କି କଳାପାହାଡ଼ର, ସେ ବିପଦ ତକି ଖାଁ ତରଫରୁ ହେଉ କି ମରହଟ୍ଟା ବର୍ଗୀ ବା ଇଷ୍ଟ ଇଣ୍ଡିଆ କମ୍ପାନୀ ତରଫରୁ – ଶ୍ରୀଶ୍ରୀଜଗନ୍ନାଥ ରୂପୀ ପ୍ରତୀକଟି ଓଡ଼ିଆ ଜାତିର 'ବୁଲେଟ୍ ପ୍ରୁଫ୍ ଜ୍ୟାକେଟ୍' ଭାବେ କାର୍ଯ୍ୟ କରିଛି । ପୁଣି ଯେତେବେଳେ ଏଇ ଜାତିଟିର ଅସ୍ମିତା ଓ ସମ୍ମାନ ବିପଦଗ୍ରସ୍ତ ହୋଇଛି, ଏହି ପ୍ରତୀକଟି– ଅର୍ଥାତ୍ ଶ୍ରୀଶ୍ରୀଜଗନ୍ନାଥ ପ୍ରତୀକରୁ ଜୀବନ୍ତ ମଣିଷରେ ରୂପାନ୍ତରିତ ହୋଇ ନିଜ ବଡଭାଇଙ୍କ ସହିତ କଳା–ଧଳା ଘୋଡା ଚଢ଼ି ସୁଦୂର କାଞ୍ଚି ମୁଲକ ଯାଏଁ ମଧ୍ୟ ଯୁଦ୍ଧ ଯାତ୍ରା ପାଇଁ ବାହାରି ପଡିଛନ୍ତି । ଏପରି ପ୍ରତୀକ ଅନ୍ୟାନ୍ୟ ଭାରତୀୟ ଜାତି ବା ସଂପ୍ରଦାୟ ପାଖରେ କାହିଁ ?

ସତ କହିବାକୁ ଗଲେ, ଶ୍ରୀଶ୍ରୀଜଗନ୍ନାଥ ଓଡିଆ ଜାତିର ଆଉ କେବଳ ଚିହ୍ନ ହୋଇ ରହିନାହାଁନ୍ତି, ସେ କେଉଁ ସ୍ମରଣାତୀତ କାଳରୁ ଏକ ଚେତନା ସ୍ୱରୂପ ଏ ଜାତିର ମନ –ଚିନ୍ତାରେ ଆସ୍ଥାନ ଜମାଇ ଏକ ପ୍ରାଂତୀୟ ପ୍ରତୀକରୁ ମହାଜାଗତିକ ସ୍ୱରୂପ ହୋଇ ଯାଇଛନ୍ତି । ଓଡ଼ିଆ ନିଜକୁ ନିଜେ ଚିହ୍ନି ନ ପାରୁ ବା ନିଜର ଗାରିମା ନିଜେ ବିଶ୍ୱର ଅନ୍ୟାନ୍ୟ ଜାତି ସକଳଂକ ଭିତରେ ପ୍ରସାରିତ ବା ପ୍ରଚାରିତ ନକରି ପାରୁ, କିନ୍ତୁ ନିଜର ପରିଚୟର ସର୍ବଶ୍ରେଷ୍ଠ ପ୍ରତୀକ ଶ୍ରୀଶ୍ରୀଜଗନ୍ନାଥଙ୍କ ସାଂସ୍କୃତିକ ବିଭବକୁ ଆଜି ସମଗ୍ର ବିଶ୍ୱରେ ବ୍ୟାପ୍ତ କରାଇ ପାରିଛି ।

ଓଡ଼ିଶୀ ନୃତ୍ୟ, ସଂଗୀତ, ଓଡ଼ିଆ ସାହିତ୍ୟ– ବିଶ୍ୱର ଅନେକ ଦେଶରେ ନିଜର ପରିଚୟ ନିଜେ ସୃଷ୍ଟିକରି ପାରିଛି । ସର୍ବୋପରି ଜଗନ୍ନାଥ ସଂସ୍କୃତି, ପରଂପରାକୁ ଦିଗଂତ ବିସ୍ତାରିତ କରି ଦେଶ ବିଦେଶରେ ଅନେକାନେକ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା ଓ ତତ୍‌ସହିତ ରଥଯାତ୍ରାର କାର୍ଯ୍ୟକ୍ରମ ଅନୁଷ୍ଠିତ କରାଇ ଓଡ଼ିଆ ଜାତି ନିଜର ମହନୀୟତାକୁ ବିଶ୍ୱର ବିଭିନ୍ନ ସଭ୍ୟତା ଭିତରେ କେବଳ ପ୍ରସାରିତ କରିନାହିଁ, ଅପିତୁ ଏକ ପ୍ରମୁଖ ସଭ୍ୟତାର ମାନ୍ୟତା ପ୍ରଦାନ କରାଇବାରେ ସମର୍ଥ ହୋଇପାରିଛି ।

ଗତକାଲିର ଓଡିଶାର ପରିଚୟ ଶ୍ରୀଶ୍ରୀଜଗନ୍ନାଥ ଥିଲେ ଏବଂ ଆଜି ବି ହୀରାକୁଦ, ରାଉରକେଲା, ପାରାଦ୍ୱୀପ, ସୁନାବେଡାମାନ ପ୍ରତିଷ୍ଠା ହୋଇ ମଧ୍ୟ ଓଡ଼ିଶାର ପରିଚୟ କିନ୍ତୁ ସେଇ ଶ୍ରୀଶ୍ରୀଜଗନ୍ନାଥ । ଯେତେ ଶିଳ୍ପ ନଗରୀ ଗଢ଼ି ଉଠୁ, ଯେତେ କଳା, ଭାସ୍କର୍ଯ୍ୟପୂର୍ଣ୍ଣ ଇମାରତ

ନିର୍ମିତ ହେଉ, ଯେତେ ଶ୍ରେଷ୍ଠ ବ୍ୟକ୍ତିତ୍ୱ ଜନ୍ମ ନିଅନ୍ତୁ, ସେମାନେ ଓଡ଼ିଶାର ଗର୍ବ ଓ ଗୌରବ ହେବେ ନିଶ୍ଚୟ, କିନ୍ତୁ ଓଡ଼ିଶାର ପରିଚୟ ହୋଇ ପାରିବେ ନାହିଁ। ଓଡ଼ଆ ଜାତି ଓ ଓଡ଼ିଶା ଦେଶର ଏକମାତ୍ର ପରିଚୟ ଶ୍ରୀଶ୍ରୀଜଗନ୍ନାଥ।

ଶବର (ଆଦିବାସୀ)ମାନଙ୍କର ହୃଦୟର ଦେବତା ନୀଳମାଧବ ସମୟକ୍ରମେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥରେ ବିବର୍ତ୍ତିତ– ଶାକ୍ତ, ଶୈବ, ଗାଣପତ୍ୟ, ତାନ୍ତ୍ରିକ, ବୌଦ୍ଧ ଓ ଜୈନମାନଙ୍କ ଧର୍ମଧାରାର ଏକତ୍ର ସମାହାରର ପ୍ରତୀକ ଶ୍ରୀଶ୍ରୀଜଗନ୍ନାଥ। ତେଣୁ ଉତ୍କଳୀୟ ବା ଓଡ଼ିଆ ଜାତି ପୂର୍ଣ୍ଣରୂପେ ଆର୍ଯ୍ୟ ନୁହଁ କି ପୂର୍ଣ୍ଣ ରୂପେ ଅନାର୍ଯ୍ୟ ବା ଦ୍ରାବିଡ ନୁହଁ। ଏ ଜାତି ସମଗ୍ର ମାନବ ଜାତିର ପ୍ରତୀକ– କୃଷ୍ଣ, ଶ୍ୱେତ ଓ ପୀତ–ଆଫ୍ରିକୀୟ, କକେସୀୟ ତଥା ମଂଗୋଲୀୟ।

ଆଜିର ରଥଯାତ୍ରା ଅବସରରେ ଜଗତର ନାଥ ନବ ଦିବସୀୟ ଯାତ୍ରାରେ ରଥାରୂଢ଼ ହୋଇ ଶ୍ରୀମନ୍ଦିରରୁ ବାହାରି ମାଉସୀ ଘର ବାଟେ ଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରିବେ। ଏହି ଯାତ୍ରା ଏକ ପ୍ରତୀକ। ସେ ପ୍ରତୀକ ହେଉଛି – ଓଡ଼ିଆ ଜାତିର ଜୟଯାତ୍ରା। ବିଭିନ୍ନ ଘାତ, ପ୍ରତିଘାତ ଭିତରେ ଯେଉଁ ଜାତି ନିଜର ସ୍ୱାଭିମାନ ଓ ଜାତୀୟତାକୁ ରକ୍ଷା କରି ସମୟ ସ୍ରୋତ ସହିତ ଆଗକୁ ଆଗକୁ ଗତି କରିପାରିଛି ଓ ଗତି କରୁଛି – ଏ ରଥଯାତ୍ରା, ତାହାରି ପ୍ରତୀକ।

ଶ୍ରୀଶ୍ରୀଜଗନ୍ନାଥ କେବଳ ଓଡ଼ିଶାର ହିନ୍ଦୁମାନଙ୍କର ପ୍ରତୀକ ବା ଚିହ୍ନ ନୁହଁନ୍ତି, ଓଡ଼ିଶାରେ ବସବାସ କରୁଥିବା ଅନ୍ୟାନ୍ୟ ଧର୍ମାବଲମ୍ବୀମାନେ ମଧ୍ୟ ଜଗନ୍ନାଥଙ୍କୁ ନିଜର ପ୍ରତୀକ ବା ପରିଚିତିର ମାଧ୍ୟମ ଭାବେ ଶତାବ୍ଦୀ ଶତାବ୍ଦୀ ହେଲା ଗ୍ରହଣ କରି ନେଇଛନ୍ତି। ତେଣୁ ଶ୍ରୀଶ୍ରୀଜଗନ୍ନାଥ କେବଳ ଏକ ଧର୍ମୀୟ ଦେବତା ନୁହଁନ୍ତି – ଏ ହେଉଛନ୍ତି ଏକ ଜାତିର ଚିହ୍ନ, ତାର ପରିଚୟ। ଏଇ ଜାତିଟି ବହୁ ଧର୍ମ ଓ ସଂପ୍ରଦାୟର ସମ୍ମିଶ୍ରଣରେ ଗଠିତ ହୋଇ ଥିଲେ ବି, ତାର ମୂଳାଧାର ଶ୍ରୀଶ୍ରୀଜଗନ୍ନାଥ। ଓଡ଼ିଶାର ଅହିନ୍ଦୁ ସଂପ୍ରଦାୟ ଜଗନ୍ନାଥଙ୍କ ଉପାସନା କରି ନପାରନ୍ତି, କିନ୍ତୁ ନିଜ ପରିଚୟର ପ୍ରତୀକ ଭାବେ ତାଙ୍କୁ ଗ୍ରହଣକରି ଗୌରବାନ୍ୱିତ ମନେ କରନ୍ତି।

ଆଜି ଓଡ଼ିଆଙ୍କ ସେଇ ଗର୍ବ ଓ ଗୌରବର ପ୍ରତୀକ ଶ୍ରୀଶ୍ରୀଜଗନ୍ନାଥ ସମଗ୍ର ବିଶ୍ୱର ଦେବତା – ସକଳ ଜାତି ସମୂହର ବନ୍ଦନୀୟ ପ୍ରାଣର ଠାକୁର, ରଥାସୀନ ହୋଇ ଜଗତ ପରିକ୍ରମା ପାଇଁ ଦେଖି ଦେଖି ବାହାରି ପଡିଛନ୍ତି ବଡଭାଇ ଓ ଅଳିଅଳି ସାନ ଭଗିନୀଙ୍କୁ ସାଥୀରେ ଧରି – ଛୋଟ ବାର୍ତ୍ତାଟିଏ ଦେବା ପାଇଁ ଯେ, ଗତକାଲି ପରି ଆଜି ବି ପରିବାର ହେଉଛି ସମାଜର ପ୍ରଥମ ସ୍ତମ୍ଭ। ଏହି ସ୍ତମ୍ଭ, ଅର୍ଥାତ୍ ପରିବାରଟି ଭାଙ୍ଗିଗଲେ, ସମାଜ ଦୁର୍ବଳ ହୋଇଯିବ ଏବଂ ଅଚିରେ ତାହା ଧ୍ୱଂସ ପ୍ରାପ୍ତ ହେବ ହିଁ ହେବ।

ଆଜି ବିପର୍ଯ୍ୟସ୍ତ ସମାଜର କାରଣ କ୍ରମଶଃ ଉଜୁଡି ଯାଇଥିବା ପାରିବାରିକ ସ୍ଥିତି। ପାରିବାରିକ ହିଂସା ଓ ଦ୍ୱେଷ ଆମ ସାମାଜିକ ବ୍ୟବସ୍ଥାର ସୁଦୃଢ଼ ଅଟ୍ଟାଳିକାକୁ ଭୂପତିତ କରାଇ ଦେବାକୁ ଯଥେଷ୍ଟ। ଯେତେ ପାର୍ଥିବ ସଂପଦ ଆହରଣ କଲେ ବି ପାରିବାରିକ ଜୀବନ ବିହୀନ ପାଶ୍ଚାତ୍ୟ ସମାଜରେ ପ୍ରକୃତ ଶାନ୍ତି କାହିଁ ? ଭାରତ ଏବଂ ବିଶେଷକରି ଓଡ଼ିଶା ନିଜର ସକଳ ପ୍ରକାର ଦୁଃଖ ଓ ଦୈନ୍ୟ ଭିତରେ କେବଳ ତାର ସୁଖୀ ପାରିବାରିକ ଜୀବନକୁ ନେଇ ମହାକାଳର କରାଳ ଝଞ୍ଜି–ବାତ୍ୟାକୁ ଶହ ଶହ ବର୍ଷ ଧରି ମୁକାବିଲା କରି ଆସିଛି। ଆଜି ସେହି ପରିବାର ଛିନ୍ନ ବିଛିନ୍ନ ହେବାରେ ଲାଗିଛି। ଯାହା ଆମ ସାଂସ୍କୃତିକ ପରିଚୟକୁ ଲୋପ କରି ଦେବାକୁ ବିଶେଷ ସମୟ ନେବ ନାହିଁ।

ରଥଯାତ୍ରା ଏହି ପାରିବାରିକ ଐକ୍ୟକୁ ନିଷ୍ଠାପର ଭାବେ ପାଳନ କରିବାର ବାର୍ତ୍ତା ପ୍ରଦାନ କରୁଛି। ଭକ୍ତି ଓ ଆଧ୍ୟାତ୍ମିକତାର ପୁନଃ ପୁନଃ ପ୍ରତିଷ୍ଠା, ପ୍ରେମ ଓ ସଂପ୍ରୀତିର ବାର୍ତ୍ତା ପୁନଃ ପୁନଃ ପ୍ରଚାର ତଥା ମାନବିକ ମୂଲ୍ୟବୋଧର ଜାତି ଜାତି ଓ ସଂପ୍ରଦାୟ ସଂପ୍ରଦାୟ ମଧ୍ୟରେ ଭ୍ରାତୃତ୍ୱ ତଥା ବନ୍ଧୁତ୍ୱର ଗାରିମାକୁ ପୁନଃ ପୁନଃ ଶକ୍ତିଶାଳୀ କରାଇବା ମଧ୍ୟ ଏହି ଶ୍ରୀଶ୍ରୀଜଗନ୍ନାଥଙ୍କ ରଥଯାତ୍ରାର ଆଉ ଏକ ଉଦ୍ଦେଶ୍ୟ।

ଏହି ଯାତ୍ରା ଅନଂତ ଯୁଗ ଯାଏଁ ପ୍ରଲଂବି ଯାଉ ଏବଂ ଏ ଜାତି ବିଶ୍ୱର ଶ୍ରେଷ୍ଠ ଜାତି ସକଳଂକ ମଧ୍ୟରେ ଶୀର୍ଷ ଆସନ ଲାଭ କରୁ – ଆଜିର ଏହି ପବିତ୍ର 'ରଥଯାତ୍ରା' ଅବସରରେ କାମନା କରୁଛି।

ଏ ଯାତ୍ରାରେ ରଥ ବି ଗୌଣ, ପଥ ବି ଗୌଣ
କେବଳ ଜଗତ ସାଇଁ ଜଗନ୍ନାଥ ହିଁ ମୁଖ୍ୟ
ସେଇ ମୁଖ୍ୟ – ଏ ଜାତିର ଚିହ୍ନ ଓ ଏ ଜାତିର ତ୍ରାଣକାରୀ ପ୍ରତୀକ – ତାଙ୍କର ଜୟ ହେଉ।
ଏଠି ରଥ ବା ପଥ ଗୁରୁତ୍ୱହୀନ, ପ୍ରତୀକ ହିଁ ଗୁରୁତ୍ୱପୂର୍ଣ୍ଣ।
ସେ ପ୍ରତୀକର ଜୟହେଉ।





# ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା : ଏକ ଗଣପର୍ବ

ପ୍ରଫେସର ବୈଷ୍ଣବ ଚରଣ ସାମଲ



ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା କେବେଠାରୁ ଆରମ୍ଭ ହୋଇଛି ଓ ଇତିହାସର ଚକ୍ର ମଧ୍ୟଦେଇ ତାହାର କି ରୂପାନ୍ତର ଘଟିଛି, ସେ ସମ୍ପର୍କରେ ଆଲୋଚନା କରିବା ଏ ପ୍ରବନ୍ଧର ଲକ୍ଷ୍ୟ ନୁହେଁ । ଏହାର ଲକ୍ଷ୍ୟ ଇତିହାସର ସମସ୍ତ ତଥ୍ୟ ତଥ୍ୟାନ୍ତର ମଧ୍ୟ ଦେଇ ଏହା କିପରି ଏକ ଜାତୀୟ ତଥା ଆନ୍ତର୍ଜାତୀୟ ଗଣପର୍ବରେ ପରିଣତ ହୋଇଯାଇଛି, ସେସମ୍ପର୍କରେ କିଂଚିତ୍ ଆଭାସ ଦେବା । ଏହା ସତ୍ୟ ଯେ, ପ୍ରଚଳିତ ରଥଯାତ୍ରା ଓଡ଼ିଶା ଇତିହାସର ନାନା ଯୁଗ ସହିତ ଅଚ୍ଛେଦ୍ୟ ସମ୍ପର୍କ ରଖି ଗତି କରିଆସିଛି । ଏହି ଗତି ଭିତରେ ଜାତି, ଧର୍ମ ଓ ବର୍ଣ୍ଣ ନିର୍ବିଶେଷରେ ବିଶ୍ୱର ସକଳ ମଣିଷ ସାମିଲ ହୋଇ ଯାଇଛନ୍ତି ଓ ସମସ୍ତଙ୍କ ଦୃଷ୍ଟି ଗୋଟିଏ କେନ୍ଦ୍ରରେ ନିବଦ୍ଧ ହୋଇଯାଇଛି-ତାହା ରଥାରୂଢ଼ ପ୍ରଭୁ ଜଗନ୍ନାଥ । ଯଦିଓ ତିନୋଟି ରଥରେ ତିନିଠାକୁର- ତାଳଧ୍ୱଜ ରଥରେ ପ୍ରଭୁ ବଳଭଦ୍ର, ଦର୍ପଦଳନ ବା ଦେବଦଳନ ରଥରେ ମାଆ ସୁଭଦ୍ରା ଓ ସୁଦର୍ଶନ ଏବଂ ନନ୍ଦିଘୋଷ ରଥରେ ପ୍ରଭୁ ଜଗନ୍ନାଥ ବିରାଜମାନ କରନ୍ତି ମାତ୍ର ସମବେତ ଲକ୍ଷ ଲକ୍ଷ ଜନତାଙ୍କ କଣ୍ଠରୁ ଉଦାତ୍ତ ସ୍ୱରରେ ବାହାରି ଆସେ ଗୋଟିଏ ଧ୍ୱନି- ଜୟ ଜଗନ୍ନାଥ, ଜୟ ଚକାଡୋଳା, ଜୟ ପତିତପାବନ । ଏହି ଗୋଟିଏ ଧ୍ୱନିରେ ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ମଧ୍ୟ ବ୍ୟଂଜିତ ହୋଇଯାଆନ୍ତି । ରଥ ତିନି, ରୂପ ତିନି ହେଲେ ମଧ୍ୟ ଗୋଟିଏ ରୂପ- ସେ ଜଗନ୍ନାଥ, ଗୋଟିଏ ନାମ -ସେ ଜଗନ୍ନାଥ ସମସ୍ତଙ୍କୁ ବିମୋହିତ କରେ । ଚାରୋଟି ଦେବତା-ଚାରୋଟି ରୂପ, କୃଷ୍ଣ, ଶ୍ୱେତ, ପୀତ ଓ ଲୋହିତ । ଏହି ଚାରୋଟି ବର୍ଣ୍ଣ ତ ବିଶ୍ୱର ସକଳ ମଣିଷମାନଙ୍କର ବର୍ଣ୍ଣ । ସତେ ଯେମିତି ଏହି ଦେବତାଙ୍କ ଭିତରେ ସବୁ ମଣିଷ ମିଳିଯାଇଛନ୍ତି । ସମସ୍ତେ ଏକ ହୋଇଯାଇଛନ୍ତି । ଭେଦରେ ଅଭେଦ ଏହି ମୂର୍ତ୍ତି ଚତୁଷ୍ଟୟଙ୍କ ବାଣୀ-ମନ୍ତ୍ର । ମୂର୍ତ୍ତି ଚାରି । ଅଥଚ ସବୁ ସେଇ ଏକ ଜଗନ୍ନାଥ । ଚାରି ବର୍ଣ୍ଣରେ ଚଉବର୍ଗ ଦେବାକୁ ସେ ସମର୍ଥ । ସେ ଜଗତର ନାଥ ଜଗନ୍ନାଥ । ସେ ଜଗତ ଓ ନାଥ, ଜୀବ ଓ ପରମ, ରାଧା ଓ କୃଷ୍ଣ, ଗୋପାଙ୍ଗନା ଓ ଗୋପିନାଥଙ୍କର ମଧୁମୟ ମିଳନ । ଭକ୍ତିରେ ହିଁ ତାଙ୍କୁ ଜାଣିହୁଏ, ତର୍କରେ ନୁହେଁ । ଏଥିପାଇଁ ତ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ କାବ୍ୟର ପ୍ରଥମ ଛାନ୍ଦରେ ଗାଇଉଠିଛନ୍ତି-

ସେ କମ୍ବୁକଟକ ରାଜା ନାମ ଜଗନ୍ନାଥ
ଚାରିବର୍ଣ୍ଣେ ଚଉବର୍ଗ ଦେବାକୁ ସମର୍ଥ ହେ ।
ଭକ୍ତି ଦେବା ଗୁପ୍ତ ହୋଇଅଛି ଯୁକ୍ତାକ୍ଷରେ
ବୈଷ୍ଣବ ବିହୁନେ କେହୁ ବୁଝିବ ସଂସାରେ ହେ ।

ଜଗନ୍ନାଥ ଭକ୍ତିର ଠାକୁର । ସେ ରୂପ ହୋଇ ମଧ୍ୟ ଅରୂପ, ଆକାର ପରି ଦିଶୁଥିଲେ ମଧ୍ୟ ନିରାକାର । ସେ ନିର୍ଗୁଣ ହୋଇ ବି ସଗୁଣ । ସେ ଶୂନ୍ୟ ଶୂନ୍ୟ ମହାଶୂନ୍ୟ ହୋଇ ମଧ୍ୟ ମହାକାରୁଣ୍ୟ । ତେଣୁ ସେ କରୁଣା ସାଗର, କୃପାସିନ୍ଧୁ । ଓଡ଼ିଆ ଜାତି ପାଖରେ ସେ ଏକାନ୍ତ ଆପଣାର ଚକାଡୋଳା, ଚକାନୟନ, ବଳିୟାରଭୁଜ, କାଳିଆ ସାଆନ୍ତ, ପତିତପାବନ, ଜଗୁ ନାଏକ, ଜଗୁଜୀବନ । ସିଏ ତାର ଇଷ୍ଟ, ତାର ଘରର ଦେବତା । ସିଏ ବୁଦ୍ଧ କି ଜୀନ- ସେ ନେଇ ସେ ମୁଣ୍ଡ ଖେଳାଏ ନା । ଏଇ ବିଗତ ଊନବିଂଶ ଶତାବ୍ଦୀରେ କେତେକ ଗବେଷକ, ଐତିହାସିକ ତାଙ୍କ ଉପରେ ବୌଦ୍ଧ ମୋହର, ଜୈନ ମୋହର ମାରିଦେଲେ । ଜେନେରାଲ କନିଂହାମ, ପର୍ଜିଟର ସାହେବ ଓ ରାଜେନ୍ଦ୍ର ଲାଲ ମିତ୍ର ପ୍ରମୁଖ ପ୍ରଥମେ ପ୍ରଥମେ ଜଗନ୍ନାଥଙ୍କ ମୂର୍ତ୍ତିତତ୍ତ୍ୱରେ, ପୂଜାପାର୍ବଣରେ, ବିଶେଷତଃ ରଥଯାତ୍ରାରେ ବୌଦ୍ଧ ଓ ଜୈନ ଉତ୍ସର ସନ୍ଧାନ ଦେଲେ । ପରେ ପରେ ଅନେକ ଗବେଷକ ଏହି କଥା କହିଲେ । ଏସବୁ ସତ୍ତ୍ୱେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଓ ଶ୍ରୀଜଗନ୍ନାଥ ଯେ, ବୌଦ୍ଧ ଉତ୍ସ ନୁହଁନ୍ତି, ଏହାକୁ ମଧ୍ୟ ଅସ୍ୱୀକାର କରିହୁଏ ନାହିଁ ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା ମୌଳିକ ଓ ସ୍ୱୟଂସମ୍ପୂର୍ଣ୍ଣ । କେବେଠାରୁ ଏହି ଯାତ୍ରାର ଉତ୍ପତ୍ତି ସେ ସମ୍ପର୍କରେ ନିର୍ଦ୍ଦିଷ୍ଟ କୌଣସି ଐତିହାସିକ ପ୍ରମାଣ ମିଳେ ନାହିଁ । ଅଷ୍ଟମ/ନବମ



ଶତାବ୍ଦୀ ବେଳକୁ ଆଦି ଶଙ୍କରାଚାର୍ଯ୍ୟଙ୍କର ପୁରୁଷୋତ୍ତମ କ୍ଷେତ୍ରକୁ ଆଗମନ, ଗୋବର୍ଦ୍ଧନ ମଠ ସ୍ଥାପନ, ଶ୍ରୀଜଗନ୍ନାଥଙ୍କ ମହିମା ଓ ଅସୀମତ୍ତ୍ୱ ପ୍ରତି ଶ୍ରଦ୍ଧା ନିବେଦନଠାରୁ ବିଧିବଦ୍ଧ ଭାବରେ ଜଗନ୍ନାଥଙ୍କ ପର୍ବପର୍ବାଣୀର ସୂଚନା ମିଳେ ଓ ତାର ବିସ୍ତୃତ ବର୍ଣ୍ଣନା ଦଶମ/ଏକାଦଶ ଶତାବ୍ଦୀରେ ରଚିତ ସ୍କନ୍ଦପୁରାଣର ଉତ୍କଳଖଣ୍ଡରେ ଦେଖିବାକୁ ମିଳେ। ଶଙ୍କରାଚାର୍ଯ୍ୟ ହିଁ ସର୍ବପ୍ରଥମେ ଜଗନ୍ନାଥାଷ୍ଟକରେ ଜଗନ୍ନାଥଙ୍କର ମହିମାମୟ ବର୍ଣ୍ଣନା ସହିତ ରଥଯାତ୍ରାର ଚିତ୍ର ଦେଲେ । ସେ ଲେଖିଲେ-

ରଥାରୂଢଗଛନ୍ ପଥି ମିଳିତ ଭୂଦେବ ପଟଳୈଃ
ସ୍ତୁତି ପ୍ରାଦୁର୍ଭାବ ପ୍ରତିପଦ ମୁପାକର୍ଣ୍ଣ୍ୟ ସଦୟଃ
ଦୟାସିନ୍ଧୁର୍ବନ୍ଧୁଃ ସକଳଜଗତାଂ ସିନ୍ଧୁସୁତୟା
ଜଗନ୍ନାଥ ସ୍ୱାମୀ ନୟନ ପଥଗାମୀ ଭବତୁ ମେ ।

ଯଦି ଶଙ୍କରାଚାର୍ଯ୍ୟ ଏହି ଶ୍ଳୋକ ରଚନା କରିଥାନ୍ତି, ତେବେ ଅଷ୍ଟମ/ ନବମ ଶତାବ୍ଦୀ ବେଳକୁ ରଥଯାତ୍ରା ପ୍ରସିଦ୍ଧି ଲାଭ କରିଥିବ । ରକ୍ତବାହୁ ଆକ୍ରମଣ ସମୟରେ ଶ୍ରୀମନ୍ଦିରରୁ ତ୍ରିମୂର୍ତ୍ତିଙ୍କୁ ନେଇ ସୋନପୁରଠାରେ ପାତାଳି କରି ରଖାଯାଇଥିଲା । ଦ୍ୱିତୀୟ ଯଯାତି କେଶରୀ ସେଠାରୁ ମୂର୍ତ୍ତିଙ୍କୁ ଆଣି ନବକଳେବର କରାଇ ତାଙ୍କ ଦ୍ୱାରା ନିର୍ମିତ ଅଣତିରିଶ ହାତ ଉଚ୍ଚ ମନ୍ଦିରରେ ପ୍ରତିଷ୍ଠା କରିଥିଲେ । ବୋଧହୁଏ ସେହି ସମୟରୁ ରଥଯାତ୍ରା ପ୍ରଚଳିତ ହୋଇଆସିଥିବ । ସ୍କନ୍ଦପୁରାଣ ରଚନା ବେଳକୁ ରଥଯାତ୍ରା ଏକ ଗଣପର୍ବରେ ପରିଣତ ହୋଇଯାଇଥିବ । ସ୍କନ୍ଦ ପୁରାଣ ଉତ୍କଳଖଣ୍ଡର ୩୩ରୁ ୩୫ତମ ଅଧ୍ୟାୟ ପର୍ଯ୍ୟନ୍ତ ରଥଯାତ୍ରାର ଐତିହ୍ୟ ଯେପରି ବର୍ଣ୍ଣିତ ତାହା ହୁଏତ ଇତିହାସର ପର୍ଯ୍ୟାୟରେ ନପଡିଲେ ମଧ୍ୟ ତହିଁରେ ଯାତ୍ରା ବିଧି ପ୍ରସଙ୍ଗରେ ଯାହା କଥିତ ହୋଇଅଛି, ତାହା ରଥଯାତ୍ରାର ଆଦର୍ଶ ରୂପେ ଗୃହୀତ ବୋଲି ବିମଳକୃଷ୍ଣ ପାଲ ମତ ଦେଇଅଛନ୍ତି । ଇତିହାସ ନୁହେଁ, ଆଦର୍ଶ ଓ ଆଧ୍ୟାତ୍ମିକତା ଏହାର ପ୍ରାଣସତ୍ତା । ଆଦର୍ଶ ହେଉଛି ଜଗନ୍ନାଥ ବର୍ଷକୁ ଥରେ ଶ୍ରୀମନ୍ଦିରରୁ ବାହାରକୁ ଆସି ରଥରେ ବସି ଜନଗଣଙ୍କ ମେଳରେ ଗୁଣ୍ଡିଚା ମନ୍ଦିରକୁ ଯାଆନ୍ତି ଓ ସେଠାରେ ନବଦିନ ରହି ପୁନର୍ବାର ଭାଇ ଓ ଭଉଣୀଙ୍କ ସହିତ ଶ୍ରୀମନ୍ଦିରକୁ ଫେରିଆସନ୍ତି । ତେଣୁ ଏହି ଯାତ୍ରାକୁ ନବଦିନାତ୍ମିକା ଯାତ୍ରା କୁହାଯାଏ । ଏହାକୁ ମଧ୍ୟ କୁହାଯାଏ ପତିତପାବନ ଯାତ୍ରା, ମହାବେଦୀ । ଯାତ୍ରା, ଦଶାବତାର ଯାତ୍ରା । ନବଦିନ ବ୍ୟାପୀ ଏହି ଯାତ୍ରାର ତିନୋଟି ଅଙ୍ଗ- ପୂର୍ବଯାତ୍ରା ବା ଗୁଣ୍ଡିଚା ଯାତ୍ରା, ଗୁଣ୍ଡିଚା ମଣ୍ଡପରେ ଅବସ୍ଥାନ ଓ ବାହୁଡା ଯାତ୍ରା । ଆଷାଢ ଶୁକ୍ଳ ଦ୍ୱିତୀୟା ଦିନ ଶ୍ରୀମନ୍ଦିରରୁ ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ଓ ଜଗନ୍ନାଥ ଧାଡି ପହଣ୍ଡି ହୋଇ ରଥ ଉପରକୁ ଆସନ୍ତି ଓ ଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରନ୍ତି । ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ଅଶ୍ୱମେଧ ଯଜ୍ଞରୁ ସୃଷ୍ଟ ସରୋବର କୂଳନିକଟସ୍ଥ ନୃସିଂହ କ୍ଷେତ୍ରରେ ପ୍ରଭୁ ଜଗନ୍ନାଥଙ୍କ ଜନ୍ମସ୍ଥାନ । ତାହାହିଁ ମହାବେଦୀ ସେଇଠାରେ ତାଙ୍କରି ବିଗ୍ରହ ନିର୍ମିତ ହୋଇଥିଲା । ସେ ସାତଦିନ ଅବସ୍ଥାନ କରି ଶ୍ରୀମନ୍ଦିରକୁ ଫେରନ୍ତି । ଗୁଣ୍ଡିଚା ମନ୍ଦିରକୁ ଗଲାବେଳେ ସାଲବେଗଙ୍କ ସମାଧି ପୀଠରେ ଅଟକନ୍ତି ଓ ଭୋଗ ପାଆନ୍ତି । କୁମ୍ଭାର ସାହି ପାଖରେ ମଧ୍ୟ ଅଟକନ୍ତି । ମାଦଳା ପାଞ୍ଜିର ବର୍ଣ୍ଣନାନୁସାରେ ନୀଳୀ କୁମ୍ଭାରୁଣୀ ଗୃହ ଆଡକୁ ଅନାନ୍ତି । ସେଠି ମଧ୍ୟ ଭୋଗରାଗ ହୁଏ । ବାହୁଡା ଦିନ ଜଗନ୍ନାଥଙ୍କ ରଥ ଗଜପତିଙ୍କ ନଅର ପାଖରେ ରହେ । ଲକ୍ଷ୍ମୀ ଶ୍ରୀମନ୍ଦିରର ଚାହାଣି ମଣ୍ଡପରେ ରହି ଦେଖନ୍ତି ଓ ଦୋଳାରେ ଆସନ୍ତି ଜଗନ୍ନାଥଙ୍କ ପାଖକୁ । ଲକ୍ଷ୍ମୀ ଚାଲିଯାଆନ୍ତି ବାହୁଡା ଦଶମୀ ଦିନ ବଡ ଦେଉଳର ସିଂହଦରଜା ପାଖରେ ରହନ୍ତି । ପରଦିନ ଏକାଦଶୀ । ସେଦିନ ହୁଏ ଏକାଦଶୀ ନୀତି, ଅଧରପଣା ଓ ସୁନାବେଶ । ଦ୍ୱାଦଶୀ ଦିନ ରଥରୁ ଠାକୁରମାନେ ଗୋଟିପହଣ୍ଡି କରି ରତ୍ନ ସିଂହାସନକୁ ବିଜେ ହୁଅନ୍ତି । ଏହି ଯାତ୍ରାକୁ କୁହାଯାଏ ନୀଳାଦ୍ରି ବିଜେ ବା ଦ୍ୱାଦଶୀ ଯାତ୍ରା । ଏହିଦିନ ଲକ୍ଷ୍ମୀ ଠାକୁରାଣୀ ଦେବଦାସୀଙ୍କ ସହିତ ଭେଟମଣ୍ଡପକୁ ଆସନ୍ତି । ଜଗନ୍ନାଥଙ୍କ ତରଫରୁ ଦଇତାମାନେ ଓ ଲକ୍ଷ୍ମୀଙ୍କ ତରଫରୁ ଦେବଦାସୀମାନେ ବଚନିକା କରନ୍ତି । ଏହା ଅତ୍ୟନ୍ତ କୌତୁକପୂର୍ଣ୍ଣ । ମାନବୀୟ ଲୀଳାର ଏହା ଚମତ୍କାର ନିଦର୍ଶନ ।

ସମଗ୍ର ରଥଯାତ୍ରାର ବିବରଣୀ ସ୍ପଷ୍ଟ ସୂଚାଇ ଦିଏ ଯେ, ରଥଯାତ୍ରା ଏକ ଜାତୀୟ ଗଣଯାତ୍ରା । ଏହି ଉତ୍ସବରେ ରାଜାପ୍ରଜା, ଶାସକ ଶାସିତ, ସମ୍ଭ୍ରାନ୍ତ ସାଧାରଣ, ଦଳିତ ପତିତପାତିତ, ଧନୀ ଦରିଦ୍ର, ନରନାରୀ ସମସ୍ତେ ଏକାକାର ହୋଇଯାଆନ୍ତି । ସବୁଧର୍ମର ଲୋକେ ମଧ୍ୟ ଆସନ୍ତି । ଆସନ୍ତି ମଧ୍ୟ ବିଭିନ୍ନ ଧର୍ମର ସାଧୁସନ୍ନ୍ୟାସୀ ବୃନ୍ଦ । ଏହାହିଁ ରଥଯାତ୍ରାର ଜାତୀୟ ଆଦର୍ଶ । ସ୍କନ୍ଦ ପୁରାଣରେ ବର୍ଣ୍ଣିତ-

ରାଜା ଚତୁର୍ବିଧା ବର୍ଣ୍ଣା ଅନ୍ୟ ଯେ ଚ ପୃଥଗ୍ ଜନାଃ
ଦୀନା ମହାନ୍ତାଶ୍ଚ ତଦା ସମାନାସ୍ତତ୍ର ଭାନ୍ତି ବୈ ।
ଅନୁଗଚ୍ଛନ୍ତି କୃଷ୍ଣଂ ଯେ ଯାତ୍ରାକୌତୂହଳାଦପି
ଅନୁବ୍ରଜନ୍ତି ନିତ୍ୟଂ ତାନ୍ ଦେବାଃ ଶକ୍ରପୁରୋଗମାଃ ।
ଅଜ୍ଞାନମପ୍ୟ ବିଶ୍ୱାସଭାଜାଂ ବିଶ୍ୱାସ ହେତବେ
ନିସର୍ଗ ମୁକ୍ତିଦୋଦ୍ଧପ୍ୟେକ୍ଷ ଯାତ୍ରାରମ୍ଭାନ୍ କରୋତିବୈ ।

ଏହି ଯାତ୍ରାରେ ଧନୀ ଦରିଦ୍ର ରାଜା ବ୍ରାହ୍ମଣ ଶୂଦ୍ର ଚଣ୍ଡାଳ ନିମ୍ନ ବର୍ଣ୍ଣ ସମସ୍ତେ ସମାନ ଓ ଏକାକାର । କୃଷ୍ଣ-ଜଗନ୍ନାଥଙ୍କର ଯେଉଁମାନେ ଅନୁଗାମୀ ହୁଅନ୍ତି ସେମାନଙ୍କୁ ଅନୁଗମନ କରନ୍ତି ଇନ୍ଦ୍ରାଦି ଦେବଗଣ । ଅଜ୍ଞ ଓ ବିଶ୍ୱାସହୀନ ଲୋକେ ମଧ୍ୟ ଏହି ଯାତ୍ରାରେ ନୂତନ ବିଶ୍ୱାସ ଅର୍ଜନ କରନ୍ତି । ଏହି ଯାତ୍ରାରେ ମୁଖ୍ୟତଃ ପତିତମାନଙ୍କୁ ଦର୍ଶନ ଦେବା ଓ ସେମାନଙ୍କ ସହିତ ଏକାତ୍ମ ହେବା ପାଇଁ ଜଗନ୍ନାଥଙ୍କର ଇଚ୍ଛା । ତେଣୁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ କହନ୍ତି-

ସ୍ନାନ ଗୁଣ୍ଡିଚା ଏ ବେନି ସ୍ୱୟଂ ଲୀଳା ଯାର
ପତିତପାବନ ଅର୍ଥେ ପ୍ରାସାଦୁ ବାହାର ଯେ ।

ସ୍ନାନ ଯାତ୍ରା ଓ ଗୁଣ୍ଡିଚାଯାତ୍ରା ଜଗନ୍ନାଥଙ୍କର ସ୍ୱୟଂଲୀଳା । ଅନ୍ୟାନ୍ୟ ଯେତେ ଯାତ୍ରା ଅଛି ସେସବୁ ମନ୍ଦିର ଭିତରେ । ସେଠି ପତିତପାତିତମାନଙ୍କର ପ୍ରବେଶ ନିଷିଦ୍ଧ । ନିଷିଦ୍ଧ ମଧ୍ୟ ଅନ୍ୟ ଧର୍ମାବଲମ୍ବୀମାନଙ୍କ ପାଇଁ । ସ୍ନାନ ଯାତ୍ରାରେ ସ୍ନାନ ମଣ୍ଡପକୁ ଠାକୁରମାନଙ୍କର ବିଜେ ହୁଏ । ସେଠାରେ ସ୍ନାନ କରନ୍ତି । ସର୍ବସାଧାରଣ ଦର୍ଶନ କରନ୍ତି ମାତ୍ର ଅନ୍ୟଧର୍ମୀ ବା ପତିତମାନେ ଯାଇପାରନ୍ତି ନାହିଁ । ରଥଯାତ୍ରାରେ ସମସ୍ତେ ଯୋଗ ଦିଅନ୍ତି । ସମସ୍ତେ ଜଗନ୍ନାଥଙ୍କ ଲୀଳା ସଂଦର୍ଶନରେ ବିଭୋର ହୁଅନ୍ତି । ଦ୍ୱାଦଶ ଶତାବ୍ଦୀରୁ ଅର୍ଥାତ୍





ଉତ୍କଳର ରାଜା ଚୋଡଗଙ୍ଗଦେବ ଯେତେବେଳେ ନିଜକୁ ଜଗନ୍ନାଥଙ୍କର ସେବକ ଓ ଜଗନ୍ନାଥ ଓଡ଼ିଶାର ରାଜା ବୋଲି ଘୋଷଣା କରିଦେଲେ, ଯଯାତି ନିର୍ମିତ ମନ୍ଦିରକୁ ଭାଙ୍ଗି ନୂତନ ମନ୍ଦିର ନିର୍ମାଣ ଆରମ୍ଭ କଲେ, ଯାହା ଦ୍ୱିତୀୟ ଅନଙ୍ଗଭୀମ ଦେବଙ୍କ ସମୟରେ ନବେ ହାତ ଉଚ୍ଚର ସୁବର୍ଣ୍ଣଖଣ୍ଡଶାଳ ମନ୍ଦିର ରୂପେ ପରିଚିତ ହେଲା । ସେହି ସମୟରୁ ରାଜା ଆଉ ରାଜା ହେଲେ ନାହିଁ, ଜଗନ୍ନାଥ ହେଲେ ରାଜା । ଜଗନ୍ନାଥଙ୍କର ବାରମାସରେ ତେରପର୍ବ, ନାନା ଯାନିଯାତ୍ରା ଅନୁଷ୍ଠିତ ହେଲା । ରାଜା ହେଲେ ଜଗନ୍ନାଥଙ୍କର ପ୍ରଥମ ସେବକ । କ୍ରମେ ଭାଗବତଧର୍ମ ଅନୁଯାୟୀ ଜଗନ୍ନାଥ ହୋଇଗଲେ କୃଷ୍ଣ-ବାସୁଦେବଙ୍କର ଜୀବନ୍ତ ପ୍ରତିନିଧି । ଜଗନ୍ନାଥ ଦାରୁବ୍ରହ୍ମ ଶ୍ରୀଚୈତନ୍ୟ ଚରିତାମୃତରେ ଶ୍ରୀଚୈତନ୍ୟ ସାର୍ବଭୌମ ଓ ବାଚସ୍ପତି ଦୁଇଭାଇଙ୍କୁ ଉପଦେଶ ଦେଇଛନ୍ତି ।

ସାର୍ବଭୌମ ବିଦ୍ୟା ବାଚସ୍ପତି ଦୁଇଭାଇ
ଦୁଇଜନେ କୃପା କରି କହେନ ଗୋସାଇଁ
ଦାରୁ-ଜଳ ରୂପ କୃଷ୍ଣ ପ୍ରକଟ ସଂପ୍ରତି ।
ଦରଶନ ସ୍ନାନେ କରେ ଜୀବେର ମୁକତି ।
ଦାରୁବ୍ରହ୍ମ ରୂପେ ସାକ୍ଷାତ୍ ଶ୍ରୀପୁରୁଷୋତ୍ତମ
ଭାଗୀରଥୀ ସାକ୍ଷାତ ହୟ ଜଳବ୍ରହ୍ମସମ ।
ସାର୍ବଭୌମ କର ଦାରୁବ୍ରହ୍ମ ଆରାଧନ
ବାଚସ୍ପତି କରଜଳ ବ୍ରହ୍ମରେ ସେବନ ।

ଦାରୁବ୍ରହ୍ମ ଜଗନ୍ନାଥ । ଜଳବ୍ରହ୍ମ ଗଙ୍ଗା । ଏହି ଦୁଇଟି ହେଲା ସନାତନ ଧର୍ମର ରକ୍ଷାକବଚ । ପଠାଣ/ମୋଗଲ ଶାସନ କାଳରୁ ଇଂରେଜ ଶାସନ ପର୍ଯ୍ୟନ୍ତ ଏହି ଦୁଇବ୍ରହ୍ମଙ୍କୁ ନଷ୍ଟ କରିଦେବା ପାଇଁ କେତେ କେତେ ଚକ୍ରାନ୍ତ ହୋଇଆସିଛି । ବିଶେଷତଃ ଦାରୁବ୍ରହ୍ମ ଜଗନ୍ନାଥଙ୍କୁ ଧ୍ୱଂସ କରିଦେବା ପାଇଁ କେତେ ପ୍ରକାର ଉଦ୍ୟମ ହୋଇଛି । ଏପରିକି ମଝିରେ ମଝିରେ ରଥଯାତ୍ରା ମଧ୍ୟ ବନ୍ଦ ହୋଇଯାଇଛି । ତଥାପି ଭକ୍ତିପ୍ରାଣ ଜନଗଣ ଦାରୁବ୍ରହ୍ମଙ୍କୁ ଭୁଲିଯାଇନାହାଁନ୍ତି । ଜଳବ୍ରହ୍ମଙ୍କୁ ମଧ୍ୟ ଭୁଲି ନାହାନ୍ତି । ପ୍ରଭୁ ଜଗନ୍ନାଥଙ୍କ ରଥଯାତ୍ରା ଅବକାଶରେ ସାରା ଭାରତବର୍ଷରୁ ଲୋକେ ଆସନ୍ତି, ସାରା ପୃଥିବୀର ବିଭିନ୍ନ ଦେଶରୁ ଆସନ୍ତି । ପୁରୁଷୋତ୍ତମ କ୍ଷେତ୍ର, ବଡଦାଣ୍ଡ ଲୋକାରଣ୍ୟ ହୋଇଯାଏ । ଏଠି ପଥ ଓ ରଥ ହୋଇଯାଏ ଏକ । ଦୃଷ୍ଟି କାହାର ନିମ୍ନକୁ ନଥାଏ । ସମସ୍ତେ ଊର୍ଦ୍ଧ୍ୱ ଦୃଷ୍ଟି । ସେ ଦୃଷ୍ଟିନିବଦ୍ଧ ଜଗନ୍ନାଥଙ୍କ କଳାବଦନ, ଚକାନୟନ ସହିତ । ସମସ୍ତଙ୍କ ହସ୍ତ ଉତ୍ତୋଳିତ । ସତେ ଯେମିତି ସମୁଦ୍ରର ଉତ୍ତାଳ ତରଙ୍ଗ, ଜୟ ଜଗନ୍ନାଥ ଧ୍ୱନି ଯେମିତି ସିନ୍ଧୁଘୋଷ । ଶ୍ରୀଜଗନ୍ନାଥ ସ୍ୱୟଂ ପରଂବ୍ରହ୍ମ, ପୁରୁଷୋତ୍ତମ ହୋଇ ମଧ୍ୟ ରଥଯାତ୍ରା ବେଳେ ସେ ଯେପରି ଲୀଳା ପ୍ରକଟ କରନ୍ତି, ତାହା କୋଟି କୋଟି ମଣିଷଙ୍କୁ ତାଙ୍କ ପାଖକୁ ଟାଣିନିଏ । ସେ ସନାତନ ଧର୍ମର ଜୀବନ୍ତ ପ୍ରତିଭୂ ହୋଇଥିଲେ ମଧ୍ୟ ଅନ୍ୟାନ୍ୟ ଯାବତୀୟ ଧର୍ମର ସେ ପ୍ରତୀକ । ସେ ଏକ ହୋଇ ମଧ୍ୟ ଚତୁର୍ଦ୍ଧା ମୂର୍ତ୍ତି । ତେଣୁ ସେ ଚାରିବେଦ, ଚାରିବର୍ଣ୍ଣ, ତ୍ରିବୀଜ । ସେ ବିଶ୍ୱଖ୍ୟାତ । ବିଶ୍ୱ ସତ୍ୟ । ତାଙ୍କ ପାଖରେ ଜାତି ନାହିଁ, ଅଜାତି ନାହିଁ, ସମସ୍ତେ ସମାନ । ଅଥଚ ବ୍ରାହ୍ମଣ, ପଣ୍ଡିତ, ରାଜା ତାଙ୍କୁ ସଂକୀର୍ଣ୍ଣ ମନ୍ଦିର ଭିତରେ ଆବଦ୍ଧ କରି ରଖିଦିଅନ୍ତି । ଖୋଲା ଆକାଶ ତଳକୁ ସେ ଆସିପାରନ୍ତି ନାହିଁ । ତେଣୁ ବର୍ଷକୁ ଥରେ ଆସନ୍ତି ଏହି ରଥଯାତ୍ରା ବେଳେ ବାହାରକୁ, ଖୋଲା ଆକାଶ ତଳକୁ । ମିଶନ୍ତି ସମସ୍ତଙ୍କ ସହିତ । ଆର୍ତ୍ତଙ୍କ ଆର୍ତ୍ତ ଫେଡନ୍ତି । ଏଇ ଯେମିତି ବଳରାମ ଦାସ, ସାଲବେଗ-ଏଇମିତି କେତେ । କାହା ପାଇଁ ରଥ ଅଟକି ଯାଉଛି, ସିଏ ଆସିଲେ ରଥ ଚାଲୁଛି । କାହାକୁ ଦେଖିବା ପାଇଁ ସ୍ୱୟଂ ଜଗନ୍ନାଥ ବାଟରେ ଅଟକି ଯାଉଛନ୍ତି । ଜନ୍ମ ସ୍ଥାନକୁ ଯାଉଛନ୍ତି । ରାଣୀ ଗୁଣ୍ଡିଚାଙ୍କୁ ଦେଇଥିବା କଥାକୁ ରକ୍ଷା କରୁଛନ୍ତି । ଏଇ ନଅଦିନ ଭିତରେ କେତେ ଲୀଳା କରୁଛନ୍ତି । ସବୁ ସେହି ମାନବୀୟ ଲୀଳା । ରଥରେ ଡାହୁକ ବସି ଯେଉଁ ଅଶ୍ଳୀଳ ଭାଷାରେ ଗୀତ ଗାଏ ତାହାବି ତାଙ୍କ ଲୀଳା । ଗଣପର୍ବର ଏକ ଦୃଷ୍ଟାନ୍ତ ମଧ୍ୟ ।

ଏବେ ସାରା ପୃଥିବୀରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ଗଢ଼ିଉଠିଛି । ଭାରତବର୍ଷର ବିଭିନ୍ନ ପ୍ରଦେଶରେ ମଧ୍ୟ ନିର୍ମିତ ହୋଇଛି ଜଗନ୍ନାଥ ମନ୍ଦିର । ଅନେକ ସ୍ଥାନରେ ହେଉଛି ରଥଯାତ୍ରା । ଆମେରିକାରେ, ଲଣ୍ଡନରେ, ଦିଲ୍ଲୀରେ, କଲିକତାରେ ହେଉଛି ରଥଯାତ୍ରା । ତେବେ ପୁରୀର ରଥଯାତ୍ରା ବିଶ୍ୱ ପ୍ରସିଦ୍ଧ । ଏହି ଯାତ୍ରା ପାଇଁ ସମସ୍ତଙ୍କର ଶ୍ରଦ୍ଧା ଓ ଆକର୍ଷଣ । କାରଣ ଏଇଠି ଅଛି ଜଗନ୍ନାଥଙ୍କ ନାଭିରେ ବ୍ରହ୍ମ । ତାହା ନିତ୍ୟ ରହସ୍ୟମୟ । ସେହି ରହସ୍ୟ ଅଛି ବୋଲି ଏଠି ଜଗନ୍ନାଥ ସମସ୍ତଙ୍କର ଆକର୍ଷଣୀୟ । ଏ ରହସ୍ୟ ଆଉ କେଉଁଠି ନାହିଁ । ଏହା ବୁଦ୍ଧଙ୍କ ଦନ୍ତ ନୁହେଁ, କି କେଶ ନୁହେଁ, କି ନଖ ନୁହେଁ । ଏହା ମଧ୍ୟ ଶାଳଗ୍ରାମ ନୁହେଁ କି ତୁଳସୀ ମଧ୍ୟ ନୁହେଁ । ଏହା ଅନିର୍ବଚନୀୟ, ନିତ୍ୟ ରହସ୍ୟମୟ । ସେହି ରହସ୍ୟ ଥାଉ । ତାକୁ ଇତିହାସ ଗଣ୍ଡି ଭିତରକୁ ଟାଣିବା ଉଚିତ ନୁହେଁ । ଇତିହାସରୁ ଊର୍ଦ୍ଧ୍ୱରେ ଜଗନ୍ନାଥ । ବିଜ୍ଞାନରୁ ମଧ୍ୟ ସେ ବହୁ ଊର୍ଦ୍ଧ୍ୱ । ସିଏ ଆଦିବାସୀ ଶବର ଦେବତା ଥିଲେ କି ନାହିଁ, ସିଏ ବୌଦ୍ଧ ବା ଜୈନ ଦେବତା କି ନୁହେଁ, ତାଙ୍କ ଭିତରେ ଖ୍ରୀଷ୍ଟିୟାନ ବା ଇସଲାମ ସଂକେତ ଅଛି ବା ନାହିଁ-ଇଏ ସବୁ ବିଚାରର ଆଦୌ ଆବଶ୍ୟକତା ନାହିଁ । ସିଏ ପ୍ରକୃତରେ ଗଣଦେବତା ଓ ତାଙ୍କର ସ୍ୱୟଂ ଲୀଳା-ରଥଯାତ୍ରା ଗଣପର୍ବ । ତାଙ୍କୁ ଶାସ୍ତ୍ରୀୟ ଆଧାରରେ ବନ୍ଦୀ କରି ରଖିଲେ ସେ ବାନ୍ଧି ହୋଇଯାଆନ୍ତି ନାହିଁ । ସିଏ ମୁକ୍ତ-ଚିରମୁକ୍ତ । ତେଣୁ ସେ ପତିତର ବନ୍ଧୁ, ଦଳିତର ବନ୍ଧୁ, ଦରିଦ୍ରର ବନ୍ଧୁ । ଯଥାର୍ଥରେ ସେ ଗଣବନ୍ଧୁ । ରଥଯାତ୍ରା ପରି ଏକ ଜାତୀୟ ଗଣପର୍ବ ଯେ କେତେ ତାତ୍ପର୍ଯ୍ୟପୂର୍ଣ୍ଣ ତାହା ବୁଝାଇ କହିବାର ନାହିଁ । ଏହି ଗଣଦେବତା ଓ ଗଣ ଉତ୍ସବକୁ ନେଇ ଓଡ଼ିଶାର ପରିଚିତି, ଓଡ଼ିଆ ଜାତିର ପରିଚିତି । ଏହାକୁ ଛାଡିଦେଲେ ଆଉ କି ପରିଚୟ ଅଛି ? କିଏ କହିବ ??

ଅପର୍ଣ୍ଣାନଗର, ଚାଉଳିଆଗଞ୍ଜ,
କଟକ-୪

ମୂର୍ତ୍ତି ପାଇଥିବା କନ୍ଧବଂଶୀୟ ଆଦିବାସୀ ବନ୍ଧୁଙ୍କୁ ପଚାରିପାରିଲି ନାହିଁ ଯେ, ଏହା ଏ କାଳର ରଙ୍ଗ ଓ ରୂପ ବା ପୂର୍ବରୁ ଏଭଳି ଥିଲା ? ଯେତେଦୂର ମନେହୁଏ ଏହା ବର୍ତ୍ତମାନର ଚିତ୍ର ।

ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିର ବିବର୍ତ୍ତନ କଥା ଆଲୋଚନା କରି ଏହି ପ୍ରବନ୍ଧର ଲେଖକ ବିଭିନ୍ନ ପ୍ରବନ୍ଧରେ ଦର୍ଶାଇଛି ଯେ, ଆଦ୍ୟରୁ ଜଗନ୍ନାଥଙ୍କ ଚକ୍ଷୁ ଏତେ ବିରାଟ ନଥିଲା । ଶୂନ୍ୟ ପୁରୁଷ ଭାବେ ସାଙ୍କେତିକ ମୂର୍ତ୍ତି ହେଲେ ମଧ୍ୟ ତାଙ୍କର ନେତ୍ର ମନୁଷ୍ୟର ନୟନ ଅନୁରୂପ ହୋଇଥିଲା । ଚତୁର୍ଦ୍ଦଶ ଶତାବ୍ଦୀରେ ଲାଙ୍ଗୁଳା ନରସିଂହଦେବଙ୍କ ନିର୍ମିତ କୋଣାର୍କ ମନ୍ଦିରର ବିଭିନ୍ନ ସ୍ଥାନରେ ଶିଳ୍ପୀ ରାଜା ନରସିଂହଦେବଙ୍କୁ ଏକ ସିଂହାସନରେ ଚତୁର୍ଭୁଜା ମହିଷମର୍ଦ୍ଦିନୀ ଶିବଲିଙ୍ଗ ଓ ଜଗନ୍ନାଥଙ୍କୁ ପୂଜା କରୁଥିବା ଦର୍ଶାଯାଇଛି ।

ନିଜକୁ ଏକ ସମନ୍ୱୟବାଦୀ ଭାବରେ ପରିଚିତ କରାଇବା ନିମନ୍ତେ ସେ ଆପଣାକୁ ପୁରୁଷୋତ୍ତମ ପୁତ୍ର, ଦୁର୍ଗାପୁତ୍ର ଓ ଶିବପୁତ୍ର ଭାବେ ଯେଉଁ ଘୋଷଣା କରିଥିଲେ, ନିପୁଣ ଶିଳ୍ପୀକୁଳ ମନ୍ଦିରଗାତ୍ରରେ ପ୍ରସ୍ତର ଖୋଦିତ ମୂର୍ତ୍ତି ଜରିଆରେ ଜାତିକୁ ସେ ବାର୍ତ୍ତା ଦେଇଥିଲେ ।

ବିଭିନ୍ନ ଶାସ୍ତ୍ର ପୁରାଣ ଅନୁଧ୍ୟାନ କରି ତଥା ସେତେବେଳର ପଣ୍ଡିତମାନେ ରାଜନ୍ୟବର୍ଗଙ୍କ ସହ ବିଚାର କରି ଶ୍ରୀଜଗନ୍ନାଥଙ୍କୁ କଲେ ଚକାନୟନ । ସେ ଶୂନ୍ୟ ପୁରୁଷ, ସେ ଅବ୍ୟକ୍ତ । ଯୋଗମାୟା ପ୍ରକୃତିଙ୍କ ଜରିଆରେ ସେ ବଳଭଦ୍ର ରୂପେ ବ୍ୟକ୍ତ ହେଲେ ।

ଶ୍ରୀଜଗନ୍ନାଥଙ୍କ ତ୍ରିମୂର୍ତ୍ତି ନିର୍ମାଣରେ ପଞ୍ଚମ-ଷଷ୍ଠ ଶତାବ୍ଦୀରୁ ପାଣିନୀ ଓ ବରାହମିହିରଙ୍କ ପ୍ରବର୍ତ୍ତିତ ବାସୁଦେବ ଶଙ୍କର୍ଷଣ ପୂଜନ ବ୍ୟବସ୍ଥାର ଛାୟା ପଡିଲା । ପୂର୍ବରୁ ପ୍ରଚଳିତ ବାସୁଦେବ ଶଙ୍କର୍ଷଣ ପୂଜା ପଦ୍ଧତି ପରିବର୍ତ୍ତିତ ହୋଇ ବାସୁଦେବ ଶଙ୍କର୍ଷଣଙ୍କ ମଧ୍ୟରେ ଏକନଂଶା ଦୁର୍ଗା ରହିବା ବ୍ୟବସ୍ଥା କରାଗଲା । ବରାହମିହିର ପ୍ରବର୍ତ୍ତିତ ମୂର୍ତ୍ତି ନିର୍ମାଣ ପଦ୍ଧତି ଅନୁସାରେ ମୂଳଦେବତା ବାସୁଦେବଙ୍କ ଚତୁର୍ଭୁଜ ଓ ଶଙ୍କର୍ଷଣଙ୍କ ଦ୍ୱିଭୁଜ କରାଗଲା । ଏଇ ବାସୁଦେବ ଶଙ୍କର୍ଷଣ ପୂଜା ଓଡ଼ିଶାରେ କେଶରୀ ବଂଶ ଆଗରୁ ଷଷ୍ଠ ଶତାବ୍ଦୀରେ ପ୍ରଭଞ୍ଜନ ବର୍ମାଙ୍କ ଦ୍ୱାରା ପ୍ରଚଳନ ହୋଇଥିବା ଏ ପ୍ରବନ୍ଧର ଲେଖକ ଅନୁମାନ କରୁଛି । ଏଭଳି ସର୍ବପ୍ରାଚୀନ ଚତୁର୍ଭୁଜ ବାସୁଦେବ ଓ ଦ୍ୱିଭୁଜ ଶଙ୍କର୍ଷଣ ମୂର୍ତ୍ତି ବିନ୍ଦୁସରୋବର ତୀରରେ ଅନନ୍ତ ବାସୁଦେବ ଭାବରେ ପୂଜିତ ହେଲେ । ଏ ପ୍ରାଚୀନ ଦୁଇ ମୂର୍ତ୍ତି ବର୍ତ୍ତମାନ ବିନ୍ଦୁସରୋବର କୂଳରେ ରଖାଯାଇଛନ୍ତି । ମୂର୍ତ୍ତିଦ୍ୱୟ ବିକଳାଙ୍ଗ ହେବା ପରେ ସେମାନଙ୍କ ସ୍ଥାନରେ ନୂତନ ମୂର୍ତ୍ତି କରାଯାଇଥିଲା । ମନ୍ଦିର ଭାଙ୍ଗିପଡିବା ପରେ ଚନ୍ଦ୍ରିକାଦେବୀ ନୂତନ ମନ୍ଦିର ନିର୍ମାଣ କଲେ ଓ ପୂର୍ବର ପ୍ରାଚୀନ ମୂର୍ତ୍ତିଙ୍କ ମଧ୍ୟରେ ସୁଭଦ୍ରା ଏକନଂଶାଙ୍କୁ ନିର୍ମାଣ କରାଇ ରଖିଲେ । ବର୍ତ୍ତମାନ ଏ ତିନି ମୂର୍ତ୍ତି ଅନନ୍ତ ବାସୁଦେବଙ୍କ ପରିବା ରଖିବା ପାଇଁ ବ୍ୟବହୃତ ଏକ ପରିତ୍ୟକ୍ତ ମନ୍ଦିରରେ ରହିଛନ୍ତି । ଦୀପ ଜାଳି ଏ ପ୍ରବନ୍ଧର ଲେଖକ ଅନୁଧ୍ୟାନ କରି ଜାଣିଛି ଯେ, ସୁଭଦ୍ରାଙ୍କ ଗଠନ ପ୍ରଣାଳୀ ସୁନ୍ଦର ଓ ନୂତନ ଧରଣର । ଏହା ପ୍ରାଚୀନ ମୂର୍ତ୍ତିଙ୍କଠାରୁ ଉନ୍ନତ ଶୈଳୀ ବହନ କରିଛି ।

ବର୍ତ୍ତମାନ ଅନନ୍ତବାସୁଦେବ ମନ୍ଦିରରେ ଥିବା ତ୍ରିମୂର୍ତ୍ତି ପୂଜକ ଓ ଭକ୍ତମାନଙ୍କ ଉଦ୍ୟମରେ ମାର୍ବଲ ପଥରରେ ଷାଠିଏ ବର୍ଷ ତଳେ ନିର୍ମିତ ହୋଇଅଛନ୍ତି । ପୁରୀ ଶ୍ରୀମନ୍ଦିର ମୂର୍ତ୍ତିଙ୍କ ସହ ତାଳ ଦେଇ ଚନ୍ଦ୍ରିକା ଦେବୀ ତ୍ରିମୂର୍ତ୍ତି ସ୍ଥାପନା କଲେ ଓ ସୁନ୍ଦର ନୂତନ ମନ୍ଦିର ନିଜଭ୍ରାତା ଲାଙ୍ଗୁଳା ନରସିଂହଦେବଙ୍କ କୋଣାର୍କ ମନ୍ଦିର ଶୈଳୀରେ ନିର୍ମାଣ କରାଇଲେ ।

ତେଣୁ ମନରେ ଜିଜ୍ଞାସା ଜାଗିଲା, ତେବେ କଣ ଯଯାତିଙ୍କ ସମୟରେ ଦାରୁମୂର୍ତ୍ତି ପରିବର୍ତ୍ତେ ପ୍ରସ୍ତର ମୂର୍ତ୍ତି ଗଠିତ ହୋଇଥିଲା ? ଦଶମ ଶତାବ୍ଦୀ ବେଳକୁ ଶଙ୍କର୍ଷଣ ବାସୁଦେବ ପୂଜା ପରିବର୍ତ୍ତିତ ହୋଇ ତ୍ରିମୂର୍ତ୍ତି ଉପାସନା ପ୍ରବର୍ତ୍ତିତ ହୋଇଛି ।

ମନରେ ଶଙ୍କା ଉଦୟ ହେଲା, ଯଦି ପ୍ରଥମ ଯଯାତି ସୋନପୁରର ତ୍ରିକୂଟ ପର୍ବତଠାରେ ପାତାଳି ହୋଇଥିବା ଦାରୁମୂର୍ତ୍ତିଙ୍କୁ ଉଦ୍ଧାର କରି ପୁରୀକୁ ନେଇଥିଲେ, ତେବେ ଏ ଅଞ୍ଚଳରେ ପ୍ରସ୍ତର ତ୍ରିମୂର୍ତ୍ତି ଭୂତଳରୁ ପ୍ରାପ୍ତ ହେଲେ କିପରି ?

ବୋଧହୁଏ ଦାରୁମୂର୍ତ୍ତିଙ୍କ ସ୍ମୃତି ଏହି ଅଞ୍ଚଳରେ ଧରି ରଖିବା ପାଇଁ ଯଯାତିଙ୍କ ନିର୍ଦ୍ଦେଶକ୍ରମେ ଶିବମନ୍ଦିର ନିକଟରେ ହରିହର ପୂଜା ପଦ୍ଧତିରେ ପୂଜିତ ହେଲେ ପ୍ରସ୍ତର ନିର୍ମିତ ତ୍ରିମୂର୍ତ୍ତି । ପୂଜକ ତ୍ରିଲୋଚନ ଭୋଇ ଭକ୍ତିରେ ସେବା କରୁଛନ୍ତି ପ୍ରଭୁଙ୍କୁ ।

ସୌଭାଗ୍ୟକ୍ରମେ ଶ୍ରୀଜଗନ୍ନାଥଙ୍କ କୃପାରେ ଏଥର ଫେବୃଆରୀ ମାସ ୭ ତାରିଖରେ ତେନ୍ତୁଳିଖୁଣ୍ଟିର ପ୍ରସ୍ତର ମୂର୍ତ୍ତି ଦେଖିସାରିଲା ପରେ ପୁଣିଥରେ ଦେଖିବାକୁ ଚାହିଁଲି ସୋନପୁର ବିନିକାର ମହାନଦୀ କୂଳରେ ଦେଖିଥିବା ଅନଙ୍ଗଭୀମଦେବଙ୍କ ପ୍ରତିଷ୍ଠିତ ଦାରୁ ଶ୍ରୀଜଗନ୍ନାଥଙ୍କୁ । କେଶରୀବଂଶର ଶାସନ ପରେ କୋଶଳ ଜୟ କରିସାରି ଅନଙ୍ଗଭୀମଦେବ ସୋନପୁର ପାଖ ବିନିକା ଠାରେ ସ୍ଥାପନା କଲେ ଦାରୁ ତ୍ରିମୂର୍ତ୍ତିଙ୍କ ମନ୍ଦିର । ଏଠାରେ ସିଂହାସନରେ ତ୍ରିମୂର୍ତ୍ତି ଅଛନ୍ତି, କିନ୍ତୁ ନାହାଁନ୍ତି ସୁଦର୍ଶନ । ଚତୁର୍ଦ୍ଦଶ ଶତାବ୍ଦୀରେ ସୁଦର୍ଶନ ପୂଜା ପାଇନାହାଁନ୍ତି । ଖ୍ରୀଷ୍ଟାବ୍ଦ ୧୨୩୦ରେ ନିର୍ମିତ ଏ ମନ୍ଦିରରେ



ଅଛନ୍ତି ତ୍ରିମୂର୍ତ୍ତି । ପରବର୍ତ୍ତୀ କାଳରେ ତ୍ରିମୂର୍ତ୍ତିଙ୍କୁ ଚତୁର୍ଦ୍ଧା ବିଗ୍ରହ କରି ସୁଦର୍ଶନ ଆଗମନ କରିଛନ୍ତି । ବିଗ୍ରହଙ୍କୁ ଶୂନ୍ୟ ଓ ଅରୂପ ଚିତ୍ର ଦେବା ପାଇଁ ସୁଦର୍ଶନଙ୍କୁ ସ୍ତମ୍ଭାକାର କରାଯାଇଛି ।

ପ୍ରତ୍ନତତ୍ତ୍ୱର ଯେତିକି ନିଦର୍ଶନ ମିଳୁଛି, ସେଥିପ୍ରତି ଆଖିବୁଜି ଦେଇ ଆଦ୍ୟରୁ ଚତୁର୍ଦ୍ଧା ବିଗ୍ରହ ଥିଲେ ବୋଲି କହିଦେଲେ ଚଳିବ ନାହିଁ । ଚତୁର୍ଦ୍ଧା ମୂର୍ତ୍ତି ପୂଜନରେ ବାସୁଦେବ ଶଙ୍କର୍ଷଣବାଦର ଚର୍ତୁବ୍ୟୂହ ଯଥା ବାସୁଦେବ, ଶଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ କଳ୍ପନାର ଛାୟା ନିଶ୍ଚିତ ଭାବେ ଆସିଛି ।

ଭୁବନେଶ୍ୱର ଅନନ୍ତ ବାସୁଦେବ ମନ୍ଦିରରେ ମଧ୍ୟ ଆଦ୍ୟରୁ ତ ସୁଭଦ୍ରା ନଥିଲେ, ଚନ୍ଦ୍ରିକାଦେବୀ ତାଙ୍କୁ ପ୍ରତିଷ୍ଠା କଲେ । ଅବୟବଧାରୀ କୃଷ୍ଣ ବଳରାମ ଓ ସୁଭଦ୍ରା ତ୍ରିମୂର୍ତ୍ତି ସାମନା କାନ୍ଥରେ ପ୍ରତୀକ ସ୍ତମ୍ଭରୂପୀ ସୁଦର୍ଶନଙ୍କୁ ରଖାଯାଇଛି । ଚକ୍ରାକାର ନହୋଇ ପୁରୀ ଅନୁକରଣରେ ତାଙ୍କୁ ସ୍ତମ୍ଭରୂପୀ କରାଯାଇଛି । ଏସବୁ ପ୍ରତ୍ନତାତ୍ତ୍ୱିକ ନିଦର୍ଶନରୁ ବିଭିନ୍ନ ସମୟରେ ଶ୍ରୀଜଗନ୍ନାଥଙ୍କ ବିବର୍ତ୍ତନ ସୂଚିତ ହେଉଛି ।

ହସ୍ତପଦହୀନ ପ୍ରସ୍ତର ମୂର୍ତ୍ତିର ଅନ୍ୟ ଏକ କାରଣ ହୋଇପାରେ । ବୌଦ୍ଧ ସ୍ତୂପମାନଙ୍କରେ ବୌଦ୍ଧ ତ୍ରିରତ୍ନ ଯଥା- ବୁଦ୍ଧ, ଧର୍ମ ଓ ସଂଘକୁ ଦୁଇ ବୃତ୍ତାକାର ପ୍ରସ୍ତରର ସମ୍ମିଶ୍ରଣରେ ପ୍ରକାଶ କରାଯାଇଛି । ଚେନ୍ନାଇର ମ୍ୟୁଜିୟମ୍‌ରେ ସେହି ସ୍ତୂପରେ ଥିବା ବିରାଟ ପ୍ରସ୍ତର ଦେହରେ ସୂଚିତ ହୋଇଛି ବୁଦ୍ଧଦେବଙ୍କର କପିଳବସ୍ତୁ ପ୍ରତ୍ୟାବର୍ତ୍ତନ । ବୁଦ୍ଧଦେବଙ୍କୁ ବେଢିଛନ୍ତି ଜନତା । ସେଠି ବୁଦ୍ଧ ମନୁଷ୍ୟ ନୁହଁନ୍ତି, ସେ ଶୂନ୍ୟରୂପୀ ଜଗନ୍ନାଥ । ମହାଯାନୀ ବୌଦ୍ଧ ଚିନ୍ତାରେ ବୁଦ୍ଧ ପରିଣତ ହୋଇଛନ୍ତି ଶୂନ୍ୟରୂପୀ ପରମ ବୁଦ୍ଧ ଜଗନ୍ନାଥ ରୂପରେ । ଏହାଙ୍କୁ ହିଁ ପ୍ରଣିପାତ କରିଛନ୍ତି ଓଡ଼ିଶାର ପଶ୍ଚିମାଞ୍ଚଳ ସମ୍ବଲର ରାଜା ଇନ୍ଦ୍ରଭୂତି । ଏହି ଦୁଇ ବୃତ୍ତାକାର ପ୍ରସ୍ତର ସମନ୍ୱୟରେ ସୂଚିତ ହେଲେ ବୁଦ୍ଧ, ଧର୍ମ ଓ ସଂଘ । ଏହି ତ୍ରିରତ୍ନ ତ୍ରିମୂର୍ତ୍ତି ଜଗନ୍ନାଥ ବୋଲି ଦର୍ଶାଇଛନ୍ତି ଐତିହାସିକ କନିଙ୍ଗହାମ୍ । ସମର୍ଥନ କରିଛନ୍ତି ଐତିହାସିକ ଡକ୍ଟର ମହତାବ ।

ବିବର୍ତ୍ତନ କ୍ରମର ପ୍ରତ୍ନତାତ୍ତ୍ୱିକ ନିଦର୍ଶନ ଦେଖିବାକୁ ମିଳୁଛି । ପଶ୍ଚିମାଞ୍ଚଳ ସମ୍ବଲ ବା ସୋନପୁର ନିକଟସ୍ଥ ଅଞ୍ଚଳରେ ରାଜା ଇନ୍ଦ୍ରଭୂତି ଏହି ପ୍ରସ୍ତର ତ୍ରିମୂର୍ତ୍ତି ଭଳି ମୂର୍ତ୍ତିଙ୍କୁ କୌଣସି ଏକ ସ୍ତୂପରେ ପୂଜିତ ହେବା ଦେଖି ସ୍ତୁତି କରି କହିଛନ୍ତି-

ପ୍ରଣିପତ୍ୟ ଜଗନ୍ନାଥ
ସର୍ବଜିନ ବରାର୍ଚ୍ଚିତଂ ।

ସେହି ସ୍ତୂପର ମୂର୍ତ୍ତି ତ୍ରୟଙ୍କୁ ଶଙ୍କରାଚାର୍ଯ୍ୟ ପୁରୁଷୋତ୍ତମ ତତ୍ତ୍ୱର ତ୍ରିମୂର୍ତ୍ତି ଭାବେ ଘୋଷଣା କଲେ । ସାରଳା ଦାସଙ୍କ ଭାଷାରେ ବାସୁଦେବ ଜଗନ୍ନାଥଙ୍କ ବୌଦ୍ଧାବତାର ବା ଶୂନ୍ୟ ସ୍ୱରୂପ ପ୍ରକାଶ ପାଇଲା । ସେହି ଚିନ୍ତା ପ୍ରକଟ କରୁଛି ବଲାଙ୍ଗୀର ଠାରୁ ୨୦ କିଲୋମିଟର ଦୂରରେ ଥିବା ଅଖ୍ୟାତ ପଲ୍ଲୀ ତେନ୍ତୁଲିଖୁଣ୍ଟିରେ । ଯାହା ମହାଯାନ ଚିନ୍ତାରେ ଶୂନ୍ୟ ପୁରୁଷ ବୁଦ୍ଧ ଜଗନ୍ନାଥ, ତାହା ଶଙ୍କର ପ୍ରବର୍ତ୍ତିତ ପୁରୁଷୋତ୍ତମ ଚେତନାରେ ବାସୁଦେବ ଜଗନ୍ନାଥ ।

ବାସୁଦେବ, ଶଙ୍କର୍ଷଣଙ୍କ ହସ୍ତହୀନ ପ୍ରସ୍ତର ମୂର୍ତ୍ତି ସମ୍ମୁଖରେ ହସ୍ତଯୋଡି ପ୍ରଭୁଙ୍କ ବିବର୍ତ୍ତିତ ରୂପ ସୁଷମାରେ ମଜ୍ଜି ରହିଲି ।

ଅନନ୍ୟ ନିକେତନ
ଏନ୍-୧/୧୮୩
ନୂଆପଲ୍ଲୀ, ଭୁବନେଶ୍ୱର

# ଶ୍ରୀଗୁଣ୍ଡିଚା ଯାତ

ଡ଼ଃ ଅମୂଲ୍ୟ ମହାପାତ୍ର

ଆହେ ଜଗନ୍ନାଥ କାଳିଆ ଠାକୁର
ଛାଡି ରତ୍ନ ସିଂହାସନ
ବିଜେ କରିଅଛ ନନ୍ଦିଘୋଷେ ଆସି
ଦିଶ କେଡେ ଶୋଭାବନ ।
ଶ୍ରୀଗୁଣ୍ଡିଚା ଯାତ ଜଗତେ ବିଖ୍ୟାତ
ଶ୍ରୀକ୍ଷେତ୍ରରେ ପଡେ ହୋରି
ଆସରେ କାଳିଆ ଆସ ନନ୍ଦବଳା
ଭକତର ହାତ ଧରି ।
ଯେ ଭକତ ଜନ ବଡ ଭାଗ୍ୟବାନ
ଲଭେ ତୁମ ଦରଶନ



ଧନ୍ୟ ତା' ଜୀବନ ଲଭଇ ମୁକତି
ସେହି ଏକା ପୁଣ୍ୟବାନ ।
କହରେ କାଳିଆ କି ପାପ କରିଛି
ମନ ହେଉଛି ଉଛନ୍ନ
ଦେଖି ନ ପାରୁଛି ତୁମ ଚକାଆଖି
ମୁହିଁ ଏକା ଭାଗ୍ୟହୀନ ।

'ଶରଣାଗତ'
ବିବେକାନନ୍ଦ ମାର୍ଗ, କୋରାପୁଟ୍

# ଶ୍ରୀମନ୍ଦିର ସେବାରେ ଆଳତି ଓ ସେବାକାରୀ ସେବକ

ଡଃ ରମାକାନ୍ତ କର



ବିଶ୍ୱ ସଂସ୍କୃତିରେ ଶ୍ରୀଜଗନ୍ନାଥ ସଂସ୍କୃତିର ଐତିହ୍ୟ ଓ ପରମ୍ପରା ସ୍ୱତନ୍ତ୍ର । ସାରା ବିଶ୍ୱରେ ଥିବା ସମସ୍ତ ମନ୍ଦିରର ନୀତି ଅପେକ୍ଷା ଶ୍ରୀମନ୍ଦିରର ନୀତି ସ୍ୱତନ୍ତ୍ର ଓ ଅନୁକରଣ ସାପେକ୍ଷ । ଶ୍ରୀଜଗନ୍ନାଥଙ୍କର ତତ୍ତ୍ୱ, ନୀତି, ବିଧି, ବିଧାନ ଖୁବ୍ ଗୁପ୍ତ, ଗମ୍ଭୀର ତଥା ବ୍ୟାପକ । ଜୀଉଙ୍କ ରୂପ ଯେପରି ଅଦ୍ଭୁତ, ଠିକ୍ ତାଙ୍କର ତତ୍ତ୍ୱ ହିଁ ଅଦ୍ଭୁତ । ବେଦ, ଶ୍ରୁତି, ପୁରାଣ ତଥା ସମସ୍ତ ଧର୍ମ ମତବାଦର ସେ ମୂଳାଧାର ଓ ଜନଜୀବନର ମୂର୍ତ୍ତିମନ୍ତ ପ୍ରତୀକ । ଶ୍ରୀମନ୍ଦିର ଗୁପ୍ତ ରହସ୍ୟର ମହାସମୁଦ୍ର । ଏହାଙ୍କ ସେବା ପୂଜା ଓ ନୀତି ସମ୍ବନ୍ଧରେ ଯେତେ ଗବେଷଣା ହେଉ ନା କାହିଁକି, ଏହା ଅନନ୍ତ ତତ୍ତ୍ୱର ସତ୍ତା ବର୍ତ୍ତମାନ ସୁଦ୍ଧା ଅଗୋଚର । ଏପରିକି ଶ୍ରୀମନ୍ଦିର ମଧ୍ୟରେ ଅଙ୍ଗଲାଗି କୌଣସି ସେବକ ଅନ୍ୟ ସେବକର କାର୍ଯ୍ୟ ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅନଭିଜ୍ଞ । ବର୍ତ୍ତମାନ ସୁଦ୍ଧା ଶ୍ରୀଜଗନ୍ନାଥ ତତ୍ତ୍ୱକୁ ଭିତ୍ତିକରି ଯେତେ ଗବେଷଣାତ୍ମକ ପ୍ରବନ୍ଧ ଓ ପୁସ୍ତକ ରଚନା କରାଯାଇଛି, ସେ ତଥ୍ୟଗୁଡିକ ଯେ ସମ୍ପୂର୍ଣ୍ଣ ଠିକ୍ ତାହା କୁହାଯାଇନପାରେ । ଏହି ଗବେଷଣାତ୍ମକ ବାର୍ତ୍ତା କେବଳ ଆନୁଷ୍ଠାନିକ କିମ୍ବା ବ୍ୟକ୍ତିଗତ ମତ ଛଡା ଅନ୍ୟ କିଛି ନୁହେଁ । ଏହି ଅନନ୍ତ ତତ୍ତ୍ୱ ଉପରେ ଗବେଷଣା କେବଳ ନିରର୍ଥକ, ବରଂ ତାଙ୍କର ଚରଣାଶ୍ରିତ ହୋଇ ଦର୍ଶନ କିମ୍ବା ଭାବ ବିନିମୟ କରିବା ହିଁ ମାନବକୁ ଶାନ୍ତି ପ୍ରଦାନ କରିଥାଏ । ଯେହେତୁ ତାଙ୍କ ରୂପ ଭିନ୍ନ, ତାଙ୍କ ଉପରେ ଶୁଣାଯାଉଥିବା ତତ୍ତ୍ୱ ହିଁ ଭିନ୍ନ, ଏହା କେବଳ ତର୍କ ସୃଷ୍ଟି କରେ ସିନା ମୁକ୍ତିଦାୟକ ହୁଏ ନାହିଁ କିମ୍ବା ଶାନ୍ତିଦାୟକ ନୁହେଁ ।

ଶ୍ରୀମନ୍ଦିରରେ ପ୍ରତ୍ୟହ ସେବାପୂଜା ପାଇଁ ଛତିଶା ନିଯୋଗ ରହିଛନ୍ତି । ଏହି ୩୬ ଶ୍ରେଣୀର ସେବକଙ୍କ ମଧ୍ୟରେ ବ୍ରାହ୍ମଣ ସେବକ, ଶୂଦ୍ର ସେବକ ରହିଛନ୍ତି । ଶ୍ରୀଜୀଉଙ୍କର କବାଟ ଫିଟା ନୀତିଠାରୁ ପହୁଡ ନୀତି ପର୍ଯ୍ୟନ୍ତ ଏହି ସେବକମାନେ ସେବାରେ ନିଯୁକ୍ତ । ଶ୍ରୀଜଗନ୍ନାଥ ମନ୍ଦିରରେ ପ୍ରଭାତ ସମୟରେ ହେଉଥିବା ମଙ୍ଗଳ ଆଳତି ମଧ୍ୟ ଏହି ନୀତିଚର୍ଯ୍ୟା ମଧ୍ୟରୁ ଅନ୍ୟତମ । ଶ୍ରୀମନ୍ଦିରରେ ଆଳତି ନୀତିକୁ ସାଧାରଣତଃ ଚାରି ଭାଗରେ ବିଭକ୍ତ କରାଯାଇପାରେ । ୧. ମଙ୍ଗଳ ଆଳତି, ୨. ସନ୍ଧ୍ୟା ଆଳତି, ୩. ପହୁଡ ଆଳତି, ୪. ଭୋଗ ଆଳତି ବା ଜୟ ମଙ୍ଗଳ ଆଳତି । ଏହି ଆଳତି କାର୍ଯ୍ୟରେ ସପ୍ତଦଶ ଅର୍ଥାତ୍ ୧୭ଜଣ ସେବକ ନିଯୁକ୍ତ ହୋଇଥାନ୍ତି । ଏମାନଙ୍କ ମଧ୍ୟରୁ ଜଣେ ଅନୁପସ୍ଥିତ ରହିଲେ ଆଳତି କାର୍ଯ୍ୟ ହୋଇପାରିବ ନାହିଁ, କାରଣ ଅନୁପସ୍ଥିତ କୌଣସି ସେବକଙ୍କ କାର୍ଯ୍ୟ ଅନ୍ୟ ସେବକ କରିପାରିବ ନାହିଁ ।

ଶ୍ରୀମନ୍ଦିର ସେବାରେ ଆଳତି ନୀତି ହେବା ପୂର୍ବରୁ ପ୍ରଥମେ ପାଇକ, ଭିତରଛ ମହାପାତ୍ର ତଥା ଅନ୍ୟ ପାଳିଆ ସେବକମାନଙ୍କୁ ସେବା ପାଇଁ ଡାକିବେ, ଭିତରଛ ମହାପାତ୍ର ଶ୍ରୀମନ୍ଦିର ପାଖକୁ ଆସି ପ୍ରଥମେ ସିଂହଦ୍ୱାର ଓ ପରେ ଜୟବିଜୟ ଦ୍ୱାର ଚାବି ଖୋଲିବେ, ପାଟ୍ଟଯୋଷୀ ମହାପାତ୍ର ଛତିଶା ନିଯୋଗର ନାୟକ ମଙ୍ଗଳ ଆଳତି ପୂର୍ବରୁ ଆସି ଦକ୍ଷିଣ ଘର ନିକଟସ୍ଥ ବେହରଣ ମଣ୍ଡପରେ ବସି ଶ୍ରୀଜୀଉଙ୍କ ସେବା ପରିଚାଳନା କରନ୍ତି । ଏହି ଆଳତି ସେବାର ପରିଚାଳକ ହିଁ ପାଟ୍ଟଯୋଷୀ ମହାପାତ୍ର ମୁଦ୍ରା ଓ ମୁଦୁଲିଙ୍କ ଉପସ୍ଥିତିରେ ଭିତରଛ ମହାପାତ୍ର ଚାବି ଖୋଲି ଦୁଆର ଫିଟାନ୍ତି । ଶ୍ରୀମନ୍ଦିର ବେଢାରେ ଥିବା ଗଙ୍ଗା ଓ ଯମୁନା କୂଅରୁ, ପାଣି ଆପଟ ପାଣି କାଢି ମନ୍ଦିରକୁ ଆଣନ୍ତି । ଦଉଡି ବଳା ସେବକ ପାଣି ଆପଟଙ୍କୁ ଦଉଡି ଯୋଗାନ୍ତି, ସୁଆର ବଡୁ ସେବକ ପାଣି ଆପଟଠାରୁ ପାଣି ନେଇ ଭିତର ପୋଖରିଆଠାରୁ ଭିତର ଅର୍ଗଳି ପର୍ଯ୍ୟନ୍ତ ଧୋ ପଖାଳ କରି ଝାଡୁମାରି ପରିଷ୍କାର କରନ୍ତି । ଭଣ୍ଡାର ମେକାପଙ୍କ ଦାୟିତ୍ୱରେ ସମସ୍ତ ପୂଜା ଉପକରଣଗୁଡିକ ଥାଏ । ତାଙ୍କଠାରୁ ଆଳତି ପାଇଁ ସଜ ବା ଉପଚାର ଓ ପାଣି ଆପଟଙ୍କଠାରୁ ପାଣି ନେଇ ବେଜ ସେବକ ପାତ୍ରଗୁଡିକ ଧୋଇ ସଜ କରନ୍ତି ।



ତାପରେ ମୁଦୁଲି ଏହି ପାତ୍ରଗୁଡିକୁ ସଜାଇ ରଖିବା ପରେ ଘଟୁଆରୀ ସେବକ ଘୋରି କରି ଦେଇଥିବା ଚନ୍ଦନ ପାଣିକୁ ନେଇ ମୁଦୁଲି ଭିତର କାଠ ଠାରୁ ଜୟବିଜୟ ଦ୍ୱାର ପର୍ଯ୍ୟନ୍ତ ଛେରା ପକାନ୍ତି ଅର୍ଥାତ୍ ଛିଞ୍ଚନ୍ତି, ପତ୍ରିବଡୁ ସେବକ ମୁଦୁଲିଙ୍କଠାରୁ ଆଳତି ଉପଚାର ସଜଗୁଡିକ ନେଇ ସେଥିରେ ତଳୁସୀ ଓ ଆବଶ୍ୟକୀୟ ଫୁଲଗୁଡିକୁ ରଖି ଆଳତି ସେବକଙ୍କୁ ଯୋଗାନ୍ତି, ଖୁଣ୍ଟିଆ ସେବକ ଆଳତି ପାଇଁ ପାଳିଆ ପୁଷ୍ପାଳକଙ୍କୁ ଡାକନ୍ତି, ଗରାବଡୁ ସେବକ ପାଣି ଆପଟଙ୍କଠାରୁ ଢାଳରେ ପାଣି ନେଇ ପୁଷ୍ପାଳକ ବା ଆଳତି ସେବକଙ୍କୁ ପୂଜା ପାଇଁ ଯୋଗାନ୍ତି । ପ୍ରତିହାରୀ ବା ପଢିଆରୀ ସେବକ ମଙ୍ଗଳ ଆଳତି ବେଳେ ଦ୍ୱାର ଫିଟାନ୍ତି । ଏହାକୁ ବଡଦ୍ୱାର ପଢିଆରୀ କୁହାଯାଏ ଓ ଦକ୍ଷିଣଦ୍ୱାର ପଢିଆରୀ ମଙ୍ଗଳ ଆଳତି ସମୟରେ ଉପସ୍ଥିତ ରହନ୍ତି, ପୁଷ୍ପାଳକ ସେବକ ପ୍ରତ୍ୟହ ତିନିବାଡରେ ମଙ୍ଗଳ ଆଳତି, ସନ୍ଧ୍ୟା ଆଳତି ଓ ପହୁଡ ଆଳତି କରନ୍ତି । ମଙ୍ଗଳ ଆଳତିରେ ନିୟମ ଅନୁସାରେ ଶ୍ରୀଜଗନ୍ନାଥଙ୍କ ବାଡରେ ଭିତରଛ ମହାପାତ୍ର କରିବା କଥା, ସେ ଯଦି ଅନୁପସ୍ଥିତ ଥାନ୍ତି ତେବେ ତାଙ୍କ ସ୍ଥାନରେ ପୁଷ୍ପାଳକ ବା ସିଂହାରୀ ସେହି କାର୍ଯ୍ୟ ତୁଲାନ୍ତି । ସେହିପରି ସନ୍ଧ୍ୟା ଆଳତିରେ ନିୟମାନୁସାରେ ଶ୍ରୀଜଗନ୍ନାଥଙ୍କ ବାଡରେ ତଳୁଛ ମହାପାତ୍ର, ସୁଭଦ୍ରାଙ୍କ ବାଡରେ ସିଂହାରୀ ଓ ଶ୍ରୀବଳଭଦ୍ରଙ୍କ ବାଡରେ ସିଂହାରୀ ଆଳତି କରନ୍ତି । ତଳୁଛ ମହାପାତ୍ରଙ୍କ ଅନୁପସ୍ଥିତିରେ ସିଂହାରୀ ମଧ୍ୟ କାର୍ଯ୍ୟ ତୁଲାଇ ଦିଅନ୍ତି । ପହୁଡ ଆଳତି ବେଳେ ଶ୍ରୀଜଗନ୍ନାଥଙ୍କ ବେଢାରେ ମୁଦିରସ୍ତ କିମ୍ବା ପତି ମହାପାତ୍ର ଓ ସେମାନଙ୍କ ଅନୁପସ୍ଥିତିରେ ପୁଷ୍ପାଳକ, ସୁଭଦ୍ରା ଓ ଶ୍ରୀବଳଭଦ୍ରଙ୍କ ବାଡରେ ମଧ୍ୟ ସିଂହାରୀ ଆଳତି କାର୍ଯ୍ୟ ତୁଲାଇଥାନ୍ତି । ଦର୍ପଣିଆ ସେବକ ଆଳତି ସରିବା ପରେ ସମସ୍ତ ସାମଗ୍ରୀ ଉପଚାରଗୁଡିକୁ ମାଜନ୍ତି ।

ଶ୍ରୀମନ୍ଦିରରେ ଆଳତି କରିବା ସମୟରେ ବିଶେଷତଃ ତିନୋଟି ଦ୍ରବ୍ୟର ଆବଶ୍ୟକତା ପଡେ । ଆଳତି ସେବକମାନେ ପ୍ରତ୍ୟେକ ଆଳତି ସମୟରେ ଘୃତଯୁକ୍ତ ୨୧ଟି ବଳିତାରେ ବଳିତା ଆଳତି, କୃଷ୍ଣଭୋଗ ଚାଉଳ, ଦହି ଓ କର୍ପୂର ବଟା ପିଷ୍ଟକରେ ପିଷ୍ଟ ଆଳତି ଓ କର୍ପୂରରେ କର୍ପୂର ଆଳତି ଏହି ତିନି ଦ୍ରବ୍ୟରେ ପ୍ରଭୁଙ୍କୁ ତିନିଥର ଆଳତି କରାଯାଏ । ଆଳତି ପରେ ବଳିତାକୁ ଭକ୍ତମାନେ ଶୁଂଘନ୍ତି ଓ ମଥାରେ ମାରନ୍ତି, ପିଷ୍ଟକକୁ ଟିକିଏ ଟିକିଏ ତୁଳସୀ ସହ ସେବା କରିଥାନ୍ତି । କର୍ପୂରକୁ ମଧ୍ୟ ଆଖିରେ ବୋଳନ୍ତି । ଏଣୁ ଏହି ଆଳତିର ଆକର୍ଷଣରେ ବହୁ ଭକ୍ତ ଶ୍ରୀମନ୍ଦିରରେ ସମବେତ ହୋଇଥାନ୍ତି । ଏହି ମଙ୍ଗଳ ଆଳତି, ସନ୍ଧ୍ୟା ଆଳତି ଓ ପହୁଡ ଆଳତି ବ୍ୟତୀତ ଶ୍ରୀଜୀଉଙ୍କର ପ୍ରତ୍ୟେକ ଭୋଗ ସମୟରେ କେବଳ ପୂଜାପଣ୍ଡା ହିଁ ତିନିବାଡରେ ଆଳତି କରିଥାନ୍ତି । ଭୋଗ ସମୟରେ କରାଯାଉଥିବା ଆଳତିକୁ ଜୟ ମଙ୍ଗଳ ଆଳତି କୁହାଯାଏ ।

ଶ୍ରୀମନ୍ଦିରର ଆଳତି ସେବାରେ ନିଯୁକ୍ତ ଥିବା ସତରଜଣ ସେବକଙ୍କୁ ପ୍ରତିଦିନ ଖେଇ ମିଳେ ଓ ଏମାନେ ପ୍ରଭୁଙ୍କର ଅଙ୍ଗଲାଗି ସେବକ ଭାବେ ପରିଚିତ। । ଶ୍ରୀମନ୍ଦିରରେ ଏହି ବିଚିତ୍ର ନୀତି ଓ ବିଧି ବିଧାନ ଓଡ଼ିଶା, ଭାରତ କିମ୍ବା ସାରା ବିଶ୍ୱରେ ଥିବା ଶ୍ରୀଜଗନ୍ନାଥ ମନ୍ଦିର କିମ୍ବା ଅନ୍ୟାନ୍ୟ ମନ୍ଦିରରେ ପରିଦୃଷ୍ଟ ହୁଏନାହିଁ । ଏହି ସେବାର ପବିତ୍ରତା ଓ ପାରମ୍ପରିକତାକୁ ଅକ୍ଷୁଣ୍ଣ ରଖିବା ଦିଗରେ ପ୍ରତ୍ୟେକ ମାନବ ତତ୍ପର ହେବା ଉଚିତ ।

ଯୋଗ ନିକେତନ ଓଡ଼ିଶା,
ସମ୍ପାଦକ, ଯୋଗ ପଲ୍ଲବ,
ଗୁଡିଆ ସାହି, ପୁରୀ-୧







# ଜଣେ ମିସନାରୀଙ୍କ ଦୃଷ୍ଟିରେ 'ଶ୍ରୀଗୁଣ୍ଡିଚା'

ଡକ୍ଟର ବଳରାମ ଦାସ

କେଉଁ ସ୍ମରଣାତୀତ କାଳରୁ ଶ୍ରୀକ୍ଷେତ୍ର-ପୁରୀରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିଶ୍ୱପ୍ରସିଦ୍ଧ ରଥଯାତ୍ରା ମହାସମାରୋହରେ ଅନୁଷ୍ଠିତ ହୋଇଆସୁଅଛି । ଏହି ଯାତ୍ରାର ତାତ୍ତ୍ୱିକ କାରଣ ଯାହା ଥାଉନା କାହିଁକି ହିନ୍ଦୁମାନେ କିନ୍ତୁ ବିଶ୍ୱାସ କରନ୍ତି ଯେ, ରଥାରୂଢ ଜଗନ୍ନାଥଙ୍କୁ ଦର୍ଶନ କଲେ ମୁକ୍ତି ପ୍ରାପ୍ତ ହୋଇଥାଏ । ସେଥିପାଇଁ ଭାରତବର୍ଷ ସମେତ ବିଶ୍ୱର ବିଭିନ୍ନ ଅଞ୍ଚଳରୁ ବହୁ ଲୋକ ଶ୍ରୀଗୁଣ୍ଡିଚା ସମୟରେ ପୁରୀ ଆସିଥାନ୍ତି । ସେତେବେଳେ ବଡଦାଣ୍ଡ ହୋଇଯାଏ ଏକ ବିଶାଳ ଜନ-ସମୁଦ୍ର । କୁହାଯାଏ ଯେ, ପତିତଜନଙ୍କୁ ଦର୍ଶନ ଦେବା ପାଇଁ ମହାପ୍ରଭୁ ବଡ ଦେଉଳ ଛାଡି ବଡଦାଣ୍ଡକୁ ଓହ୍ଲାଇ ଆସନ୍ତି । ସେଇଠି ଭକ୍ତ ଓ ଭଗବାନଙ୍କ ମଧ୍ୟରେ ହୁଏ ମଧୁର ମିଳନ । ଏହା ସତ୍ୟ । କାରଣ ରଥ ଉପରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଓଡ଼ିଶା ସମେତ ସମଗ୍ର ଭାରତବର୍ଷରେ ଯେଉଁ ଶିହରଣ ସୃଷ୍ଟି ହୁଏ, ତାକୁ ଦେଖିଲେ ଏହି କଥା ହିଁ ମନକୁ ଆସିଥାଏ । ଓଡ଼ିଆ ଜାତିର ପ୍ରାଣ-ପ୍ରବାହରେ ରଥଯାତ୍ରା କେବଳ ଏକ ଯାତ୍ରା-ଉତ୍ସବ ନୁହେଁ, ଏହା ହେଉଛି ପ୍ରକୃତରେ ଭୂମିରୁ ଭୂମାକୁ ଏକ ଆନନ୍ଦମୟ ଯାତ୍ରା । ଏହି ଯାତ୍ରା ସହିତ ଗୋଟିଏ ଜାତିର ଭାବାବେଗ, କ୍ଷୀର-ନୀର ପରି ନିବିଡ ଭାବରେ ମିଶି ରହିଛି ।



ସମ୍ଭବତଃ ଏହିସବୁ କାରଣରୁ ଓଡିଆ ସାହିତ୍ୟ ଓ ସଂସ୍କୃତିରେ ରଥଯାତ୍ରା ଏକ ମହତ୍ତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଆସିଛି । ଭାରତବର୍ଷର ସବୁବର୍ଗର ସାଧୁ-ସନ୍ଥଙ୍କଠାରୁ ଆରମ୍ଭ କରି ସାଧାରଣ ଜନତା ପର୍ଯ୍ୟନ୍ତ ରଥଯାତ୍ରା ଦେଖିବା ପାଇଁ ଉଦ୍‌ବେଳିତ ହେଉଥିବାବେଳେ, ଜଣେ ଖ୍ରୀଷ୍ଟୀୟ ମିସନାରୀ ଏହାକୁ ଯେପରି ଅବଲୋକନ କରିଛନ୍ତି, ସେଥିରୁ ତାଙ୍କ ଧର୍ମୀୟ ସଂକୀର୍ଣ୍ଣତାର ପରିଚୟ ମିଳିଥାଏ । ଊନବିଂଶ ଶତାବ୍ଦୀରେ ଖ୍ରୀଷ୍ଟିୟ ମିସନାରୀମାନେ ଓଡ଼ିଶାରେ ଖ୍ରୀଷ୍ଟଧର୍ମର ପ୍ରଚାର ଓ ପ୍ରସାର ପାଇଁ ବିପୁଳ ଉଦ୍ୟମ କରିଥିଲେ । ନାନା ପ୍ରଲୋଭନ ଓ ପୁରସ୍କାରରେ ଆପ୍ୟାୟିତ କରି ସେମାନେ ବେଶ କିଛି ଲୋକଙ୍କୁ ଖ୍ରୀଷ୍ଟ ଧର୍ମରେ ଦୀକ୍ଷିତ ମଧ୍ୟ କରିପାରିଥିଲେ । ସେହି ଉଦ୍ଦେଶ୍ୟରେ ଯୀଶୁଖ୍ରୀଷ୍ଟଙ୍କର ବାଣୀକୁ, ଓଡ଼ିଆରେ ସେମାନଙ୍କର ଭାଷା ଜ୍ଞାନ ଆଧାରରେ ରୂପାନ୍ତରିତ କରି ପ୍ରଚାରରେ ବ୍ୟବହାର କରୁଥିଲେ । ସେମାନଙ୍କର ବିକୃତ ଓଡ଼ିଆ ଉଚ୍ଚାରଣ ଓ କିମ୍ଭୂତ ପ୍ରକାଶ ଭଙ୍ଗୀ ଲୋକମାନଙ୍କ ପାଇଁ ବେଶ୍ ଆମୋଦଦାୟକ ହେଉଥିଲା । ଲୋକମାନେ କୌଣସି ମିସନାରୀଙ୍କୁ ଓଡିଆରେ ଭାଷଣ ଦେଉଥିବାର ଦେଖିଲେ, ମଜା ଦେଖିବା ପାଇଁ ସେଠାରେ ରୁଣ୍ଡ ହୋଇଯାଉଥିଲେ । ଆଉ ସାହେବ, ସେ ସମାବେଶକୁ ତାଙ୍କ ପ୍ରତି ଲୋକମାନଙ୍କର ଆଗ୍ରହ ବା ଆକର୍ଷଣ ବୋଲି ଧରିନେଇ, ବିପୁଳ ଉତ୍ସାହର ସହ ଖ୍ରୀଷ୍ଟଧର୍ମର ମହତ୍ତ୍ୱ ପ୍ରଚାର କରୁଥିଲେ । ଖ୍ରୀଷ୍ଟଧର୍ମର ମହତ୍ତ୍ୱ ପ୍ରତିପାଦନ ପାଇଁ ସ୍ୱାଭାବିକ ଭାବରେ ସେମାନେ ହିନ୍ଦୁ ଦେବଦେବୀଙ୍କୁ ଆକ୍ଷେପ କରିବା ସୁଯୋଗକୁ ଆଦୌ ହାତଛଡା କରୁନଥିଲେ । ଏ ସମ୍ପର୍କରେ ଫକୀରମୋହନ ତାଙ୍କ 'ଆତ୍ମ ଜୀବନ ଚରିତ'ରେ ଯେଉଁ ସ୍ମୃତିଚାରଣ କରିଛନ୍ତି, ତାହା ପ୍ରକୃତରେ ଅତ୍ୟନ୍ତ ହାସ୍ୟୋଦ୍ଦୀପକ । ସେ ଲେଖିଛନ୍ତି, 'ପ୍ରଭୁ ଯୀଶୁଖ୍ରୀଷ୍ଟଙ୍କ ଧର୍ମ-କାହାଣୀ ହାଟ ଏବଂ ଅନ୍ୟାନ୍ୟ ପ୍ରଧାନ ସ୍ଥାନମାନଙ୍କରେ ପ୍ରଚାର କରିବା ସକାଶେ ସାହେବ ପ୍ରଚାରକ ଭାଇମାନଙ୍କୁ ସଙ୍ଗରେ ଘେନି ମଫସଲର ଦୂରବର୍ତ୍ତୀ ସ୍ଥାନମାନଙ୍କୁ ଯାଆନ୍ତି । ସେମାନେ ବାଲେଶ୍ୱରକୁ ବାହୁଡିବା ସଙ୍ଗେ ସଙ୍ଗେ ତାଙ୍କ ବିପକ୍ଷରେ ଫୌଜଦାରୀରେ ମାମଲା ଦାଏର ହୋଇଯାଏ । ମାମଲାର ବିବରଣ-ପ୍ରଚାରକ ଭାଇମାନଙ୍କ ସହିତ ହାଟର ପ୍ରକାଶ୍ୟ ସ୍ଥାନରେ ଛିଡା ହୋଇ, ଇଂରାଜୀ ରାଗିଣୀରେ ଉଚ୍ଚକଣ୍ଠରେ ଗୋଟିଏ ଗୀତ ଗାଇଲେ, ହାଟର ଲୋକେ ସେହି ଅପୂର୍ବ ସ୍ୱରରେ ଗୀତ ଶୁଣିବାକୁ ରୁଣ୍ଡ ହୋଇଯାଆନ୍ତି । ଗୀତର ଅର୍ଥ ବୁଝିବାକୁ ହାଟୁଆ ବାଟୁଆଙ୍କ କଥା ତେଣିକି ଥାଉ, କୌଣସି ଶିକ୍ଷିତ ଲୋକ ମଧ୍ୟ ସେ ଗୀତର ଅର୍ଥ ବୁଝିବାକୁ ସକ୍ଷମ ହେବନାହିଁ । ସଙ୍ଗୀତ ସମାପ୍ତ ହେବା ଉତ୍ତାରେ ସାହେବ ସ୍ୱୟଂ ବକ୍ତୃତା ଆରମ୍ଭ କରନ୍ତି- ଏ ବାଇମାନେ, ତୁମ୍ଭମାନଙ୍କ ଜଗନ୍ନାଥ କାଷ୍ଠ ଅଛି, ପାଷାଣ ଅଛି, ସେ କିଛି ନୁହେଁ । ତାକୁ ବଜିଲେ



ଅନନ୍ତ ନରକରେ ପଡିବ । ପ୍ରଭୁ ଯୀଶୁଖ୍ରୀଷ୍ଟ ତ୍ରାଣକର୍ତ୍ତା ଅଟନ୍ତି । ତାଙ୍କୁ ଭଜିଲେ ଆଲୁଅ ପାଇବ, ସ୍ୱର୍ଗ ରାଜ୍ୟର ଅଧିକାରୀ ହେବ ।'

ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାର କଲାବେଳେ ମିସନାରୀମାନେ ହିନ୍ଦୁ ଦେବଦେବୀଙ୍କୁ ତ ଆକ୍ଷେପ କରୁଥିଲେ, ବେଶି ଆକ୍ରୋଶର ଶରବ୍ୟ ହେଉଥିଲେ ଓଡ଼ିଆ ଜାତିର ମଉଡମଣି ଶ୍ରୀଜଗନ୍ନାଥ । ଓଡ଼ିଶା ରହଣୀ ମଧ୍ୟରେ ସେମାନେ ବୁଝିପାରିଥିଲେ ଯେ, ଜଗନ୍ନାଥ ଏ ଜାତିର ଦେବତା କେବଳ ନୁହଁନ୍ତି, ଜଗନ୍ନାଥ-ଓଡ଼ିଆ ଜାତିର ପ୍ରାଣ । ସେଇ ପ୍ରାଣରେ କମ୍ପନ ଜଗାଇବା ପାଇଁ ସେମାନେ ଶ୍ରୀଜଗନ୍ନାଥ ଓ ତାଙ୍କର ବିଭିନ୍ନ ଯାତ୍ରା-ଉତ୍ସବକୁ ଆକ୍ଷେପ କରି ନାନା ପ୍ରଚାର ପତ୍ର ଓ ପୁସ୍ତକମାନ ରଚନା କରିଥିଲେ । ସେସବୁ ପୁସ୍ତକରେ ଓଡ଼ିଆ ଭାଷାର ଶିରୀ ଦେଖିଲେ ନହସି ରହିହେବ ନାହିଁ । କେଜାଣି କାହିଁକି ଓଡ଼ିଶାରେ ଖ୍ରୀଷ୍ଟଧର୍ମ ପ୍ରଚାର କରୁଥିବା କିଛି ମିସନାରୀଙ୍କ ମନରେ ଗୋଟିଏ ଅଦ୍ଭୁତ ଧାରଣା ହୋଇଯାଇଥିଲା ଯେ, ସେମାନେ ମଧ୍ୟ ଓଡ଼ିଆ ଭାଷାରେ ଜଣେ ଜଣେ ପଣ୍ଡିତ ଅଥବା ବିଶାରଦ । ଫକୀରମୋହନ ତାଙ୍କ 'ଆତ୍ମଜୀବନ ଚରିତ'ରେ ଏମିତି ଜଣେ ତଥାକଥିତ ପଣ୍ଡିତ-ମିଲର ସାହେବଙ୍କ କଥା କହିଛନ୍ତି । ସେଇମିତି ଆଉ ଜଣେ ପଣ୍ଡିତ ହେଉଛନ୍ତି ଚାର୍ଲସ ଲେସି । ଓଡ଼ିଆରେ ସେ ଯେଉଁ ପୁସ୍ତିକାଟି ଲେଖିଛନ୍ତି ତାର ନାମ-'ଗୁଣ୍ଡିଚା ଯାତ୍ରାର ମହାଶ୍ଚର୍ଯ୍ୟ ଫଳ' । ଏହି ପୁସ୍ତିକାଟି ୧୮୩୮ ମସିହାରେ କଟକ ମିଶନ ପ୍ରେସ୍‌ରୁ ପ୍ରକାଶିତ । ସହଜ ଓ ସରଳ ଭାବରେ ଖ୍ରୀଷ୍ଟଧର୍ମର ପୁସ୍ତକ ପ୍ରକାଶନ ଉଦ୍ଦେଶ୍ୟରେ କଟକରେ ଏହି ପ୍ରେସ୍ ସ୍ଥାପିତ ହୋଇଥିଲା । ଓଡ଼ିଶାରେ ଖ୍ରୀଷ୍ଟଧର୍ମର ପ୍ରଚାର ଓ ପ୍ରସାରରେ ମିଶନ ପ୍ରେସ୍ ହିଁ ଥିଲା ଆଦି ଓ ଅକୃତ୍ରିମ ସହଯୋଗୀ । ସେଇଠି ଯେମିତି ଯନ୍ତ୍ର ଆଉ ଧର୍ମ ଅବିଭାଜ୍ୟ ହୋଇଯାଇଥିଲେ ।

ଗୁଣ୍ଡିଚା ଯାତ୍ରାର ମହାଶ୍ଚର୍ଯ୍ୟ ଫଳ ପୁସ୍ତିକାର ଆରମ୍ଭରେ ଲେଖକ ଚାର୍ଲସ ଲେସି କାହିଁକି ଏପରି ଏକ ପୁସ୍ତିକା ଲେଖିଲେ, ତାର କାରଣ ଦର୍ଶାଇ କହିଛନ୍ତି-'ହେ ପ୍ରିୟ ହିନ୍ଦୁଭାଇ: ଏହି ସମୟରେ ଶ୍ରୀଶ୍ରୀଶ୍ରୀ ଜଗନ୍ନାଥ ମହାପ୍ରଭୁଙ୍କର ସୌନ୍ଦର୍ଯ୍ୟ ଶ୍ରୀମୁଖ ଦର୍ଶନ କରିବା ପାଇଁ ଅପାର ଅପାର ଲୋକ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଯାତ୍ରା କରୁଛଅନ୍ତି । ଏଥିନିମନ୍ତେ ଏହି ଶ୍ରୀଗୁଣ୍ଡିଚା ଯାତ୍ରା କରିବାର ଯେଉଁ ମହାଶ୍ଚର୍ଯ୍ୟ ଫଳ ଉତ୍ପନ୍ନ ହେଉଛି ତାହା ବିଷୟରେ ତୁମ୍ଭର ମନକୁ ପ୍ରବୋଧ କରାଇବା ପାଇଁ ପୁଣି ଯେଉଁ ଯେଉଁ ଯାତ୍ରୀମାନେ ବଞ୍ଚିଥାଇ ଆପଣ ଆପଣ ଘରକୁ ନେଉଟି ଯାଆନ୍ତି ସେମାନଙ୍କର କୁଟୁମ୍ବାଦି ଲୋକମାନଙ୍କୁ ଜଣାଇବା ପାଇଁ ଏହି ପତ୍ର ଲେଖାଅଛି । କମା, ପୂର୍ଣ୍ଣଚ୍ଛେଦ ବ୍ୟବହାରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଓ ଅନଭ୍ୟସ୍ତ ଚାର୍ଲସ ଲେସି ଏତକ ଉପକ୍ରମଣିକା ପରେ 'ଶ୍ରୀ ଶ୍ରୀ ଗୁଣ୍ଡିଚା ଯାତ୍ରାର ମହାଶ୍ଚର୍ଯ୍ୟ ଫଳ, ସମ୍ପର୍କରେ ନିଜ ବିଚାରଧାରା ଉପସ୍ଥାପନ କରିଛନ୍ତି । ଏହାକୁ ସେ ଦୁଇଟି ପର୍ଯ୍ୟାୟରେ- 'ପ୍ରଥମ ଫଳ' ଓ 'ଦ୍ୱିତୀୟ ଫଳ' ଶିରୋନାମାରେ ପ୍ରକାଶ କରିଅଛନ୍ତି । ଲେସିଙ୍କ ବିଚାରରେ ଗୁଣ୍ଡିଚା ଯାତ୍ରାର ପ୍ରଥମଫଳ ହେଉଛି ଯାତ୍ରୀମାନଙ୍କ 'ଦେହର ଅନେକ କ୍ଳେଶ' ଓ 'ମନରେ ଅତ୍ୟନ୍ତ ଦୁଃଖ' । ଏ ଦୁଃଖ କଷ୍ଟ ସହିତ ଜଗନ୍ନାଥ-ଦର୍ଶନାର୍ଥୀମାନେ ଅଭ୍ୟସ୍ତ ଓ ଏହାକୁ ସମସ୍ତେ ସ୍ୱାଭାବିକ ବୋଲି ଭାବିଥାନ୍ତି । ସେମାନେ ବରଂ ଭଲ ଭାବରେ ଜାଣନ୍ତି ଯେ ସବୁ କଷ୍ଟର ଅନ୍ତ ହେଉଛନ୍ତି ମହାପ୍ରଭୁ ଶ୍ରୀଜଗନ୍ନାଥ । ହେଲେ ଯେଉଁ କଥା ଜଗନ୍ନାଥ-ଅନୁରାଗୀମାନେ ଜାଣନ୍ତି, ସେ କଥା ଖ୍ରୀଷ୍ଟ ପ୍ରେମୀଙ୍କୁ ଜଣାନଥିବା ସ୍ୱାଭାବିକ । ସେଥିପାଇଁ ଚାର୍ଲସ ଲେସି ନିଜ ବକ୍ତବ୍ୟକୁ ପ୍ରମାଣସିଦ୍ଧ କରିବାକୁ ଯାଇ କହିଛନ୍ତି- 'ସମସ୍ତେ ଅନାୟସରେ ଦେଖୁଛନ୍ତି ଯେ, ସେମାନେ ଯିବାବେଳେ ହୃଷ୍ଟଚିତ୍ତ ହୋଇ ଉର୍ଦ୍ଧ୍ୱ ମୁଖରେ ହେ ଜଗନ୍ନାଥ ସ୍ୱାମୀ କି ଜୟ ବୋଲି ଧାଇଁ ଆସନ୍ତି । ପୁଣି ବାହୁଡିବା ବେଳେ ଅଧୋମୁଖ ହୋଇ କାନ୍ଦି କାନ୍ଦି ମହାଦୁଃଖ କଷ୍ଟରେ ଫେରି ଯାଆନ୍ତି । ଏହି ଗୁଣ୍ଡିଚା ଯାତ୍ରାର ପ୍ରଥମ ଫଳ ।

ଗୁଣ୍ଡିଚା ଯାତ୍ରାର ଦ୍ୱିତୀୟ ଫଳ ସ୍ୱରୂପ ଲେସି ଯେଉଁ ଦିଗ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି, ତାହା ହେଉଛି ଯାତ୍ରୀମାନଙ୍କର ଅର୍ଥ ହାନି । ସେଥିପାଇଁ ପ୍ରଥମରୁ ସେ କହିଛନ୍ତି- 'ଯେବେ ତୁମଠାରେ ଅଧିକ ଧନ ଥାଇ ଓ ସେ ଧନ ଉଡାଇବାକୁ ବାଞ୍ଛା କର ତେବେ ଗୁଣ୍ଡିଚା ଯାତ୍ରା କର ।' ଏହା ପରେ ଲେସି ଯାତ୍ରୀମାନଙ୍କର ବାଟ ଖର୍ଚ୍ଚ, ନଗର ପ୍ରବେଶ ପାଇଁ ଟଙ୍କା, ବିଭିନ୍ନ ତୀର୍ଥ ପୁଷ୍କରିଣୀରେ ସ୍ନାନ ପାଇଁ ପଣ୍ଡାମାନଙ୍କୁ ଦେବାକୁ ହେଉଥିବା ଟଙ୍କା, ଜଗନ୍ନାଥଙ୍କୁ ନୈବେଦ୍ୟ ଦକ୍ଷିଣା, ଦେଉଳ ରୀତି ଅନୁସାରେ ନାନା ସ୍ଥାନରେ ସ୍ନାନ ଦର୍ଶନାଦିର କାରଣରେ ଟଙ୍କା ଦେବା ପ୍ରସଙ୍ଗ ଉଲ୍ଲେଖ କରି ଏହା ଲୋକମାନଙ୍କୁ କିପରି ଦହଗଞ୍ଜ କରେ, ତାହା ପ୍ରକାଶ କରିଛନ୍ତି । ରଥଯାତ୍ରାର ଅନ୍ୟାନ୍ୟ ଫଳ ସମ୍ପର୍କରେ ସ୍ୱଅଭିଜ୍ଞତା ଆଧାରରେ ଚାର୍ଲସ ଲେସି ଲେଖିଛନ୍ତି-ଆଉ ଆମ୍ଭେମାନେ ଦେଖିବାକୁ ପାଉ ଏହି ଯେ, ପୀତୁଲୀ ତୁମ୍ଭେ ସମସ୍ତେ ଭୁଲ କରି ଜଗନ୍ନାଥ ବୋଲି ବୋଲୁଅଛ ସେ ପୀତୁଲୀର ରଥ ଉପରେ କି କି ଦୁଷ୍ଟ ଲମ୍ପଟ ଅଙ୍ଗଭଙ୍ଗୀ କ୍ରିୟା ହେଉଅଛି ପୁଣି କି କି ଅଶୌଚ ଅଶ୍ରାବ୍ୟ ଗୀତ ଗାନ ହେଉଅଛି । ଆଉ ପୁରୁଷୋତ୍ତମ ଛାଡି ଅନ୍ୟ ନାନା ସ୍ଥାନରେ ଜଗନ୍ନାଥର ଦେଉଳ ଉପରେ ଓ ରଥ ଉପରେ କେମନ୍ତ ଦୁଷ୍ଟ କ୍ରିୟା ବିଶିଷ୍ଟ ମୂର୍ତ୍ତି ନିର୍ମାଣ କରାଯାଉଅଛି । ଏମନ୍ତ ଭାବର ଛବି ଯେ ସେହି ଭାବର କଥା ଭଲ ମନିଷର ମଧ୍ୟରେ କୁହାଯାଏନାହିଁ । ଏହି ପ୍ରକାର କ୍ରିୟା ଦେଖିଲେ ପୁଣି ଏହି ପ୍ରକାର ଗୀତ ଶୁନିଲେ କି ତୁମ୍ଭ ମାନଙ୍କର ଡିଲ୍ଲା ବାଲକ ତରୁଣର ମନ ଆଉ ମନ୍ଦ ନହୁଅଇ । ପୁଣି ସେମାନଙ୍କର କ୍ରିୟା କି ଆଉ କଦାଚାର ନହୁଅଇ । ତୁମ୍ଭେମାନେ କି ବୁଝୁଅଛ ଯେ, ଜଗତରନାଥ ଏ ରପ କର୍ମକୁ ଭଲ ଚାହାନ୍ତି । ଯେବେ ଘୋର ଅନ୍ଧକାରରେ ମଗ୍ନ ନହୁଅନ୍ତି ତେବେ ଏମନ୍ତ ମନ୍ଦ କର୍ମ ଓ ଈଶ୍ୱରଙ୍କର ଭଜନା କେବେ ହେଁ ଏକଠା ନକରନ୍ତ । ପ୍ରତ୍ୟେକ ଗଛ ଆପନ ଫଳରେ

ଜନା ଯାୟ । ଏହି ନିମନ୍ତେ ଜଗନ୍ନାଥ ସେବାର ଫଳ କି ପ୍ରକାର ତାହା ଭଲ ରୂପେ ବିବେଚନା କରି ଦେଖ । ବରସକୁ ବରସ ରଥଯାତ୍ରା ସ୍ୱକାଶର କେତେ ହତ୍ୟା ଆତ୍ମହତ୍ୟା ହୁଅଇ । କେତେ ପରଦାର ଓ ବେଶ୍ୟା ଗମନ ହୁଅଇ । କେତେ ଜୁଆଖେଳା ଚେର୍ଯ୍ୟ ଠଗାଦି କ୍ରିୟା ହୁଅଇ । ଆଉ ତାହା ସ୍ୱକାଶର କେତେ ସ୍ତ୍ରୀର ଲୋକର ଭ୍ରଷ୍ଟି ହୁଅଇ । କେତେ ମନୁଷ୍ୟର ମନ ବିକାର ହୁଅଇ । କେତେ ଶୟ ଲୋକ ନାନାଦି ପ୍ରକାର ରୋଗରେ ଦୁଃଖରେ କଷ୍ଟରେ ମରିଯାୟ । କେତେ ପିଲାଲୋକ ପିତାମାତା ହୀନ ହୁଅଇ । ପୁଣି ନାନାଦି ପାପ କରିବା ସ୍ୱକାଶର ଇହଲୋକ ଓ ପରଲୋକରେ କେତେ ଦଣ୍ଡର ଭୋଗ ହୁଅଇ । ଜଗନ୍ନାଥର ସେବାର ଏହିସବୁ ଫଳ ପ୍ରତ୍ୟକ୍ଷ ହୁଅଇ । ଏହା ଛାଡି ଜଗନ୍ନାଥର ନିଜ ପଡିସା ଲୋକ ଅର୍ଥାତ୍ ପୁରୁଷୋତ୍ତମ ନଗର ନିବାସୀମାନଙ୍କର ଆଚରଣକୁ ବିଚାର କର । ସେମାନେ କି ଆଉ ହିନ୍ଦୁ ଲୋକର ଧାର୍ମିକ କି ଅଧାର୍ମିକ ସେମାନେ କି ଆଉ ଲୋକର ଦୟାଳୁ କି ନିଷ୍ଠୁର । ସେମାନଙ୍କର ମୁଖର ଭାଷା କି ଆଉ ଲୋକର ଭାଷାର ଉତ୍ତମ କି ଅଧମ ଆଉ ସେମାନଙ୍କର ସବୁ ଆଚରଣ ଲୋକଙ୍କ ଠାରୁ ଭଲ କି ମନ୍ଦ ତାହା ବିବେଚନା କର ।'

ଚାର୍ଲସ ଲେସି ଏସମ୍ପର୍କରେ ଆଉ ଏକ ପ୍ରସଙ୍ଗର ଅବତାରଣା କରି କହିଛନ୍ତି- 'ଏଥିପାଇଁ ଅନେକ ଦେଶକୁ ଲୋକମାନଙ୍କୁ ଡାକିବା ପାଇଁ ପଣ୍ଡାମାନେ ଯାଆନ୍ତି । ବୋଲନ୍ତି ଆଷାଢ ମାସରେ ଶ୍ରୀଗୁଣ୍ଡିଚା ବାହୁଡା ଯାତ୍ରାକୁ ଆସ । ତୁମ୍ଭେ ପୁଣି ତୁମ୍ଭ ସାତ ପୁରୁଷ ଉଦ୍ଧାର ହୋଇବ । ଏହି ପ୍ରକାର ନାନାଦି କଳ୍ପିତ କଥା ଗୁଡାକ କହୁ କହୁ ଲୋକମାନଙ୍କୁ ଫୁସଲାଇ ନିୟନ୍ତି । ଚାର୍ଲସ ଲେସିଙ୍କ ଧାରଣାରେ ଏହିସବୁ ହିଁ ହେଉଛି ଶ୍ରୀ ଶ୍ରୀ ଗୁଣ୍ଡିଚା ଯାତ୍ରାର ମହାଶ୍ଚର୍ଯ୍ୟ ଫଳ ।

ଗୁଣ୍ଡିଚା ପ୍ରସଙ୍ଗରେ କହିବା ବେଳେ ସ୍ୱାଭାବିକ ଭାବରେ ମିଃ ଲେସି ଶ୍ରୀଜଗନ୍ନାଥଙ୍କୁ ମଧ୍ୟ ତାଙ୍କ ସମାଲୋଚନା ପରିସର ଭୁକ୍ତ କରିଅଛନ୍ତି । ଶ୍ରୀଜଗନ୍ନାଥଙ୍କ ବିଗ୍ରହ ନିର୍ମାଣ ନେପଥ୍ୟରେ ଯେ କେତେ ପ୍ରକାର ଆନୁଷ୍ଠାନିକତା ରହିଛି, ତାହା ମିଃ ଲେସିଙ୍କୁ ଜଣାନଥିବାରୁ ସେ ଏହି ପ୍ରସଙ୍ଗରେ ନିଜ ଅଜ୍ଞତାର ହିଁ ପରିଚୟ ଦେଇଅଛନ୍ତି । ତାଙ୍କ ନିଜ ଭାଷାରେ- 'ହେ ଅବଧାନମାନେ ଆମ୍ଭେମାନେ ସମସ୍ତ ଦେଖିବାକୁ ପାଇ ଯେ ପିତୁଳାକୁ ତୁମ୍ଭେମାନେ ଜଗନ୍ନାଥ ବୋଲି ବୋଲିଅଛ ସେହି ଏହି ପ୍ରକାର ଏକ ମନୁଷ୍ୟର କୌଶଳରେ ହସ୍ତକୃତ କାଷ୍ଠର ମୂର୍ତ୍ତି ଅଛି । କାରିଗର ଲୋକ ନିମ୍ବ ଗଛ କାଟି ତାହା ମୂର୍ତ୍ତି ବନାଇ ହେଙ୍ଗୁଳ ହରିତାଳ ସବୁଜ ରଙ୍ଗ ଓ ଧଳା ଖଡିରେ ଚିତ୍ର ଛବି ରୂପ ହାତରେ ପ୍ରସ୍ତୁତ କରି ସ୍ଥାନେ ସ୍ଥାନେ ସୁଗନ୍ଧ ଦ୍ରବ୍ୟ ଚନ୍ଦନ ଲେପି ନାନା ଜାତୀୟ ଫୁଲ ପତ୍ର କଦଳୀ ପଟରେ ଗୁନ୍ଥି ମଣ୍ଡି ଅଛି । ଏହି ରୂପେ ଜଗନ୍ନାଥ ରୂପକୁ ବ୍ରାହ୍ମଣମାନଙ୍କର ହାତରେ ବେଦ ଉକ୍ତି ପ୍ରମାଣେ ପ୍ରତିଷ୍ଠା କରନ୍ତି । ପୁଣି ସ୍ୱର୍ଗ ପୃଥିବୀ ପାତାଳରେ ଯାହାର ସାଦୃଶ ନାହିଁ ଏମନ୍ତ ଏହି ଅତ୍ୟନ୍ତ ଭୟଜନକ ରୂପ ପିତୁଳାକୁ ଜଗନ୍ନାଥ ନାମ କରି କହିଲେ କେବଳ ସତ୍ୟ ଜଗତର ନାଥର ନିନ୍ଦା କାରଣ ହୁଅନ୍ତି । ବୈଦେଶିକ ଆକ୍ରମଣ ସମୟରେ ଶ୍ରୀଜଗନ୍ନାଥଙ୍କର ପାତାଳି ହେବା, କଳାପାହାଡର ବିଗ୍ରହମାନଙ୍କୁ ନେଇ ଗଙ୍ଗାକୂଳରେ ଦାହ-ବିସର୍ଜନ ପ୍ରସଙ୍ଗ ମଧ୍ୟ ଲେସିଙ୍କ ଏହି ପୁସ୍ତିକାରେ ସ୍ଥାନିତ ହୋଇଛି ।

ଖ୍ରୀଷ୍ଟ ଧର୍ମ ପ୍ରଚାର ପାଇଁ ହିନ୍ଦୁ ଦେବଦେବୀଙ୍କୁ ଆକ୍ଷେପ କରିବା ଚାର୍ଲସ ଲେସିଙ୍କର ମୂଳ ଉଦ୍ଦେଶ୍ୟ ହୋଇଥିବାରୁ, ସେ ସ୍ଥୂଳ ବିଷୟ ଉପରେ ହିଁ ଗୁରୁତ୍ୱ ଦେଇଛନ୍ତି । କଲେରା, ରାସ୍ତା ଦୁର୍ଘଟଣା, ଶ୍ୱାପଦ ଶଙ୍କୁଳ ଅରଣ୍ୟ ପଥରେ ବନ୍ୟଜନ୍ତୁଙ୍କ ଆକ୍ରମଣ ଆଦି ଯୋଗୁଁ ସମୟ ବିଶେଷରେ, କିଛି ଲୋକଙ୍କର ପ୍ରାଣହାନି ଅବଶ୍ୟ ଘଟିଥାଏ । ଚାର୍ଲସ ଲେସି ତାଙ୍କ ସ୍ଥୂଳ ଦୃଷ୍ଟିରେ ମୃତ୍ୟୁକୁ ହିଁ ଦେଖିଛନ୍ତି, କିନ୍ତୁ ସେ ମୃତ୍ୟୁର ସୂକ୍ଷ୍ମ-ସୂତ୍ରଟିକୁ ଖୋଜି ପାଇନାହାନ୍ତି । ସେ ତେଣୁ ଭାବି ପାରିନାହାଁନ୍ତି ଯେ ଶ୍ରୀକ୍ଷେତ୍ର ଧୂଳିରେ ଦେହରକ୍ଷା କରିବା ମଣିଷର କୋଟି ଜନ୍ମର ସ୍ୱପ୍ନ ହୋଇପାରେ !

ପୁସ୍ତକର ଅବଶିଷ୍ଟ ଅଂଶ ସ୍ୱାଭାବିକ ଭାବରେ ଯୀଶୁଖ୍ରୀଷ୍ଟ ଓ ଖ୍ରୀଷ୍ଟଧର୍ମର ମହତ୍ତ୍ୱ ବର୍ଣ୍ଣନାରେ ପୂର୍ଣ୍ଣ । ନିଜର ବକ୍ତବ୍ୟକୁ ବିଶ୍ୱସନୀୟ କରିବା ପାଇଁ ସେ ଗୀତାର ଗୋଟିଏ ଦୁଇଟି ଶ୍ଳୋକ ମଧ୍ୟ ଉଦ୍ଧାର କରିଛନ୍ତି । ଏହି ପ୍ରସଙ୍ଗରେ ସେ ଅବଶ୍ୟ ଗୋଟିଏ ଭାବିବା ଭଳି କଥା କହିଛନ୍ତି । ତାଙ୍କର ସେ କଥାଟି ହେଉଛି- ଯେଉଁ ଲୋକମାନେ ଜଗନ୍ନାଥର ନିତ୍ୟଦର୍ଶନ ଭଜନା କରନ୍ତି ସେହି ସବୁ ଲୋକ ଯେବେ ଆଉ ହିନ୍ଦୁମାନଙ୍କଠାରୁ ଅଧିକ ପାପିଷ୍ଠ ହୁଅନ୍ତି ତେବେ ଏହି ପିତୁଳାର ସେବା କେମନ୍ତ କରି ଭଲ ଜାନିବା ।

ଚାର୍ଲସ ଲେସି ଶ୍ରୀଗୁଣ୍ଡିଚା ଓ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଯାହା କହିଛନ୍ତି, ଜଗନ୍ନାଥ ପ୍ରେମୀଙ୍କୁ ତାହା କାଣିଚାଏ ଛୁଇଁବ ନାହିଁ । କାରଣ ତାଙ୍କ କଥା ଅପେକ୍ଷା ତାଙ୍କ କଥା କହିବାର ଭାଷା-ଭଙ୍ଗିଟି ବେଶ୍ ଉପଭୋଗ୍ୟ । ଶ୍ରୀଜଗନ୍ନାଥ ମଣିଷର ସୂକ୍ଷ୍ମ ଚେତନାର ଏମିତି ଏକ ଜଗତରେ ବିରାଜିତ, ଯାହା ମଧ୍ୟରେ ପ୍ରବେଶ କରିବା ଲେସିଙ୍କ ପକ୍ଷରେ ସମ୍ଭବ ନୁହେଁ । ତେଣୁ ତାଙ୍କୁ ଖୁବ୍‌ବେଶୀରେ ଅଜ୍ଞାନୀ ବୋଲି କୁହାଯାଇପାରେ । କିନ୍ତୁ ଆମେ ସବୁ ଆଜି ଜଗନ୍ନାଥଙ୍କ ସମ୍ପର୍କରେ ନିଜକୁ ଅତିଜ୍ଞାନୀ ବୋଲି ଭାବି, ଯେପରି ଭାବରେ ରହସ୍ୟମୟ ପରବ୍ରହ୍ମଙ୍କର ଜାତକ ଖୋଳୁଛୁ, ତାକୁ ଦେଖିଲେ ଜଗନ୍ନାଥ ସଂସ୍କୃତି ସମ୍ପର୍କରେ ଚାର୍ଲସ ଲେସିଙ୍କର ଏ ଆକଳନ ଅବଶ୍ୟ ଫିକା ଦେଖାଯିବ ।

ଶଙ୍ଖନାଭି
ସର୍ବୋଦୟ ନଗର, ପୁରୀ-୨



# କପିଳ ସଂହିତାରେ ଶ୍ରୀକ୍ଷେତ୍ର

ଡକ୍ଟର ଉମେଶ ଚନ୍ଦ୍ର ଚିହ୍ନରା



କପିଳ ସଂହିତା ଗ୍ରନ୍ଥର ରଚୟିତା ହେଉଛନ୍ତି କପିଳ ମୁନି । ଏକୋଇଶ ଅଧ୍ୟାୟ ସମ୍ବଳିତ ଉକ୍ତ ସଂହିତାଟି ପୁରାଣ ପ୍ରସିଦ୍ଧ କପିଳ ମୁନିଙ୍କ ନାମରେ ଭଣିତ ହୋଇଥିବାରୁ ଏହାର ନାମକରଣରେ ଯଥାର୍ଥତା ଉପଲବ୍ଧ କରିହୁଏ । ଉକ୍ତ ଗ୍ରନ୍ଥରେ କେବଳ ଉତ୍କଳ ପ୍ରଦେଶରେ ଥିବା ତୀର୍ଥସ୍ଥାନମାନଙ୍କର ବର୍ଣ୍ଣନା ରହିଅଛି । ଗ୍ରନ୍ଥର ରଚନାକାଳ ସମ୍ପର୍କରେ ବହୁ ଗବେଷକ ଭିନ୍ନ ଭିନ୍ନ ମତପୋଷଣ କରି ନିଜ ନିଜର ମତବ୍ୟକ୍ତ କରିଥିଲେ ହେଁ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହି ଗ୍ରନ୍ଥକୁ ଖ୍ରୀଷ୍ଟୀୟ ପଞ୍ଚଦଶ କିମ୍ବା ଷୋଡଶ ଶତାବ୍ଦୀରେ ରଚିତ ହୋଇଥିବା ଅନୁମାନ କରିଛନ୍ତି । ଅଧୁନା ସଂକଳିତ କପିଳ ସଂହିତା ଗ୍ରନ୍ଥଟି ୨୧ ଅଧ୍ୟାୟ ବିଶିଷ୍ଟ ରଚନା । ଏହି ଗ୍ରନ୍ଥରେ ପୁଷ୍କରବନ ମଧ୍ୟରେ ଋଷିମାନେ ଭରଦ୍ୱାଜ ମୁନିଙ୍କୁ ଉତ୍କଳର ଶ୍ରେଷ୍ଠତ୍ୱ ସମ୍ପର୍କରେ ପ୍ରଶ୍ନ ପଚାରିଛନ୍ତି । ଭରଦ୍ୱାଜ ମୁନି ଏହି ପ୍ରଶ୍ନର ଉତ୍ତର ଦେବାକୁ ଯାଇ ଉତ୍କଳର ବିଭିନ୍ନ କ୍ଷେତ୍ର ଏବଂ ସେସବୁର ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ସମଗ୍ର ଗ୍ରନ୍ଥଟିକୁ ଅଧ୍ୟୟନ କଲେ ଜଣାଯାଏ ଯେ, ଉତ୍କଳର କ୍ଷେତ୍ରମାହାତ୍ମ୍ୟ ବର୍ଣ୍ଣନା ପ୍ରସଙ୍ଗରେ ଗ୍ରନ୍ଥକାର ବିଷ୍ଣୁ, ସୂର୍ଯ୍ୟ, ପାର୍ବତୀ ଓ ହରଙ୍କର ମୁଖ୍ୟ ଉପାସନା ସ୍ଥଳୀ ବୋଲି କହିବା ସଙ୍ଗେ ସଙ୍ଗେ ସେହି କ୍ଷେତ୍ରମାନଙ୍କର ମାହାତ୍ମ୍ୟ ବର୍ଣ୍ଣନା କରିବାରେ ଶତମୁଖ ହୋଇଛନ୍ତି । ଗ୍ରନ୍ଥକାରଙ୍କ ଭାଷାରେ "କୃଷ୍ଣାର୍କ ପାର୍ବତୀ ହରାଃ"ର ଉପାସନା ସ୍ଥଳ ହେଉଛି ଉତ୍କଳ । ଏହି ଚାରି ଦେବତା ଯଥାକ୍ରମେ ନୀଳାଚଳ(ଶ୍ରୀକ୍ଷେତ୍ର)ରେ ସ୍ୱୟଂ ଶ୍ରୀକୃଷ୍ଣ ଜଗନ୍ନାଥ ରୂପରେ, ମୈତ୍ରେୟବନ କୋଣାର୍କରେ ସୂର୍ଯ୍ୟ, ବିରଜାକ୍ଷେତ୍ର ଯାଜପୁରରେ ପାର୍ବତୀ ଓ ଏକାମ୍ର କ୍ଷେତ୍ର ଭୁବନେଶ୍ୱରରେ ଶିବ(ହର)ଉପାସିତ ହେଉଛନ୍ତି । ଉକ୍ତ ଗ୍ରନ୍ଥରେ ଏକାମ୍ର କ୍ଷେତ୍ରର ବର୍ଣ୍ଣନା ବହୁଳ ଭାବରେ ରହିଥିଲେ ହେଁ ଶ୍ରୀକ୍ଷେତ୍ର ମାହାତ୍ମ୍ୟ ବର୍ଣ୍ଣନା ପ୍ରଥମରୁ ଆରମ୍ଭ କରାଯାଇଅଛି । ମହାମୁନି କପିଳଙ୍କ ମତରେ ସବୁଦେଶଠାରୁ ଉତ୍କଳ ଦେଶ(ଅଧୁନା ପ୍ରଦେଶ ନାମକରଣ) ଶ୍ରେଷ୍ଠ ଏବଂ ଉତ୍କଳ ସମଦେଶ ପୃଥିବୀରେ ନାହିଁ ।

''ବର୍ଷାଣାଂ ଭାରତଶ୍ରେଷ୍ଠୋ ଦେଶାନାମୁତ୍କଳଃ ସ୍ମୃତଃ
ଉତ୍କଳସ୍ୟ ସମୋ ଦେଶୋ ଦେଶୋନାସ୍ତି ମହୀତଳେ ।''

ମହାପ୍ରଭୁ ପୁରୁଷୋତ୍ତମ ହେଉଛନ୍ତି ଏହି ଦେଶର ରାଜା । ଏ ଦେଶ ଏକ ପବିତ୍ର ଭୂମି । ଏହାର ନଦ, ନଦୀ, ପର୍ବତ, ସମୁଦ୍ର, ଅରଣ୍ୟ ସବୁ ଦେବତାମାନଙ୍କର ସ୍ପର୍ଶରେ ମହିମାନ୍ୱିତ । ସୁତରାଂ ଏଭୂମି ହେଉଛି ଦେବଭୂମି । ଏହି ଭୂମିର ଅଧିବାସୀ କପିଳ ସଂହିତା ଗ୍ରନ୍ଥ ପାଠକଲେ ନିଜକୁ ଗୌରାବାନ୍ୱିତ ଓ ଧନ୍ୟ ମନେ କରିବା ସ୍ୱାଭାବିକ । ଏଭଳି ଏକ ମହିମାନ୍ୱିତ ଭୂମିରେ ଜନ୍ମଗ୍ରହଣ କରିବା ସୁକୃତ ପ୍ରାରବ୍ଧର ଫଳ ବୋଲି ମନେ କରିବା ସ୍ୱାଭାବିକ । ଜଳ, ସ୍ଥଳ, ଅନ୍ତରୀକ୍ଷ ସବୁ ଏ ଭୂମିରେ ପବିତ୍ର ଏବଂ ଈଶ୍ୱରଙ୍କ ସତ୍ତା ସହଜରେ ଉପଲବ୍ଧ କରିହୁଏ । ମାତୃଭୂମି ଉତ୍କଳକୁ ଭଲ ପାଇ ଗର୍ବ କରିବାର ଉପାଦାନ କପିଳ ସଂହିତାରେ ଯେଭଳି ବ୍ୟାଖ୍ୟା ହୋଇଅଛି, ଅନ୍ୟ କୌଣସି ଗ୍ରନ୍ଥରେ ଅଦ୍ୟାବଧି ଏଭଳି ପ୍ରଶଂସା ଓ ମାହାତ୍ମ୍ୟର ବର୍ଣ୍ଣନା ଦେଖିବାକୁ ମିଳିନଥାଏ । ଏଥିପାଇଁ ଗ୍ରନ୍ଥକାର ପ୍ରାତଃ ସ୍ମରଣୀୟ ଓ ନମସ୍ୟ ।

କପିଳ ସଂହିତାର ପ୍ରଥମ ଅଧ୍ୟାୟରେ ଭାରତବର୍ଷର ଉତ୍କର୍ଷତା ପ୍ରତିପାଦନ କରିବାକୁ ଯାଇ ବର୍ଷମାନଙ୍କ ମଧ୍ୟରେ ଭାରତବର୍ଷକୁ ଶ୍ରେଷ୍ଠ କହିଛନ୍ତି । (ନଦ, ନଦୀ, ବଣ, ପାହାଡ ଘେରା ବର୍ଷା ବାରିସିକ୍ତ ଭୂଖଣ୍ଡକୁ ବର୍ଷ କୁହାଯାଏ ।) (ଜମ୍ବୁ ଦ୍ୱୀପର ଅଧିପତି ମୁନିଋଷି ଦେବଙ୍କ ପୁତ୍ର ଭରତଙ୍କ ନାମାନୁସାରେ ଭାରତବର୍ଷର ନାମକରଣ ହୋଇଛି ।) ଏହି ଭାରତବର୍ଷରେ ଉତ୍କଳ ଦେଶଭଳି ଦେଶ ପୃଥିବୀରେ ନାହିଁ । ଅତଏବ ଏହି ଭୂମିର ମାହାତ୍ମ୍ୟ ଏପରି ଯେ, ସ୍ୱୟଂ ବିଷ୍ଣୁ ଏଠାରେ ଚିରଦିନ ବାସ କରିବା ପାଇଁ ଇଚ୍ଛା





ପ୍ରକାଶ କରିଛନ୍ତି ।

ଗ୍ରନ୍ଥର ଆରମ୍ଭରେ ସତ୍ୟଜିତ୍ ରାଜା କପିଳମୁନିଙ୍କୁ ଉତ୍କଳରେ ଥିବା କ୍ଷେତ୍ରଗୁଡିକ ସମ୍ପର୍କରେ ଜାଣିବାକୁ ଚାହିଁବାରୁ କପିଳମୁନି କହିଲେ-ଉତ୍କଳ ଦେଶର ଇତିହାସ ଓ ମାହାତ୍ମ୍ୟ ସମ୍ପର୍କରେ ବିଦ୍ୱାନ ଭରଦ୍ୱାଜ ମୁନିଙ୍କ ସହିତ ଋଷିମାନଙ୍କର କଥୋପକଥନ ସମ୍ବାଦ ମୁଁ ତୁମ ଆଗରେ ବର୍ଣ୍ଣନା କରୁଅଛି । ପ୍ରଥମେ ପୁଷ୍କର କ୍ଷେତ୍ରର ମାହାତ୍ମ୍ୟ ସମ୍ପର୍କରେ କହିବାକୁ ଯାଇ ଭରଦ୍ୱାଜ କହିଲେ ଏହି କ୍ଷେତ୍ରରେ ପାପୀମାନେ ସ୍ନାନ, ଦାନ, ପୂଜା ଓ ଦର୍ଶନ କରି ପାପମୁକ୍ତ ହୁଅନ୍ତି । ଏଠାରେ ମନୁଷ୍ୟମାନେ ଜନାର୍ଦ୍ଦନଙ୍କୁ ଅର୍ଚ୍ଚନା କରି ନିଜର ପାପକ୍ଷୟ କରାଇ ବିଷ୍ଣୁପଦ ପ୍ରାପ୍ତ ହୋଇଥାନ୍ତି । ଅନ୍ୟପକ୍ଷରେ ଏ କ୍ଷେତ୍ରରେ ଅଣୁମାତ୍ର ପାପକାର୍ଯ୍ୟ ସମସ୍ତ ପୁଣ୍ୟକୁ ଧ୍ୱଂସ କରି ଦେଇଥାଏ । ଭରଦ୍ୱାଜଙ୍କ ମୁଖରୁ ଏକଥା ଶୁଣି ଋଷିମାନେ ପଚାରିଲେ ଏଭଳି ଏକ କ୍ଷେତ୍ର ମାହାତ୍ମ୍ୟ କୁହନ୍ତୁ ଯେଉଁଠାରେ ପାପ ଓ ପୁଣ୍ୟର ସମାନ ଫଳ ରହିଅଛି । ଏକଥା ଶୁଣି ଭରଦ୍ୱାଜ କହିଲେ ଯେ, ମୁଁ ପୂର୍ବେ ଏହି ବିଷୟରେ ବ୍ରହ୍ମାଙ୍କୁ ପଚାରିଥିଲି ଏବଂ ସେ ଯେଉଁ ଉପଦେଶ ପ୍ରଦାନ କରିଥିଲେ, ତାହା ମୁଁ ତୁମ୍ଭ ଆଗରେ କହୁଅଛି-

ଦେଶାନାଂ ପ୍ରବରୋ ହ୍ୟେକ ଓଡ୍ର ଦେଶୋଦ୍ଧତିବିଶ୍ରୁତଃ
ପୁଣ୍ୟାୟନ୍ତେ ଚ ପାପାନି ତତ୍ର ଦୋଷଦୃଷପ୍ରଦେ ।୩୦ ।
ପୁଣ୍ୟକ୍ଷେତ୍ରାଣି ତୀର୍ଥାନି ତତ୍ର ସନ୍ତି ମହର୍ଷୟଃ
ଅଳ୍ପପୁଣ୍ୟଂ ବହୁତରଂ ଭବେତ୍ତତ୍ର ନ ସଂଶୟଃ ।୩୧ ।

ଅର୍ଥାତ୍ ସକଳ ଦେଶ ମଧ୍ୟରେ ଉତ୍ରଦେଶ ଅତ୍ୟନ୍ତ ବିଖ୍ୟାତ ଅଟେ । ଏହି ସତ୍‌କର୍ମ ଦେଶରେ ପାପମାନ ପୁଣ୍ୟରେ ପରିଣତ ହୁଏ । ଏଠାରେ ଅଳ୍ପମାତ୍ର ପୁଣ୍ୟ ବହୁଗୁଣିତ ହୋଇଥାଏ । ଦ୍ୱିତୀୟ ଅଧ୍ୟାୟରେ ଗଙ୍ଗାଙ୍କ ଆବିର୍ଭାବ ଓ ମହାନଦୀର ଉତ୍ପତ୍ତି ମାହାତ୍ମ୍ୟ ବର୍ଣ୍ଣନା କଲାପରେ ତୃତୀୟ ଅଧ୍ୟାୟରୁ ନୀଳାଚଳ କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା କରାଯାଇଛି । କପିଳ ସଂହିତା ଗ୍ରନ୍ଥର ତୃତୀୟ, ଚତୁର୍ଥ ଓ ପଞ୍ଚମ ଅଧ୍ୟାୟରେ ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ସହିତ ଚତୁର୍ଦ୍ଧାମୂର୍ତ୍ତି ପ୍ରତିଷ୍ଠା, ଇନ୍ଦ୍ରଦ୍ୟୁମ୍ନ ପ୍ରସଙ୍ଗ, ମୋକ୍ଷପ୍ରାପ୍ତି ଓ ନୀଳାଚଳ କ୍ଷେତ୍ରର ଅନ୍ୟାନ୍ୟ ତୀର୍ଥ ମାହାତ୍ମ୍ୟ ବର୍ଣ୍ଣନା କରାଯାଇଅଛି । ଷଷ୍ଠ ଅଧ୍ୟାୟରେ ଅର୍କ କ୍ଷେତ୍ର ପ୍ରସଙ୍ଗ, ସପ୍ତମ ଓ ଅଷ୍ଟମ ଅଧ୍ୟାୟରେ ବିରଜା କ୍ଷେତ୍ର ମାହାତ୍ମ୍ୟ, ନବମ ଅଧ୍ୟାୟରେ କପିଳାସ ପର୍ବତର ଶିଖରେଶ୍ୱରଙ୍କ ବର୍ଣ୍ଣନା କରାଯାଇଛି । ଦଶମ ଅଧ୍ୟାୟଠାରୁ ବିଂଶ ଅଧ୍ୟାୟ ପର୍ଯ୍ୟନ୍ତ ଏକାମ୍ରବନ ବର୍ଣ୍ଣନାରୁ ଆରମ୍ଭ ହୋଇ ଏହି କ୍ଷେତ୍ର, କ୍ଷେତ୍ରାଧିପତି, ଅନ୍ୟାନ୍ୟ ଦେବଦେବୀଙ୍କ ମାହାତ୍ମ୍ୟ ସହିତ ବିନ୍ଦୁସରୋବର ଉତ୍ପତ୍ତି ଓ ମାହାତ୍ମ୍ୟ ଇତ୍ୟାଦି ବର୍ଣ୍ଣନା କରାଯାଇଛି । ଶେଷରେ ଏକବିଂଶ ଅଧ୍ୟାୟରେ ଜ୍ଞାନଯୋଗ ସହିତ ବୈଷ୍ଣବ ଓ ଶୈବଧର୍ମର ଅଭେଦତ୍ୱ ପ୍ରକ୍ଷାପନ କରାଯାଇ ଗ୍ରନ୍ଥର ପରିସମାପ୍ତି ଘୋଷଣା କରାଯାଇଛି ।

ନୀଳାଚଳ କ୍ଷେତ୍ର ମାହାତ୍ମ୍ୟ ସହିତ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ଓ ପ୍ରତିଷ୍ଠା ସମ୍ପର୍କରେ ଯେଉଁସବୁ ଜନଶ୍ରୁତି ସମାଜରେ ପ୍ରଚଳିତ ହୋଇଆସିଛି, ସେ ସମସ୍ତ ବିଷୟବସ୍ତୁର ପୃଷ୍ଠଭୂମି ଯେ କପିଳ ସଂହିତା ଗ୍ରନ୍ଥ, ଏହା ଯେକୌଣସି ପାଠକ ଉପଲବ୍ଧି କରିପାରିବ । ଏହି ଗ୍ରନ୍ଥର ତୃତୀୟ ଅଧ୍ୟାୟର ଆରମ୍ଭରେ ଋଷିମାନେ ଭରଦ୍ୱାଜ ମୁନିଙ୍କୁ ପ୍ରଶ୍ନ କରିଛନ୍ତି ଯେ, ଉଡ୍ର ଦେଶର ଶ୍ରୀକୃଷ୍ଣ, ସୂର୍ଯ୍ୟଦେବ, ପାର୍ବତୀ ଓ ହରଙ୍କର ଅବସ୍ଥାନ କ୍ଷେତ୍ର ସମ୍ପର୍କରେ ବିସ୍ତୃତ ବର୍ଣ୍ଣନା ପ୍ରଦାନ କରନ୍ତୁ । ଏହାଶୁଣି ଭରଦ୍ୱାଜ ମୁନି ପ୍ରଥମେ ଶ୍ରୀକୃଷ୍ଣଙ୍କ କ୍ଷେତ୍ର ନୀଳାଚଳ ସମ୍ପର୍କରେ ବର୍ଣ୍ଣନା କରିଛନ୍ତି । ଦାରୁରୂପୀ ଶ୍ରୀକୃଷ୍ଣଙ୍କର ଏହି କ୍ଷେତ୍ର ଅତ୍ୟନ୍ତ ପବିତ୍ର ଅଟେ । ଗ୍ରନ୍ଥକାର ଦ୍ୱାପର ଯୁଗର ଶ୍ରୀକୃଷ୍ଣ କଳିଯୁଗରେ ଦାରୁରୂପରେ ଏହି କ୍ଷେତ୍ରରେ ଆବିର୍ଭୂତ ହୋଇଥିବା କଥା କହିଛନ୍ତି । କ୍ଷେତ୍ରର ଆୟତନ ସମ୍ପର୍କରେ କହିବାକୁ ଯାଇ ଏହାର ଆୟତନ ଦଶ ଯୋଜନ ଏବଂ ଉଚ୍ଚତା ଅର୍ଦ୍ଧଯୋଜନ ପର୍ଯ୍ୟନ୍ତ ବିସ୍ତାରିତ ବୋଲି କହିଛନ୍ତି । ଏହି କ୍ଷେତ୍ର ନାନା ପ୍ରକାର ଫଳ ଫୁଲରେ ପରିପୂର୍ଣ୍ଣ ଏବଂ ଏହା ସାକ୍ଷାତ ବୈକୁଣ୍ଠ ସ୍ୱରୂପ ଅଟେ । ଏ ସମ୍ପର୍କରେ ଭରଦ୍ୱାଜ ମୁଖରେ କପିଳମୁନି କହୁଛନ୍ତି-

ନୀଳାଚଳଂ ମହାପୁଣ୍ୟଂ ନୀରଦାଭ ପ୍ରିୟଂ ମହତ୍
ଦଶଯୋଜନ ବିସ୍ତୀର୍ଣ୍ଣ ମୁଚ୍ଛ୍ରିତଂ ଯୋଜନାର୍ଦ୍ଧକମ ।୪ ।
(୩ୟ ଅଧ୍ୟାୟ)

ଏ କ୍ଷେତ୍ରରେ ଦେହତ୍ୟାଗ କଲେ ମନୁଷ୍ୟ ବୈକୁଣ୍ଠ ପ୍ରାପ୍ତ ହୋଇଥାଏ ।

ସାକ୍ଷାତ୍ ବୈକୁଣ୍ଠ ରୂପଂ ତତ୍‌କ୍ଷେତ୍ରଂ ଶ୍ରୀପୁରୁଷୋତ୍ତମମ୍
କ୍ଷେତ୍ରାଣାମପି କ୍ଷେତ୍ରଂ ଚ ତୀର୍ଥାନା ମପି ଯଦ୍ ବରମ୍ ।୬ ।
(୩ୟ ଅଧ୍ୟାୟ)

ଏହି କ୍ଷେତ୍ରରେ ବ୍ରହ୍ମା ପ୍ରଭୃତି ଦେବତା ବାସ କରିବା ସହିତ ମହୋଦଧି ତୀର୍ଥରେ ସ୍ନାନ ପୂର୍ବକ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଥାନ୍ତି । ପୂର୍ବରୁ ନୀଳପ୍ରସ୍ତର ରୂପ ଧାରଣ କରିଥିବା ଶ୍ରୀଜଗନ୍ନାଥ ନୀଳାଚଳ କ୍ଷେତ୍ରରେ ଦାରୁ ସ୍ୱରୂପରେ ବିରାଜମାନ କରିଛନ୍ତି । ଏହାପରେ ଦେବଦେବୀ ଶ୍ରୀଜଗନ୍ନାଥଙ୍କ ନୀଳପ୍ରସ୍ତର ରୂପ ଦାରୁରୂପରେ ରୂପାନ୍ତରିତ ହେବା କଥା ଭରଦ୍ୱାଜ ଋଷିମାନଙ୍କ ସମ୍ମୁଖରେ ବର୍ଣ୍ଣନା କରିବାକୁ ଯାଇ ସତ୍ୟଯୁଗରେ ବ୍ରହ୍ମାଙ୍କର ପଞ୍ଚମ ଶରୀରରୁ ଇନ୍ଦ୍ରଦ୍ୟୁମ୍ନଙ୍କ ଆବିର୍ଭାବ ପ୍ରସଙ୍ଗ ଉପସ୍ଥାପନ କରିଛନ୍ତି । ତେଜୋଦୀପ୍ତ,



ଧର୍ମପରାୟଣ, ସଂଯମୀ, ସତ୍ୟସମ୍ପନ୍ନ, କ୍ରୋଧଜୟୀ, ପରୋପକାରୀ ବିଷ୍ଣୁଭକ୍ତ ରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁଙ୍କ ଦର୍ଶନ କରିବା ଲାଗି ଚିନ୍ତା କଲେ । ରାଜାଙ୍କର ବିଷ୍ଣୁ ଦର୍ଶନ ଭାବନା ସାକାର କରିବା ପାଇଁ ଭଗବାନ ସ୍ୱପ୍ନରେ ଯାହା କହିଥିଲେ, ତାହା ହେଉଛି ଶ୍ରୀକ୍ଷେତ୍ରଧାମର ପ୍ରଶସ୍ତି ଓ ମାହାତ୍ମ୍ୟ ।

ଲବଣ ସମୁଦ୍ର ତୀରରେ ବାଲୁକାଚ୍ଛନ୍ନ ଓ ଜଗତର ମୁକ୍ତିପ୍ରଦ ମୋର ନୀଳାଚଳ କ୍ଷେତ୍ର ଅବସ୍ଥିତ । ଯେଉଁ ସ୍ଥାନକି ପରମ ରହସ୍ୟମୟ ଓ ବ୍ରହ୍ମାଦି ଦେବଗଣଙ୍କ ପକ୍ଷରେ ଅତ୍ୟନ୍ତ ଦୁର୍ଲଭ । ସାଂସାରିକ ଆସକ୍ତି ତ୍ୟାଗ କରିଥିବା ଯୋଗୀମାନେ ମଧ୍ୟ ସେ ସ୍ଥାନ ସମ୍ବନ୍ଧରେ କିଛି ଜାଣନ୍ତି ନାହିଁ । ଏହି ପରମ ଗୋପନୀୟ ଓ ପୁଣ୍ୟପ୍ରଦ ପୁରୁଷୋତ୍ତମ କ୍ଷେତ୍ର ଅତ୍ୟନ୍ତ ପୂଜନୀୟ ଅଟେ । ପ୍ରଳୟକାଳରେ ସ୍ଥାବର ଓ ଜଙ୍ଗମାଦି ପ୍ରାଣୀବର୍ଗ ଯେତେବେଳେ ବିନାଶପ୍ରାପ୍ତ ହୁଅନ୍ତି, ସମଗ୍ର ବିଶ୍ୱ ଯେତେବେଳେ କାରୁଣ୍ୟ ଜଳଦ୍ୱାରା ପ୍ଲାବିତ ହୁଏ ବୈକୁଣ୍ଠପୁର ଓ କ୍ଷୀରସାଗର ଆଦି ଉତ୍ତମ ସ୍ଥାନ ତ୍ୟାଗ କରି ମୁଁ ପୁରୁଷୋତ୍ତମ କ୍ଷେତ୍ରର ବଟପୁଟରେ ଅବସ୍ଥାନ କରିଥାଏ । ଏଣୁ ତୁମେ ସେଠାକୁ ଗମନ କରି ତପସ୍ୟା କଲେ ଇନ୍ଦ୍ର ନୀଳମଣି ସଦୃଶ ମୋର ସ୍ୱରୂପ ଦର୍ଶନ ଲାଭ କରିବ । ଏହି କ୍ଷେତ୍ରର ଏକ ପାର୍ଶ୍ୱରେ ରୋହିଣୀ ନାମକ ଏକ ତୀର୍ଥ ରହିଅଛି । ଯେଉଁ ତୀର୍ଥରେ ସ୍ନାନକଲେ ମନୁଷ୍ୟ ବିଷ୍ଣୁ ସାଲୋକ୍ୟ ଲାଭ କରିଥାଏ । ଭଗବାନଙ୍କ ସ୍ୱପ୍ନବାଣୀ ଶ୍ରବଣ ପରେ ଇନ୍ଦ୍ରଦ୍ୟୁମ୍ନଙ୍କ ନିଦ୍ରା ଭଙ୍ଗ ହେଲା । ନୀଳସୁନ୍ଦର ମୂର୍ତ୍ତି ଦର୍ଶନ କରିନପାରି ଦୁଃଖ ପ୍ରକାଶ ପୂର୍ବକ କୃଷ୍ଣକୃଷ୍ଣ କହି ରୋଦନ କଲେ । ନୀଳସୁନ୍ଦର ମୂର୍ତ୍ତି ଅଦର୍ଶନ ପାଇଁ ନିଜର ପ୍ରାରବ୍ଧ କର୍ମକୁ ଦାୟୀକରି ନିଜେ ବିଳାପ କରି କହିଛନ୍ତି - ଯେ ତାଙ୍କର କେଉଁ ପାପକର୍ମ ପାଇଁ ନବଘନ ଶ୍ରୀକୃଷ୍ଣ ଅନ୍ତର୍ଦ୍ଧାନ ହୋଇଗଲେ ? ଏହାର ସମ୍ଭାବ୍ୟ ସମ୍ପର୍କରେ ପୂର୍ବଜନ୍ମରେ ଜଳ ପାନ କରବାକୁ ଆସିଥିବା ଗୋମାତାକୁ ବାରଣ କରିବା, ଆମ୍ବ, ଲିମ୍ବ, କଦମ୍ବ, ପ୍ରଭୃତି ବୃକ୍ଷ ଛେଦନ କରିବା, ବୈଶ୍ୱଦେବ ବେଳାରେ ଅତିଥିଙ୍କୁ ଭୋଜନ ନଦେବା, ସହସ୍ର ସଂଖ୍ୟକ ବ୍ରାହ୍ମଣ ବଧ କରିବା, ଗୋହତ୍ୟା ପାପରେ ପୀଡିତ ହେବା, ପ୍ରଜାମାନଙ୍କୁ ରକ୍ଷା କରିବାରେ ଅସମର୍ଥ ହେବା, କୂପ ଜଳାଶୟକୁ ଟେକା, ତୃଣ ଓ କାଷ୍ଠଖଣ୍ଡ ନିକ୍ଷେପ କରିଥିବା ପାପକର୍ମ ଯୋଗୁଁ ପରମାତ୍ମା ପରମେଶ୍ୱର ଜଗନ୍ନାଥ ସ୍ୱପ୍ନରେ ଆସି ଅନ୍ତର୍ଦ୍ଧାନ ହୋଇଗଲେ ?

ରାଜାଙ୍କର ଏହି ବିଳାପ ଶ୍ରବଣ କରି ମନ୍ତ୍ରୀ ଓ ପୁରୋହିତଗଣ ସାନ୍ତ୍ୱନା ପ୍ରଦାନ କଲେ ଏବଂ ନୀଳାଚଳ ଯାତ୍ରାର ଆୟୋଜନ କରିବାକୁ ଲାଗିଲେ । ଏହିଠାରେ ଭରଦ୍ୱାଜ ମୁନି ଶ୍ରୀକ୍ଷେତ୍ରରୁ ନୀଳମାଧବଙ୍କ ଅନ୍ତର୍ଦ୍ଧାନ ସମ୍ପର୍କରେ କହିବାକୁ ଯାଇ ଯମରାଜ ବିଷ୍ଣୁଙ୍କୁ ପ୍ରାର୍ଥନା କରି ସେ ସ୍ଥାନରୁ ଅନ୍ତର୍ଦ୍ଧାନ ହୋଇଯାଆନ୍ତୁ ବୋଲି କହିଛନ୍ତି । କାରଣ ରାଜା ଇନ୍ଦ୍ରଦ୍ୟୁମ୍ନ ନିଜର ସୈନ୍ୟବଳ, ପରିବାର, ମନ୍ତ୍ରୀ, ପୁରୋହିତଙ୍କ ସହିତ ନୀଳାଚଳରେ ପହଞ୍ଚି ନୀଳସୁନ୍ଦର ମୂର୍ତ୍ତି ଦର୍ଶନ କରି ରୋହିଣୀ କୁଣ୍ଡରେ ସ୍ନାନ କଲେ ପରମପଦ ଲାଭ କରିବେ ଏବଂ ଯମଙ୍କର କର୍ତ୍ତୃତ୍ୱ ଏ ସ୍ଥାନରେ ରହିବ ନାହିଁ । ଯମରାଜଙ୍କର ଅନୁରୋଧ ରକ୍ଷାକରି ଇନ୍ଦ୍ରଦ୍ୟୁମ୍ନ ସସୈନ୍ୟେ ଉକ୍ତ କ୍ଷେତ୍ରରେ ପହଞ୍ଚିବା ପୂର୍ବରୁ ଶ୍ରୀ ନୀଳସୁନ୍ଦର ମୂର୍ତ୍ତି ଅନ୍ତର୍ଦ୍ଧାନ ହୋଇଯିବା ସଙ୍ଗେ ସଙ୍ଗେ ରୋହିଣୀ ପାତାଳଗାମୀ ହୋଇଗଲେ ।

ଚତୁର୍ଥ ଅଧ୍ୟାୟରେ ଦେବର୍ଷି ନାରଦ ଓ ସୈନ୍ୟସାମନ୍ତଙ୍କ ସହ ଇନ୍ଦ୍ରଦ୍ୟୁମ୍ନଙ୍କ ନୀଳାଚଳକୁ ଗମନ କରିବା ମାର୍ଗରେ ଏକାମ୍ରବନ ସ୍ଥିତ ଶିବ(ଲିଙ୍ଗରାଜ)ଙ୍କୁ ଦର୍ଶନ, ଆରାଧନା କରି ନୀଳଗିରି ଅଭିମୁଖେ ଅଗ୍ରସର ହେଲେ । ଯିବା ବାଟରେ ରାଜାଙ୍କ ଶରୀରରେ ଶୁଭ ଓ ଅଶୁଭ ଫଳମିଶ୍ରିତ କେତେକ ଶକୁନ ଦେଖି ନାରଦଙ୍କୁ ଏହାର କାରଣ ପଚାରିବାରୁ ଦେବର୍ଷି ନାରଦ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଇନ୍ଦ୍ରନୀଳମଣି ବିଗ୍ରହ ଅନ୍ତର୍ଦ୍ଧାନ ଓ ରୋହିଣୀ ପାତାଳଗାମୀ ହେବା କଥା କହିଛନ୍ତି । ଏକଥା ଶୁଣିବା ମାତ୍ରେ ଇନ୍ଦ୍ରଦ୍ୟୁମ୍ନ ମୂର୍ଚ୍ଛିତ ହୋଇଗଲେ । ଦେବର୍ଷି ନାରଦ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଆଶ୍ୱାସନା ପ୍ରଦାନ କରି ଭଗବାନ ବିଷ୍ଣୁ ଦାରୁ ବିଗ୍ରହରେ ପ୍ରକାଶିତ ହେବା କଥା କହିଲେ । ଏକଥା ଶୁଣିଲା ପରେ ସମୁଦ୍ରରେ ଶଙ୍ଖ, ଚକ୍ରାଙ୍କିତ ଦାରୁ ଭାସୁଥିବା ସମ୍ବାଦ ପାଇଲେ । ଦେବର୍ଷି ନାରଦଙ୍କ ସହିତ ସମୁଦ୍ରକୂଳରେ ଭାସମାନ ସେହି ପବିତ୍ର ଦାରୁଙ୍କୁ ଦର୍ଶନ କରି ସାଷ୍ଟାଙ୍ଗ ପ୍ରଣାମ ଜଣାଇଲେ । ସୈନ୍ୟସାମନ୍ତ, ପୁରୋହିତଙ୍କ ସାହାଯ୍ୟରେ କୂଳକୁ ଆଣିଲେ । ଏହାପରେ ସ୍ୱୟଂ ବିଶ୍ୱକର୍ମା ବୃଦ୍ଧ ବଢେଇ ବେଶରେ ଆସି ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କ ଅପୂର୍ବ ମୂର୍ତ୍ତି ନିର୍ମାଣ କଲେ । ଏହି ବିଗ୍ରହ ମଧ୍ୟରେ ଶ୍ରୀଜଗନ୍ନାଥ ଶଙ୍ଖଚକ୍ର ଧାରଣ ପୂର୍ବକ ପୀତବସନ ଓ ବନମାଳାରେ ଶୋଭିତ ହୋଇଥିଲେ । ବଳଭଦ୍ର ହଳ ଓ ଗଦା ଧାରଣ କରିଥିଲେ ଏବଂ ତାଙ୍କ ମସ୍ତକରେ ଭୟଙ୍କର ସର୍ପଫଣା ବିରାଜମାନ କରିଥିଲା । ଦେବୀ ସୁଭଦ୍ରା ହସ୍ତରେ ପଦ୍ମଧାରଣ କରିଥିଲେ ଓ ସୁଦର୍ଶନ ସ୍ତମ୍ଭରୂପରେ ବିରାଜମାନ କରିଥିଲେ । ମୂର୍ତ୍ତି ନିର୍ମାଣ ପରେ ପ୍ରତିଷ୍ଠା କରିବାକୁ ରାଜା ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କୁ ନିମନ୍ତ୍ରଣ କରିବାକୁ ବ୍ରହ୍ମଲୋକକୁ ଗମନ କଲେ । ବ୍ରହ୍ମଲୋକରେ ପହଞ୍ଚି ବ୍ରହ୍ମାଙ୍କୁ ପ୍ରାର୍ଥନା କରନ୍ତେ ବ୍ରହ୍ମା କହିଲେ-

ସାଧୁ ପୁତ୍ର ମହାବାହୋ ବୈଷ୍ଣବ ସ୍ତ୍ୱଦୃଶୋଭୂଷି
ନାତୀତୋ ବର୍ତ୍ତମାନଶ୍ଚ ନ ଭବିଷ୍ୟତି ମେ ମତି ।୧୯ ।
(ଚତୁର୍ଥ ଅଧ୍ୟାୟ)

ଅର୍ଥାତ୍, ହେ ଇନ୍ଦ୍ରଦ୍ୟୁମ୍ନ ! ତୁମଭଳି ପରମ ବୈଷ୍ଣବ ପୃଥିବୀରେ ଅତୀତରେ ନଥିଲେ, ବର୍ତ୍ତମାନ କେହି ନାହାଁନ୍ତି କିମ୍ବା ଭବିଷ୍ୟତରେ ମଧ୍ୟ କେହି ଜନ୍ମ ହେବେନାହିଁ । ତୁମ ଅନୁରୋଧ ରକ୍ଷାକରି ମୁଁ ମର୍ତ୍ତ୍ୟ ଲୋକକୁ ଯାଇ ଚକ୍ରଧାରୀ ଚତୁର୍ଦ୍ଧା ମୂର୍ତ୍ତି ବିଷ୍ଣୁଙ୍କୁ ପ୍ରତିଷ୍ଠା କରିବି । ପ୍ରତିଶ୍ରୁତି ପାଇଲା ପରେ ଇନ୍ଦ୍ରଦ୍ୟୁମ୍ନ ମର୍ତ୍ତ୍ୟ ଲୋକକୁ ପ୍ରତ୍ୟାବର୍ତ୍ତନ କଲେ । ମର୍ତ୍ତ୍ୟ ଲୋକରେ ପହଞ୍ଚି ଦେଖିଲେ ଯେ ଗାଲବ ନାମଧାରୀ ଜଣେ ରାଜା ଚତୁର୍ଦ୍ଧାମୂର୍ତ୍ତିଙ୍କୁ ନିଜ ଅକ୍ତିଆରକୁ ନେଇ ଯାଇଛନ୍ତି । ଇନ୍ଦ୍ରଦ୍ୟୁମ୍ନ ତାଙ୍କ ସହିତ ଯୁଦ୍ଧକରି ଚତୁର୍ଦ୍ଧା ମୂର୍ତ୍ତିଙ୍କୁ ଉଦ୍ଧାର କଲେ । ପରେ ପରେ ପ୍ରଜାପତି ବ୍ରହ୍ମା ଆସି ବିଗ୍ରହମାନଙ୍କୁ ପ୍ରତିଷ୍ଠା କଲେ । ବିଗ୍ରହ ପ୍ରତିଷ୍ଠା ପରେ ସ୍ୱୟଂ ଶଙ୍ଖଚକ୍ରଧାରୀ ବିଷ୍ଣୁ ଇନ୍ଦ୍ରଦ୍ୟୁମ୍ନଙ୍କୁ କହିଲେ ଯେ, ସେ ସକଳ ପୁଣ୍ୟ ଓ ତୀର୍ଥ କ୍ଷେତ୍ର ପରିତ୍ୟାଗ କରି ଏହି କ୍ଷେତ୍ରରେ ପରାର୍ଦ୍ଧ ପର୍ଯ୍ୟନ୍ତ ଅବସ୍ଥାନ କରିବେ ।

ପୁଣ୍ୟ କ୍ଷେତ୍ରାଣି ତୀର୍ଥାନି ପରିତ୍ୟଜ୍ୟ ମହୀପତେ
ଅତ୍ରବୈ ସର୍ବଭାବେନ ସ୍ଥାସ୍ୟେଽହଂବୈ ପରାର୍ଦ୍ଧକମ ।୨୫ ।
(୪ର୍ଥ ଅଧ୍ୟାୟ)

ଏଣୁ ଏହି କ୍ଷେତ୍ରରେ ଜ୍ୟେଷ୍ଠ ମାସରେ ସ୍ନାନଯାତ୍ରା ଓ ଆଷାଢ଼ ମାସରେ ଗୁଣ୍ଡିଚା ଯାତ୍ରା ଅନୁଷ୍ଠାନ କରାଇବ । ଏହି ଯାତ୍ରାକୁ ଯେଉଁ ମନୁଷ୍ୟ ଦର୍ଶନ କରିବେ, ସେମାନେ ପରମ ମୁକ୍ତି ଲାଭ କରିବେ ।

କପିଳ ସଂହିତାର ପଞ୍ଚମ ଅଧ୍ୟାୟରେ ଭରଦ୍ୱାଜ ମୁନିଙ୍କ ମୁଖରେ ଶ୍ରୀକ୍ଷେତ୍ରର ପ୍ରଶସ୍ତି ଓ ମାହାତ୍ମ୍ୟ ବର୍ଣ୍ଣନା କରାଯାଇଅଛି । ଆରମ୍ଭରେ ଭରଦ୍ୱାଜ ମୁନି କହୁଛନ୍ତି ଯେ, ମନୁଷ୍ୟମାନେ ଏହି ପୁଣ୍ୟ କ୍ଷେତ୍ରରେ ବାସକଲେ ନିଜ ତେଜରେ ପ୍ରକାଶିତ ହୋଇ ବିଷ୍ଣୁଙ୍କ ସାନିଧ୍ୟ ପ୍ରାପ୍ତ ହୁଅନ୍ତି । ମହୋଦଧିରେ ସ୍ନାନ ସହ ଶ୍ରୀପୁରୁଷୋତ୍ତମଙ୍କୁ ଯେଉଁ ମନୁଷ୍ୟ ଦର୍ଶନ କରେ, ସେ ବ୍ରହ୍ମହତ୍ୟା ପାପରୁ ମୁକ୍ତ ହୋଇ ମୋକ୍ଷଲାଭ କରିଥାଏ । ଗଙ୍ଗା, ସରସ୍ୱତୀ ଓ ଗୋଦାବରୀ ଆଦି ପୁଣ୍ୟ ସଲ୍ଲିଳା ନଦୀ ଦର୍ଶନରେ ଯେଉଁ ଫଳ ପ୍ରାପ୍ତି ହୋଇଥାଏ ଲବଣ ସମୁଦ୍ର ଦର୍ଶନରେ ସେହି ଫଳ ମିଳିଥାଏ । ଏହି କ୍ଷେତ୍ରରେ ଥିବା ମାର୍କଣ୍ଡେୟ ପୁଷ୍କରିଣୀ ତ୍ରିଲୋକ ମଧ୍ୟରେ ପବିତ୍ର ଅଟେ । ଏହି ପୁଷ୍କରିଣୀକୁ ଭଗବାନ ଶ୍ରୀକୃଷ୍ଣ ନିର୍ମାଣ କରିଥିଲେ । ମନୁଷ୍ୟ ଏଥିରେ ସ୍ନାନ କରି ମାର୍କଣ୍ଡେୟଙ୍କୁ ଦର୍ଶନ କଲେ କୋଟି ଜନ୍ମର ପାପରୁ ମୁକ୍ତି ମିଳିଥାଏ । ଏହାପରେ ନୀଳାଚଳ କ୍ଷେତ୍ରର ଦକ୍ଷିଣ ଦିଗରେ ଯମେଶ୍ୱର ମହାଦେବଙ୍କୁ ଦର୍ଶନ କଲେ ଯମଦଣ୍ଡରୁ ମୁକ୍ତି ମିଳେ । ପଶ୍ଚିମ ଦିଗରେ ଅଲାବୁକେଶ୍ୱର ଶିବ ବିରାଜମାନ କରିଅଛନ୍ତି । ତାଙ୍କୁ ଦର୍ଶନ କଲେ ଅପୁତ୍ରିକ ପୁତ୍ରବାନ ଓ ବିକଳାଙ୍ଗ କନ୍ଦର୍ପ ରୂପ ପ୍ରାପ୍ତ ହୋଇଥାଏ । ଶ୍ୱେତଗଙ୍ଗା ତୀର୍ଥ ଏହି କ୍ଷେତ୍ରରେ ବିଦ୍ୟମାନ । ଭଗବାନ ଶ୍ୱେତମାଧବ ରୂପରେ ଏଠାରେ ବାସ କରନ୍ତି । ସେଠାରେ ମତ୍ସ୍ୟ ମାଧବ ମଧ୍ୟ ରହିଛନ୍ତି । ଶ୍ୱେତଗଙ୍ଗାରେ ସ୍ନାନ କରି ଶ୍ୱେତମାଧବ ଓ ମତ୍ସ୍ୟମାଧବଙ୍କୁ ଦର୍ଶନ କଲେ ମନୁଷ୍ୟ ସମସ୍ତ ପାପରୁ ମୁକ୍ତି ଲାଭ କରି ଶ୍ୱେତଦ୍ୱୀପ ଗମନ କରିଥାଏ । ପୁଣି ଏହି କ୍ଷେତ୍ରରେ ଇନ୍ଦ୍ରଦ୍ୟୁମ୍ନ ସରୋବର ବିଦ୍ୟମାନ । ଏହି ପୁଷ୍କରିଣୀରେ ମନୁଷ୍ୟ ସ୍ନାନକଲେ ଇନ୍ଦ୍ରଙ୍କ ସହିତ ଆମୋଦପ୍ରମୋଦରେ କାଳଯାପନ କରେ । ସେଠାରେ ଥିବା ନରସିଂହ, ଶଙ୍କର ଓ ନୀଳକଣ୍ଠଙ୍କୁ ଦର୍ଶନ କଲେ ମନୁଷ୍ୟ ଜ୍ୟୋତିର୍ଲୋକ ଗମନ କରେ । ଯେଉଁ ମନୁଷ୍ୟ ହରି ଓ ଶଙ୍କର ମଧ୍ୟରେ ପିଣ୍ଡଦାନ କରେ, ତାହାର ପିତୃପୁରୁଷ ସୂର୍ଯ୍ୟଲୋକରେ ବାସ କରନ୍ତି । ଏହି ଦାରୁବ୍ରହ୍ମ କ୍ଷେତ୍ରରେ ଥିବା କଳ୍ପବଟ ବୃକ୍ଷର ଛାୟାରେ ପ୍ରବେଶ କରେ ମନୁଷ୍ୟ ବ୍ରହ୍ମହତ୍ୟା ପାପରୁ ମୁକ୍ତ ହୋଇଥାଏ । ଆହୁରି ମଧ୍ୟ ଏହି ବଟ ପ୍ରଦକ୍ଷିଣ କଲେ ଶତଜନ୍ମର ପାପ ଦୂରୀଭୂତ ହୁଏ । ବଟବୃକ୍ଷ ମୂଳରେ ବାସ କରୁଥିବା ମଙ୍ଗଳା ମଙ୍ଗଳଦାୟିନୀ । ଏହାଙ୍କ ଆରାଧନା ଓ ଦର୍ଶନ ମନୁଷ୍ୟକୁ ମୋହମୁକ୍ତ କରିଥାଏ । କଳ୍ପବଟର ପଶ୍ଚିମ ଭାଗରେ ବିମଳା ବିରାଜମାନ କରିଛନ୍ତି । ତାଙ୍କୁ ଦର୍ଶନ କଲେ ମନୁଷ୍ୟ ବିଦ୍ୱାନ ହୋଇଥାଏ । ତାଙ୍କ ସମ୍ମୁଖ ଭାଗରେ କାକତୀର୍ଥ ବିରାଜମାନ । ଏହାର ପ୍ରଭା କୋଟିଏ ସୂର୍ଯ୍ୟ ତୁଲ୍ୟ । ଏହି ତୀର୍ଥର ପାର୍ଶ୍ୱରେ ନୃସିଂହ ବିରାଜିତ । ନୃସିଂହଙ୍କ ସମ୍ମୁଖରେ ବାସୁଦେବ ଶେଷନାଗ ଉପରେ ଶୟନ କରିଛନ୍ତି । ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରି ବନମାଳାରେ ସୁଶୋଭିତ ବାସୁଦେବ କ୍ଷୀରସାଗର ମଧ୍ୟରେ ଶୟନ କରିଛନ୍ତି । ନାଭିପଦ୍ମରୁ ବ୍ରହ୍ମାଙ୍କ ଆବିର୍ଭାବ ହୋଇଛି । ପୁରୁଷୋତ୍ତମ ନାମକ ଦେବେଶ୍ୱର ନାରାୟଣ ଅନନ୍ତ ଉପରେ ଶୟନ କରିଛନ୍ତି । ଏଥିପାଇଁ ଏହି କ୍ଷେତ୍ରର ନାମ ପୁରୁଷୋତ୍ତମ କ୍ଷେତ୍ର । ଏଠାରେ ଶ୍ରୀଜଗନ୍ନାଥଙ୍କ ନିର୍ମାଲ୍ୟ ପାପନାଶକ ଅଟେ । ଅନ୍ନ, ପିଠା ଇତ୍ୟାଦି ନୈବେଦ୍ୟ ମହାପ୍ରସାଦ ନାମରେ ନାମିତ । ମହାପ୍ରସାଦ ଭକ୍ଷଣରେ କୋଟିଏ କପିଳା ଧେନୁ ଦାନର ପୁଣ୍ୟଫଳ ମିଳିଥାଏ । ଶ୍ରୀଜଗନ୍ନାଥଙ୍କ ଦର୍ଶନ ସଦୃଶ ମହାପ୍ରସାଦ ଦର୍ଶନରେ ମଧ୍ୟ ମନୁଷ୍ୟ ମୁକ୍ତିଲାଭ କରିଥାଏ । ଅତଏବ ଶ୍ରୀପୁରୁଷୋତ୍ତମଠାରୁ ଆଉ ପବିତ୍ରତମ ତୀର୍ଥ କୌଣସିଠାରେ ନାହିଁ । ଏଠାରେ ବ୍ରାହ୍ମଣମାନେ ଚଣ୍ଡାଳ ହସ୍ତରୁ ମହାପ୍ରସାଦ ସେବନ କରିଥାନ୍ତି । କଳ୍ପବଟ ମୂଳରେ ବିରାଜିତ ବଟେଶ ସର୍ବପାପ ମୁକ୍ତି ପ୍ରଦାୟକ । ଏହି କ୍ଷେତ୍ରର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବାକୁ



ଯାଇ ଭରଦ୍ୱାଜ କହୁଛନ୍ତି-

ସର୍ବେଷାଂଚୈବ କ୍ଷେତ୍ରାଣାଂ ରାଜା ଶ୍ରୀ ପୁରୁଷୋତ୍ତମ
ସର୍ବେଷାଂ ଚୈବ ଦେବାନାଂ ରାଜା ଶ୍ରୀ ପୁରୁଷୋତ୍ତମ ।୩।
(୫ମ ଅଧ୍ୟାୟ)

ଅର୍ଥାତ୍ କ୍ଷେତ୍ରମାନଙ୍କ ମଧ୍ୟରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଶ୍ରେଷ୍ଠ ଏବଂ ସକଳ ଦେବତାଙ୍କ ମଧ୍ୟରେ ଶ୍ରୀପୁରୁଷୋତ୍ତମ ରାଜା ଅଟନ୍ତି । ଏହି କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା କରିବାକୁ ଶତ ଶତ ବର୍ଷ ଲାଗିଲେ ମଧ୍ୟ ସରିବ ନାହିଁ । ଏହାପରେ ପଞ୍ଚମ ଅଧ୍ୟାୟର ଶେଷ ପର୍ଯ୍ୟାୟରେ କ୍ଷେତ୍ରର ତପସ୍ୟାସ୍ଥାନ ସମ୍ପର୍କରେ ବର୍ଣ୍ଣନା କରାଯାଇ ଯମେଶ୍ୱର ପୀଠର ମହତ୍ୱ ପ୍ରତିପାଦନ କରାଯାଇଅଛି । ଇନ୍ଦ୍ରାଦି ଦେବତାମାନେ ଓ ମହାତପସ୍ୱୀ ଏଠାରେ ବାସ କରିଅଛନ୍ତି । ଯମେଶ୍ୱରଙ୍କ ପରିସର ଅତ୍ୟନ୍ତ ପୁଣ୍ୟଦାୟକ ଓ ଦେବଦୁର୍ଲଭ ସ୍ଥାନ ଅଟେ । ଅନେକ ଜନ୍ମର ପୁଣ୍ୟ ଫଳରେ ସେଠାରେ ଦେବତା ଓ ମହର୍ଷିମାନେ ବାସ କରୁଛନ୍ତି । ଏହି ସ୍ଥାନର ଚତୁର୍ଦ୍ଦିଗରେ ନାରିକେଳ, ପଣସ, ଗୁବାକ, କରବୀର, କନିଅର, ପାଟଳ, ଚମ୍ପା, ମଲ୍ଲୀ, ଯୁଈ, ଜାଇ ପ୍ରଭୃତି ଫଳପୁଷ୍ପ ଓ ଲତାଗୁଳ୍ମ ଇତ୍ୟାଦି ରହିଅଛି । ସୁତରାଂ ତପସ୍ୟା ପାଇଁ ଏହି ସ୍ଥାନଟି ପ୍ରକୃଷ୍ଟ ସ୍ଥାନ ଅଟେ । ଯେଉଁମାନେ ପ୍ରଶାନ୍ତମନା ହୋଇ ଯମେଶ୍ୱରଙ୍କଠାରେ ମନୋନିବେଶ କରି ମନ୍ତ୍ରଜପ କରନ୍ତି ସେମାନେ ମନ୍ତ୍ରସିଦ୍ଧ ହୋଇଥାନ୍ତି । ସନକାଦି ଦେବର୍ଷି ଓ ବଶିଷ୍ଠାଦି ବ୍ରହ୍ମର୍ଷି ଏହି ଯମେଶ୍ୱର ପୀଠରେ ତପସ୍ୟା କରି ସିଦ୍ଧି ଲାଭ କରିଛନ୍ତି ।

କପିଳ ସଂହିତା ଗ୍ରନ୍ଥର ଉପରୋକ୍ତ ତିନୋଟି ଅଧ୍ୟାୟରେ ବର୍ଣ୍ଣିତ ଉତ୍କଳର ଶ୍ରେଷ୍ଠତ୍ୱ । କ୍ଷେତ୍ରର ପ୍ରଶସ୍ତି, ରାଜା ଇନ୍ଦ୍ରଦ୍ୟୁମ୍ନ ବୃତ୍ତାନ୍ତ, ଉତ୍କଳ ଆଗମନ, ଦାରୁବ୍ରହ୍ମ ପ୍ରତିଷ୍ଠା ମୁଖ୍ୟଯାତ୍ରା-ଉତ୍ସବର ମହତ୍ୱ ସହିତ ଶ୍ରୀମନ୍ଦିର ବେଢା ମଧ୍ୟରେ ଦେବଦେବୀଙ୍କ ଅବସ୍ଥାନ ଓ ମାହାତ୍ମ୍ୟ ବର୍ଣ୍ଣନା କରାଯାଇଅଛି । ଶ୍ରୀମନ୍ଦିର ବାହାରେ ଥିବା ତୀର୍ଥ ଓ ପବିତ୍ର ସ୍ଥାନ ସହିତ ଦେବଦେବୀଙ୍କ ମହିମାଗାନରେ ଯେଉଁଭଳି ଶତମୁଖ ହୋଇଉଠିଛି, ସେ ବର୍ଣ୍ଣନାର ପଟାନ୍ତର ନାହିଁ ।

ପି.ଏମ୍.ବି-୬୪
ସନ୍ଧ୍ୟା ନିଳୟ, ହାଉସିଂ ବୋର୍ଡ କଲୋନୀ
ବଳିଆପଣ୍ଡା, ପୁରୀ-୭୫୨୦୦୧

# ସମର୍ପଣ

ମିଶ୍ର ସତ୍ୟନାରାୟଣ



ଧୂପକରି ମୋତେ ଜାଳିଦିଅ ପ୍ରଭୁ
ଶେଷହେବି ଜଳିଜଳି
ମହକାଇ ଦେବି ତୁମ ପୂଜାବେଦୀ
ମହମହ ବାସଭରି
କଳୁଷିତ ଏଇ ଶରୀରକୁ ଦେଖି
ମୋ' ପାଶେ ନଦେଲ ଧରା
ଅଶରୀରୀ ହେଲେ ପବନେ ମିଳାଇ
ତୁମକୁ ଛୁଇଁବି ପରା !

ତୁମ ଶିରୀଅଂଗ ପରମ ପରଶେ
ପାପ ଯିବ ଅପସରି
ଧୂପକରି ମୋତେ... ।
ଏ ଦେହରେ ଯେତେ ଦହନ ଭରିଲେ
ତିଳେ ମୋ ବାରଣ ନାହିଁ
ସେବାରେ ତୁମରି ଜଳି ସରିଗଲେ
ଶୋଚନା ମୋ' ଅବା କାହିଁ !
ସାରା ଆୟୁଷ ମୋ' ପାଉଁଶ ପାଲଟି
ଶ୍ରୀଚରଣେ ଯାଉ ଝରି
ଧୂପକରି ମୋତେ.... ।

ପ୍ଲଟ ନଂ-ଏଫ୍-୫/ଏ
ଚଂଦକା ଶିକ୍ଷାଞ୍ଚଳ
ପୋ-କିଟ୍, ଭୁବନେଶ୍ୱର-୨୪

# ଭାରତୀୟ ଦର୍ଶନରେ ପୁରୁଷୋତ୍ତମ ଜଗନ୍ନାଥ

ପଣ୍ଡିତ ଅନ୍ତର୍ଯ୍ୟାମୀ ମିଶ୍ର



ବୈଦିକ ଯୁଗରୁ ଭାରତୀୟ ଦର୍ଶନର ଅବିଚ୍ଛିନ୍ନ ଧାରା ପ୍ରବାହିତ । ପାଶ୍ଚାତ୍ୟ ଭୂଖଣ୍ଡରେ ଦର୍ଶନଶାସ୍ତ୍ର ବିଦ୍ଵଜ୍ଜନଙ୍କର ମନୋବିନୋଦର ସାଧନ ହୋଇଥିଲେ ହେଁ ପବିତ୍ର ଭାରତବର୍ଷରେ ଏହା ଜୀବନ ମୁକ୍ତିର ଦିବ୍ୟ ପଥ ପ୍ରଦର୍ଶକ । ବୈଦିକ ଯୁଗରୁ ଭାରତୀୟ ତତ୍ତ୍ଵଦର୍ଶୀ ପ୍ରଚେତାବୃନ୍ଦ ଯୁଗ ପରିବର୍ତ୍ତନ ପରିପ୍ରେକ୍ଷୀରେ ଭିନ୍ନ ଭିନ୍ନ ସମୀକ୍ଷାତ୍ମକ ଦୃଷ୍ଟିକୋଣରୁ ଏହାକୁ ସର୍ବଜନପ୍ରିୟ ଓ ସାର୍ବଜନୀନ କରିବାକୁ ପ୍ରଯତ୍ନ କରି ଆସିଛନ୍ତି । ପରିବର୍ତ୍ତନଶୀଳ ବ୍ରହ୍ମାଣ୍ଡର ଅପରିବର୍ତ୍ତନୀୟ ତତ୍ତ୍ଵର ସତ୍ତାକୁ ଉପଲବ୍ଧି କରିବା ନିମିତ୍ତ ଯୁଗେ ଯୁଗେ ଭାରତୀୟ ପ୍ରଚେତାବୃନ୍ଦ ବ୍ରହ୍ମର ସ୍ଵରୂପ, ତହିଁରୁ ଉତ୍ପନ୍ନ ଜୀବ, ଜଗତ ସହିତ ତାହାର ସଂପର୍କ ତଥା ବ୍ରହ୍ମପ୍ରାପ୍ତିର ଉପାୟ ପ୍ରତିପାଦ୍ୟ ସିଦ୍ଧାନ୍ତ ସମୂହ ଦ୍ଵାରା ସହଜ, ସରଳ ଓ ପ୍ରାଞ୍ଜଳ କରିଯାଇଛନ୍ତି । ବିଶେଷତଃ ଏ ଯୁଗର ଜଗଦ୍‌ଗୁରୁ ଆଦି ଶଙ୍କରାଚାର୍ଯ୍ୟ ବେଦାନ୍ତ ଦର୍ଶନ ଧାରାରେ ତଥା ମର୍ମଜ୍ଞ ଓ ହୃଦୟସ୍ପର୍ଶୀ ଶୈଳୀରେ ଭାରତୀୟ ଦର୍ଶନର ପରମ ଓ ଚରମ ସିଦ୍ଧାନ୍ତକୁ ଗଣଚେତନାରେ ରୂପାନ୍ତରିତ କରିଥିଲେ । ତତ୍‌ପରେ ଭାସ୍କର, ରାମାନୁଜ, ମଧ୍ଵ , ନିମ୍ବାର୍କ, ଶ୍ରୀକଣ୍ଠ, ଶ୍ରୀପତି, ବଲ୍ଲଭ, ବିଜ୍ଞାନଭିକ୍ଷୁ ଓ ବଳଦେବ ବିଦ୍ୟାଭୂଷଣ ପ୍ରଭୃତି ଆଚାର୍ଯ୍ୟବୃନ୍ଦ ଆପଣା ଆପଣା ଦୃଷ୍ଟିକୋଣରେ ଭେଦାଭେଦ, ବିଶିଷ୍ଟାଦ୍ଵୈତ, ଦ୍ଵୈତ, ଦ୍ଵୈତାଦ୍ଵୈତ, ଶୈବ ବିଶିଷ୍ଟାଦ୍ଵୈତ, ବୀରଶୈବ ବିଶିଷ୍ଟାଦ୍ଵୈତ, ଶୁଦ୍ଧାଦ୍ଵୈତ, ଅବିଭାଗାଦ୍ଵୈତ ଏବଂ ଅଚିନ୍ତ୍ୟଭେଦାଭେଦ ଧାରାରେ ଭାରତୀୟ ଦର୍ଶନକୁ ପରିପୁଷ୍ଟ କରିଯାଇଛନ୍ତି । ଏହି ସକଳ ମତ, ପଥ, ଧାରା ଓ ଭାରତୀୟ ଦର୍ଶନର ପରମ ଓ ଚରମ ଅଭିବ୍ୟକ୍ତି ହେଉଛନ୍ତି ପୁରୁଷୋତ୍ତମ ଜଗନ୍ନାଥ । ସେ ଅନାଦି କାଳରୁ ବ୍ରହ୍ମଧାମ ନୀଳାଚଳରେ ଭାରତୀୟ ଦାର୍ଶନିକ ଚେତନା ମତବାଦ ଓ ସିଦ୍ଧାନ୍ତର ପ୍ରତୀକାତ୍ମକ ବିଗ୍ରହ ରୂପେ ସମନ୍ଵୟର ପ୍ରତିଭୂ ଭାବରେ ପ୍ରତିଭାତ ହୋଇଛନ୍ତି । ମହନୀୟତା ହେଉଛି, ଭାରତୀୟ ଦର୍ଶନର ଅବିଚ୍ଛିନ୍ନ ଧାରାରେ ଜନ୍ମନେଇଥିବା ପ୍ରତ୍ୟେକଟି ମତ, ପଥ, ଗୋଷ୍ଠୀ ଓ ସଂପ୍ରଦାୟ ତାଙ୍କୁ ଭାରତୀୟ ଦର୍ଶନର କେନ୍ଦ୍ରବିନ୍ଦୁ ସ୍ଵରୂପରେ ପ୍ରଣତି ଜଣାଇ ପରମପଦ କାମନା କରିଛନ୍ତି । ଅଧିକନ୍ତୁ ତାଙ୍କ ପାବନ ବ୍ରହ୍ମଧାମର ଶରଧାବାଲି ସ୍ପର୍ଶ କରିବା ମାତ୍ରକେ ବ୍ରହ୍ମାନୁସନ୍ଧାନୀ, ଜ୍ଞାନୀ ଓ ତତ୍ତ୍ଵଦର୍ଶୀ ଆପଣା ଆପଣାର ଜ୍ଞାନ ଓ ତତ୍ତ୍ଵର ଅନୁସନ୍ଧାନ ପରିହାର ପୂର୍ବକ ନିରନ୍ତର ତାଙ୍କ ଦର୍ଶନର ବ୍ରହ୍ମାନୁଭୂତିରେ ଅବଗାହନ କରିବାର ମହାଭିପ୍ରାୟରେ ଦିବ୍ୟ ନୀଳାଚଳରେ ମଠ, ଆଶ୍ରମ, ଭବନ ଓ ପ୍ରାସାଦ ନିର୍ମାଣ କରି ବ୍ରହ୍ମଲୀନ ହେବାର କାମନା ପୋଷଣ କରିଛନ୍ତି ।

ବୈଦିକ ତତ୍ତ୍ଵ ସମୂହର ଦାର୍ଶନିକ ସିଦ୍ଧାନ୍ତ ପ୍ରତିପାଦନ କାମନାରେ ବାଦରାୟଣ ବେଦବ୍ୟାସ ବ୍ରହ୍ମସୂତ୍ର ପ୍ରଣୟନ କଲେ । ପରବର୍ତ୍ତୀ ଆଚାର୍ଯ୍ୟବୃନ୍ଦ ସ୍ଵ ସ୍ଵ ମତାନୁସାରେ ବ୍ରହ୍ମସୂତ୍ରର ଭାଷ୍ୟ ରଚନା ପୂର୍ବକ ବେଦାନ୍ତ ଦର୍ଶନକୁ ପ୍ରତିଷ୍ଠା କରିଯାଇଛନ୍ତି । ବ୍ୟାସଦେବଙ୍କ ଶିଷ୍ୟ ହେଉଛନ୍ତି ଶୁକଦେବ, ଶୁକଦେବଙ୍କ ଶିଷ୍ୟ ହେଉଛନ୍ତି ଗୌଡପାଦ, ଗୌଡପାଦଙ୍କ ଶିଷ୍ୟ ହେଉଛନ୍ତି ଗୋବିନ୍ଦପାଦ ଏବଂ ଗୋବିନ୍ଦପାଦଙ୍କ ଶିଷ୍ୟ ହେଉଛନ୍ତି ଜଗତଗୁରୁ ଆଦି ଶଙ୍କରାଚାର୍ଯ୍ୟ । ଅଲୌକିକ ମେଧାସଂପନ୍ନ ପୁରୁଷ ଶଙ୍କରାଚାର୍ଯ୍ୟ ବେଦାନ୍ତ ଦର୍ଶନର ପ୍ରଚାର ଓ ପ୍ରସାର ନିମିତ୍ତ ବ୍ରହ୍ମସୂତ୍ରାଦି ଗ୍ରନ୍ଥ ସମୂହର ସରଳ ଭାଷା ରଚନା କରିବା ସହିତ ସମଗ୍ର ଭାରତ ପରିଭ୍ରମଣ କରି ଏହି ଦର୍ଶନର ତତ୍ତ୍ଵ ସାବଲୀଳଧାରାରେ ଜନମାନସରେ ପରିବେଷଣ କରିଥିଲେ । ଏହି ଦର୍ଶନର ନିର୍ଯ୍ୟାସ ପ୍ରତିପାଦନ ପୂର୍ବକ ସେ କହିଥିଲେ -



ଶ୍ଳୋକାର୍ଦ୍ଧେନ ପ୍ରବକ୍ଷ୍ୟାମି ଯଦୁକ୍ତଂ ଗ୍ରନ୍ଥ କୋଟିଭିଃ,
ବ୍ରହ୍ମସତ୍ୟଂ ଜଗନ୍ମିଥ୍ୟା ଜୀବୋବ୍ରହ୍ମୈବ ନାପର ।

ଅର୍ଥାତ କୋଟି କୋଟି ଶାସ୍ତ୍ରର ସିଦ୍ଧାନ୍ତ ହେଉଛି, ବ୍ରହ୍ମସତ୍ୟ, ଜଗତମିଥ୍ୟା ଏବଂ ଜୀବ ବ୍ରହ୍ମବ୍ୟତୀତ ଅନ୍ୟ କିଛି ନୁହେଁ । କିନ୍ତୁ ଆଚାର୍ଯ୍ୟ ଶଙ୍କର ବ୍ରହ୍ମଧାମ ନୀଳାଚଳରେ ପଦାର୍ପଣ କରି ଦର୍ଶନ କଲେ ଯେ ଏହି ପବିତ୍ର ପୀଠରେ ଶ୍ରୀମନ୍ଦିରର ରତ୍ନ ସିଂହାସନରେ ନିର୍ଜୀବ ଦାରୁ ଅଭ୍ୟନ୍ତରରେ ବ୍ରହ୍ମ ବିରାଜମାନ । କେବଳ ସେତିକି ନୁହେଁ, ନିର୍ଜୀବ ତଣ୍ଡୁଳ ଦାରୁବ୍ରହ୍ମଙ୍କ ସେବାରେ ପୁନଃ ପୁନଃ ସମର୍ପିତ ହୋଇ ନିର୍ମାଲ୍ୟ ବ୍ରହ୍ମରେ ରୂପାନ୍ତରିତ ହେଉଛି । ସେ ସଂଦର୍ଶନ କଲେ ନିର୍ଜୀବ ତଣ୍ଡୁଳ ଦାରୁବ୍ରହ୍ମଙ୍କ ସେବାନିମିତ୍ତ ଭଣ୍ଡାରକୁ ଆସିବା ପରେ ଅମୁଣିଆ, ବୈଷ୍ଣବାଗ୍ନି ରେ ସିଦ୍ଧ ହେବାପରେ ଅନ୍ନ, ସୂପକାରଙ୍କ ଦ୍ୱାରା ଗମ୍ଭୀରାକୁ ପ୍ରେରଣ ହେବା ସମୟରେ ଛେକ, ଗମ୍ଭୀରାରେ ପହଞ୍ଚିବା ପରେ ଭୋଗ, ଶ୍ରୀଯନ୍ତ୍ର ରୂପକ ଠାଆ ମୁରୁଜ ଉପରେ ନିବେଦନ ନିମିତ୍ତ ସଂସ୍ଥାପିତ ହେବାପରେ ନୈବେଦ୍ୟ, ପୂଜାପଣ୍ଡା ମନ୍ତ୍ରୋଚ୍ଚାରଣ ପୂର୍ବକ ପାଞ୍ଚ ରାତ୍ର ବିଧିରେ ଉତ୍ସର୍ଗ କରିବା ପରେ ପ୍ରସାଦ ପରମବୈଷ୍ଣବୀ ବିମଳାଙ୍କୁ ସମର୍ପିତ ହେବା ପରେ ମହାପ୍ରସାଦ, ଆନନ୍ଦ ବଜାରକୁ ଆସି ସଭିଙ୍କ ଦୃଷ୍ଟି ପଥାରୂଢ ହୋଇ ମୁକ୍ତିପ୍ରଦାନ କଲେ କୈବଲ୍ୟ, ଅଗଣିତ ଭକ୍ତ ଜାତିବର୍ଣ୍ଣ ନିର୍ବିଶେଷରେ ସେବନ କରିବା ସମୟରେ ଅବଢା ଏବଂ ଶେଷରେ ଯେଉଁ ଉଚ୍ଛିଷ୍ଟ ରହୁଛି ତାହା ନିର୍ମାଲ୍ୟ ନାମରେ ଖ୍ୟାତ, ଯାହାକି ପରଂବ୍ରହ୍ମ ପୁରୁଷୋତ୍ତମ ଜଗନ୍ନାଥଙ୍କ ସ୍ୱରୂପ । ନିର୍ଜୀବ ମଧ୍ୟରେ ବ୍ରହ୍ମଦର୍ଶନ କରିବା ପରେ ଶଙ୍କରାଚାର୍ଯ୍ୟ ଆତ୍ମ ପ୍ରତ୍ୟୟର ସ୍ୱୟଂସିଦ୍ଧତା ପ୍ରତ୍ୟକ୍ଷ କରିପାରିଲେ ତଥା ବ୍ରହ୍ମାନୁଭୂତିର ନିରତିଶୟ ଆନନ୍ଦରେ ନିମଜ୍ଜିତ ରହିଲେ । ଏହାର ବ୍ୟାପକ ପ୍ରଚାର ଓ ପ୍ରସାର ନିମିତ୍ତ ସେ ଭାରତବର୍ଷର ଚାରିଦିଗରେ ଚାରିଗୋଟି ଧାମ ପ୍ରତିଷ୍ଠାର ସଂକଳ୍ପ ଗ୍ରହଣ କରି ପ୍ରଥମେ ପୂର୍ବଦିଗ ନୀଳାଚଳରେ ଋଗବେଦର ମହାକାବ୍ୟ ପ୍ରଜ୍ଞାନଂ ବ୍ରହ୍ମ ଆଧାରିତ ଗୋବର୍ଦ୍ଧନ ପୀଠ ସ୍ଥାପନା କରିଥିଲେ । ପରେ ପରେ ଉତ୍ତର ଦିଗରେ ଅଥର୍ବବେଦର ମହାବାକ୍ୟ ଅୟମାତ୍ମାବ୍ରହ୍ମ ଆଧାରିତ ଜ୍ୟୋତିପୀଠ, ପଶ୍ଚିମ ଦିଗ ଦ୍ୱାରକାରେ ସାମବେଦର ମହାବାକ୍ୟ ତତ୍ତ୍ୱମସି ଆଧାରିତ ଶାରଦାପୀଠ ଏବଂ ଦକ୍ଷିଣରେ ରାମେଶ୍ୱରରେ ଯଜୁର୍ବେଦର ମହାବାକ୍ୟ ଅହଂବ୍ରହ୍ମାସ୍ମି ଆଧାରିତ ଶୃଙ୍ଗେରୀପୀଠ ପ୍ରତିଷ୍ଠା କରିଥିଲେ । ଆଦି ଶଙ୍କରାଚାର୍ଯ୍ୟଙ୍କ ମତରେ ପୁରୁଷୋତ୍ତମ ଜଗନ୍ନାଥ ହିଁ ବେଦାନ୍ତ ଦର୍ଶନ ବର୍ଣ୍ଣିତ ବ୍ରହ୍ମ । ତାଙ୍କ ପାଦ, ପାଣି, କର୍ଣ୍ଣ ପ୍ରଭୃତି ନଥିଲେ ହେଁ ସେ ସଭିଙ୍କ କଥା ଦେଖନ୍ତି, ଶୁଣନ୍ତି ତଥା ସର୍ବତ୍ର ଗମନ କରନ୍ତି । ଅଚିନ୍ତ୍ୟ ତାଙ୍କର ଶକ୍ତି । ଉପନିଷଦୀୟ ଭାଷାରେ-

ଅପାଣି ପାଦୋଽହଂ ଅଚିନ୍ତ୍ୟଶକ୍ତି ପଶ୍ୟାମଚକ୍ଷୁ ଶୃଣୋମ୍ୟକର୍ଣ୍ଣ
ଅହଂ ବିଜାନାମି ବିବିକ୍ତ ରୂପୋ ନଗସ୍ତି ବେତ୍ତା ମମବିସ୍ତବହମ୍

ପୁରୁଷୋତ୍ତମ ଜଗନ୍ନାଥଙ୍କ ରୂପଦର୍ଶନରେ ସେ ବିସ୍ମୟାଭୂତ ହୋଇ ପଡିଥିଲେ । ସେ ଅନୁଭବ କଲେ ଦାରୁବ୍ରହ୍ମ ହିଁ ନିର୍ଗୁଣ ବ୍ରହ୍ମ ରୂପେ ବିଶ୍ୱନିୟନ୍ତା ଓ ସଗୁଣ ବ୍ରହ୍ମ ରୂପରେ ବିଶ୍ୱର ସ୍ରଷ୍ଟା । ସେ ଉପଲବ୍ଧି କଲେ ଯେ ବେଦାନ୍ତର ପ୍ରତିପାଦ୍ୟ ବ୍ରହ୍ମାକ୍ଷର ପ୍ରଣବକୁ ଦାରୁମୂର୍ତ୍ତିରେ ରୂପାୟିତ କରି ବିଶ୍ୱବନ୍ଦ୍ୟ କରାଯାଇଛି । ସେ ପ୍ରତିମାବାଦର ଝଲକରେ ପ୍ରତୀକବାଦର ରହସ୍ୟ ସ୍ୱରୂପରେ ପ୍ରତିଭାତ ।

ନେକା ନୈକ ସ୍ଥୂଳ ସୂକ୍ଷ୍ମାଣୁ ମୂର୍ତ୍ତେ,
ବ୍ୟୋମାତୀତଂ ବ୍ୟୋମରୂପଂ ପ୍ରକାଶମ୍
ବ୍ୟୋମାକାରଂ ବ୍ୟାପିନୋ ବ୍ୟୋମସଂସ୍ଥ
ବ୍ୟୋମାରୂଢଂ ବ୍ୟୋମକେଶାଦ୍ଧ ଯୋନେ ।

ସେ ହିଁ ଓଁକାରରୂପୀ ଜ୍ୟୋତିର୍ମୟ ଶୂନ୍ୟ ପୁରୁଷ । ସେ ଅ,ଉ,ମ ସ୍ୱରୂପ ସୃଷ୍ଟି, ସ୍ଥିତି ଓ ପ୍ରଳୟର ପ୍ରତୀକାତ୍ମକ ବିଶ୍ୱପୁରୁଷ । ଏହି ପୁରୋଦୃଷ୍ଟିରେ ପୂଜା ପ୍ରକରଣରେ ପ୍ରଣବନ୍ୟାସ ସମୟରେ ଶ୍ରୀବଳଭଦ୍ରଙ୍କୁ ଅ କାର, ଶ୍ରୀସୁଭଦ୍ରାଙ୍କୁ ଉ କାର ଓ ଶ୍ରୀଜଗନ୍ନାଥଙ୍କୁ ମ କାର ଚିନ୍ତା କରାଯାଇ ମନ୍ତ୍ରପାଠ ହେଉଛି । ଓଁ ଅକାର ସତ୍ୱଗୁଣଂ ଶୁକ୍ଳବର୍ଣ୍ଣଂ ନମଃ ନର୍ଭେ, ଓଁ ଉକାର ରଜୋଗୁଣଂ ରକ୍ତବର୍ଣ୍ଣଂ ନମଃ ହୃଦୟେ ଏବଂ ଓଁ ମକାର ତମୋଗୁଣଂ କୃଷ୍ଣବର୍ଣ୍ଣଂ ନମଃ ମୂର୍ଦ୍ଧନୀ । ଦର୍ଶନ ଅନୁଭବ ଓ ଉପଲବ୍ଧି ପରେ ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟ ଆତ୍ମାର ଅପରୋକ୍ଷାନୁଭୂତିରେ ଦାରୁବ୍ରହ୍ମଙ୍କୁ ପ୍ରାତଃ ସ୍ମରଣୀୟ ପୁରୁଷୋତ୍ତମ ସ୍ୱରୂପରେ ପ୍ରାର୍ଥନା କରିଥିଲେ-

ପ୍ରାତର୍ନମାମି ତମସଃ ପରମର୍କ ବର୍ଣ୍ଣମ.,
ପୂର୍ଣ୍ଣ ସନାତନ ପଦଂ ପୁରୁଷୋତ୍ତମାଖ୍ୟମ୍
ଯସ୍ମିନିତ୍ୟଂ ଜଗଦଶେଷ ମଶେଷ ମୂର୍ତ୍ତୌ
ରଜ୍ଜ୍ୱାଂ ଭୁଜଙ୍ଗମ ଇବ ପ୍ରତିଭାସିତ ବୈ

ସୂଚନାଯୋଗ୍ୟ ଯେ ଆଦି ଶଙ୍କରାଚାର୍ଯ୍ୟଙ୍କ ପ୍ରତିଷ୍ଠିତ ଗୋବର୍ଦ୍ଧନ ପୀଠର ଅଧିକ୍ଷବୃନ୍ଦ ସେହି କାଳରୁ ଦଣ୍ଡସ୍ପର୍ଶନ ମୁହୂର୍ତ୍ତରେ ଶ୍ରୀଜଗନ୍ନାଥ ପୁରୁଷୋତ୍ତମଙ୍କୁ ଓଁକାର ରୂପୀ ପରମପୁରୁଷ ଜ୍ଞାନରେ ପ୍ରଣାମ କରିଥାନ୍ତି ।



ବ୍ରହ୍ମାକ୍ଷର ପରଂ ନିତ୍ୟ ନମୋ ପୁରୁଷ ପୂର୍ବଜମ୍
ଓଁ ତତ୍ ସତ୍ ସ୍ୱରୂପେଣ ବ୍ରହ୍ମଣ ତ୍ରିବିଧବପୁଃ
ସତ୍ ସ୍ୱରୂପ ଶିବ ସାକ୍ଷାତ୍ ତତସ୍ୱରୂପ ତଦାତ୍ମିକା
ଅକ୍ଷର ବ୍ରହ୍ମରୂପାୟ ଦାରବ ବପୁଷେ ନମଃ

ବେଦରେ ସର୍ବଶକ୍ତିମାନ ପରଂବ୍ରହ୍ମଙ୍କୁ ପୁରୁଷ ନାମରେ ଅଭିବ୍ୟକ୍ତ କରାଯାଇଛି । ସେ ହିଁ ଭାରତୀୟ ଦର୍ଶନର କେନ୍ଦ୍ରବିନ୍ଦୁ । ବେଦ ବର୍ଣ୍ଣନାନୁଯାୟୀ ସକଳ ବିଶ୍ୱ ତାଙ୍କର ଶରୀର ଓ ନିବାସସ୍ଥଳୀ । ବେଦମତରେ ସେ କଳ୍ପନାତୀତ ବିରାଟ ପୁରୁଷ । ତାଙ୍କ ମୁଖରୁ ବ୍ରାହ୍ମଣ, ବାହୁରୁ କ୍ଷତ୍ରିୟ, ଉରୁରୁ ବୈଶ୍ୟ ଓ ପାଦରୁ ଶୁଦ୍ର ଉତ୍ପନ୍ନ ହୋଇ ସମଗ୍ର ବିଶ୍ୱ ଜନସଂଖ୍ୟାରେ ସମୃଦ୍ଧ । ସେ କ୍ଷର ପୁରୁଷଠାରୁ ଭିନ୍ନ ଓ ଅକ୍ଷର ପୁରୁଷ ଠାରୁ ଶ୍ରେଷ୍ଠ ।

ବୈଦିକ ପ୍ରଚେତାବୃନ୍ଦ ତାଙ୍କର ଆଦିଅନ୍ତ ନିର୍ଣ୍ଣୟ କରିନପାରି ତାଙ୍କୁ ସହସ୍ରଶୀର୍ଷା ପୁରୁଷ ନାମରେ ଅଭିହିତ କରିଛନ୍ତି । ସେ ହିଁ ଅନାଦିକାଳରୁ ପୁରୁଷୋତ୍ତମ କ୍ଷେତ୍ରରେ ଦିବ୍ୟଲୀଳା ସଂରଚନା ପୂର୍ବକ ତାଙ୍କ ନାମ ଓ ଧାମ ଉଭୟକୁ ପୁରୁଷୋତ୍ତମ ସ୍ୱରୂପରେ ମହିମାମଣ୍ଡିତ କରିଛନ୍ତି ।

ସର୍ବେଷାଂ ଚୈବ କ୍ଷେତ୍ରାଣାଂ ରାଜା ଶ୍ରୀ ପୁରୁଷୋତ୍ତମଃ
ସର୍ବେଷାଂ ଚୈବ ଦେବାନାଂ ରାଜା ଶ୍ରୀ ପୁରୁଷୋତ୍ତମଃ

ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ଦାରୁବ୍ରହ୍ମ ହିଁ ପ୍ରଣବର ବାଚ୍ୟରୂପ ଓ ବେଦୋକ୍ତ ପୁରୁଷୋତ୍ତମ ଶାସ୍ତ୍ରୀୟ ମାନ୍ୟତାରେ ଦାରୁବ୍ରହ୍ମଙ୍କ ମୂର୍ତ୍ତି ଗଠନ ପରେ ପୁରୁଷସୂକ୍ତ ମନ୍ତ୍ରରେ ପ୍ରାଣପ୍ରତିଷ୍ଠା କରାଯାଇଥିଲା ।

ତ୍ରୟୀ ପ୍ରସିଦ୍ଧଂ ଯତ୍‌ସୂକ୍ତଂ ପାବନଂ ପୌରୁଷଂ ମହତ୍
ତେଜ ନାରାୟଣଂ ଭୂପଃ ପଜୟାମାସ ଶକ୍ତିତଃ

ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ, ଶ୍ରୀସୁଭଦ୍ରା ଓ ଶ୍ରୀସୁଦର୍ଶନ ଏହି ଚତୁର୍ଦ୍ଧାମୂର୍ତ୍ତି ହିଁ ସର୍ବବେଦାନ୍ତସାର, ଭକ୍ତମାନଙ୍କର କଳ୍ପବୃକ୍ଷ ଓ ଭବଜଳଧିର ନୌକାସ୍ୱରୂପ ।

ଯୋ ଦାରୁବ୍ରହ୍ମମୂର୍ତ୍ତିଃ ପ୍ରଣବତନୁଧରଃ ସର୍ବବେଦାନ୍ତସାରଃ
ଭକ୍ତାନାଂ କଳ୍ପବୃକ୍ଷୋ ଭବଜଳତରଣିଃ ସର୍ବତତ୍ତ୍ୱାନୁତତ୍ତ୍ୱମ୍

ଚତୁର୍ଦ୍ଧାମୂର୍ତ୍ତିଙ୍କର ନୀଳାଚଳଲୀଳା ମାନବୀୟ ହୋଇ ମଧ୍ୟ ଦିବ୍ୟ । ବେଦ, ପୁରାଣ ଓ ଇତିହାସ ତାଙ୍କ ଲୀଳାର ଆଦିଅନ୍ତ ନିର୍ଣ୍ଣୟ କରିପାରିନାହାନ୍ତି । ଏହି ଲୀଳା ତାଙ୍କର ସ୍ୱଂୟ ଲୀଳା । ଭୂସ୍ୱର୍ଗ ପରୁଷୋତ୍ତମରେ ସେ ବେଦାନ୍ତ ଦର୍ଶନର ବ୍ରହ୍ମ ସ୍ୱରୂପରେ ପ୍ରତିଭାତ ହୋଇ ଅଗଣିତ ଭକ୍ତଙ୍କୁ ଅଭୟପ୍ରଦାନ କରୁଅଛନ୍ତି ।

ଭାରତେ ଚୋତ୍କଳେ ଦେଶେ ଭୂସ୍ୱର୍ଗେ ପୁରୁଷୋତ୍ତମେ
ଦାରୁରୂପୀ ଜଗନ୍ନାଥୋ ଭକ୍ତା ନାମ ଭୟ ପ୍ରଦଃ

ବିଶିଷ୍ଟାଦ୍ୱୈତର ପ୍ରଧାନ ଆଚାର୍ଯ୍ୟ ହେଉଛନ୍ତି ରାମାନୁଜ । ଅଦ୍ୱୈତମତରୁ ତାଙ୍କ ମତ ଭିନ୍ନ ହେଲେହେଁ ସେ ଭାଗବତ ସଂପ୍ରଦାୟରୁ ଈଶ୍ୱରଙ୍କ ପଞ୍ଚରୂପର କଳ୍ପନା ଗ୍ରହଣ କରି ଶ୍ରୀଜଗନ୍ନାଥଙ୍କ ଠାରେ ଆରୋପିତ କରିଛନ୍ତି । ତାଙ୍କ ମତରେ ପୁରୁଷୋତ୍ତମ ଜଗନ୍ନାଥ ହିଁ ସର୍ବାନ୍ତର୍ଯ୍ୟାମୀ ଏବଂ ସକଳ ଜଗତର ଅଭିନ୍ନ ନିମିତ୍ତୋପାଦାନ କାରଣ ଏବଂ ତାଙ୍କରି ଅନୁଗ୍ରହରୁ ଜୀବ ଏହି ବିଷମ ସଂସାରରୁ ମୁକ୍ତି ଲାଭ କରିଥାଏ । ସେ ପାଞ୍ଚରାତ୍ରର ଆଗମନକୁ ବେଦସଦୃଶ ପ୍ରମାଣଭୁତ ସ୍ୱୀକାର କରିଛନ୍ତି । ପାଞ୍ଚରାତ୍ର ଚତୁର୍ବ୍ୟୂହ ଉପାସନା ବିଧିରେ ସେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ବାସୁଦେବ, ସଙ୍କର୍ଷଣ, ପ୍ରଦ୍ୟୁମ୍ନ ଓ ଅନିରୁଦ୍ଧ ବିଚାର କରି ଜଗନ୍ନାଥଙ୍କୁ ମହାବିଷ୍ଣୁ ଓ ସୁଭଦ୍ରାଙ୍କୁ ମହାଲକ୍ଷ୍ମୀ ସ୍ୱରୂପରେ ବିବେଚନା କରିଥିଲେ ।

ନୀଳାଚଳ ନିବାସାୟ ନିତ୍ୟାୟ ପରମାତ୍ମନେ
ସୁଭଦ୍ରା ପ୍ରାଣନାଥାୟ ଜଗନ୍ନାଥାୟ ମଙ୍ଗଳମ୍

ଅଧିକନ୍ତୁ, ରାମାନୁଜାଚାର୍ଯ୍ୟ ଶ୍ରୀଜଗନ୍ନାଥଙ୍କୁ ଅଦୈତଦର୍ଶନ ଓ ବୈଷ୍ଣବ ଦର୍ଶନର ଉଦ୍‌ଗମ ସ୍ଥଳ ବିବେଚନା କରି ଶ୍ରୀମନ୍ଦିରରେ ରାମାନନ୍ଦୀ ଚିତା ସଂସ୍ଥାପନ କରିଥିଲେ । ତାଙ୍କରି ସମୟରୁ ଶ୍ରୀଜଗନ୍ନାଥ ବୈଷ୍ଣବଦର୍ଶନର କେନ୍ଦ୍ରବିନ୍ଦୁ ପାଲଟି ଗଲେ ।

ଦ୍ୱୈତବାଦର ପ୍ରବର୍ତ୍ତକ ମଧ୍ୱାଚାର୍ଯ୍ୟଙ୍କ ଦୃଷ୍ଟିରେ ପୁରୁଷୋତ୍ତମ- ଜଗନ୍ନାଥ ହିଁ ଅନନ୍ତଗୁଣ ପରିପୂର୍ଣ୍ଣ ସାକ୍ଷାତ୍ ବିଷ୍ଣୁ । ସେ ଦାରୁଶରୀର ଧାରଣ କରିଥିଲେ ମଧ୍ୟ ନିତ୍ୟ ତଥା ସର୍ବତନ୍ତ୍ର ସ୍ୱତନ୍ତ୍ର । ତାଙ୍କ ଅନୁଗ୍ରହ ବିନା ପରତନ୍ତ୍ରଜୀବ ସାଧାରଣ କାର୍ଯ୍ୟ ମଧ୍ୟ କରିପାରେ ନାହିଁ । ଶ୍ରୀଜଗନ୍ନାଥଙ୍କ କରୁଣାବିନା ଜୀବ ସାଲୋକ୍ୟ, ସାମୀପ୍ୟ, ସାରୂପ୍ୟ ଓ ସାୟୁଜ୍ୟ ମୁକ୍ତି ପାଇପାରେ ନାହିଁ । ନିମ୍ବାର୍କାଚାର୍ଯ୍ୟ ଦ୍ୱୈତାଦ୍ୱୈତ ବାଦର ପ୍ରବର୍ତ୍ତକ । ତାଙ୍କ ମତରେ ଶ୍ରୀଜଗନ୍ନାଥ ହିଁ ସଗୁଣବ୍ରହ୍ମ । ସେ ସକଳ ପ୍ରାକୃତ ଦୋଷ ବର୍ଜିତ ଓ ଅଖଣ୍ଡ ଜ୍ଞାନ ବଳ ଆଦି କଲ୍ୟାଣଗୁଣ ମାନଙ୍କର ନିଦାନ । ଦ୍ୱୈତାଦ୍ୱୈତବାଦର ଆଚାର୍ଯ୍ୟବୃନ୍ଦ ଶ୍ରୀଜଗନ୍ନାଥଙ୍କୁ ପରମାତ୍ମା, ପରଂବ୍ରହ୍ମ, ନାରାୟଣ, ଭଗବାନ, କୃଷ୍ଣ ଓ ପୁରୁଷୋତ୍ତମ ପ୍ରଭୃତି ନାମରେ ଅଭିହିତ କରିଥାନ୍ତି । ସେମାନଙ୍କର ସିଦ୍ଧାନ୍ତ ହେଉଛି



ଶ୍ରୀଜଗନ୍ନାଥ ହିଁ ଉତ୍ପତ୍ତି, ସ୍ଥିତି, ସଂହାର, ନିୟମନ, ଜ୍ଞାନ,ଆବରଣ, ବନ୍ଧ ଓ ମୋକ୍ଷ ଏହି ଆଠଟିର କର୍ତ୍ତା । ଏମାନଙ୍କ ମତରେ ଜଗନ୍ନାଥ ପ୍ରତ୍ୟକ୍ଷ କୃଷ୍ଣ, ବଳଭଦ୍ର କୃଷ୍ଣାନୁଜ ଓ ସୁଭଦ୍ରା ଶକ୍ତି ଅଟନ୍ତି । ବଲ୍ଲଭାଚାର୍ଯ୍ୟ ଶୁଦ୍ଧାଦ୍ୱୈତ ବାଦର ପ୍ରଧାନ ପ୍ରଚାରକ । ତାଙ୍କର ଦାର୍ଶନିକ ସିଦ୍ଧାନ୍ତ ହେଉଛି ଶ୍ରୀଜଗନ୍ନାଥ ହିଁ ମାୟାମୁକ୍ତ ଓ ଶୁଦ୍ଧ ପରଂବ୍ରହ୍ମ । ତାଙ୍କ ଦିବ୍ୟଦୃଷ୍ଟିରେ ଅଖିଳର ସାମୃତ ମୂର୍ତ୍ତି ନିଖିଳ ଲୀଳାଧାମ ଶ୍ରୀକୃଷ୍ଣ ହିଁ ପରଂବ୍ରହ୍ମ ଶ୍ରୀଜଗନ୍ନାଥ । ସେ ପୁରୁଷୋତ୍ତମ ତଥା ସର୍ବଦା ଆନନ୍ଦ ପରିପୂର୍ଣ୍ଣ । ଜୀବ କେବଳ ଅନନ୍ୟ ଭକ୍ତି ଦ୍ୱାରା ତାଙ୍କୁ ପ୍ରାପ୍ତି କରିପାରେ । ସାଂଖ୍ୟ ମତରେ ଶ୍ରୀଜଗନ୍ନାଥ ହିଁ ସଚ୍ଚିଦାନନ୍ଦ ବିଗ୍ରହ । ମଧୁର କୀର୍ତ୍ତନ ମାଧ୍ୟମରେ ମହାଭାବ ସୃଷ୍ଟିକାରୀ ପ୍ରେମାବତାର ଗୌରାଙ୍ଗ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଠାରେ ରାଧାକୃଷ୍ଣଙ୍କର ସମ୍ମିଳିତ ସ୍ୱରୂପ ସଂଦର୍ଶନ ପୂର୍ବକ ଜୀବନର ଶେଷ ଅଠରବର୍ଷ ନୀଳାଚଳରେ ନିବାସ କରିଥିଲେ । ତାଙ୍କ ମତରେ ଭଗବାନଙ୍କର ଅଚିନ୍ତ୍ୟ ଶକ୍ତି ହେତୁ ଶ୍ରୀଜଗନ୍ନାଥ ଦାରୁମୂର୍ତ୍ତି ହୋଇ ମଧ୍ୟ ବିଭୁ ଅଟନ୍ତି । ତାଙ୍କରି ସିଦ୍ଧାନ୍ତକୁ ପାଥେୟ କରି ବଳଦେବ ବିଦ୍ୟାଭୂଷଣ ଗୋବିନ୍ଦ ଭାଷ୍ୟ ରଚନା କରିଥିଲେ । ଏହି ଦର୍ଶନର ସିଦ୍ଧାନ୍ତ ହେଉଛି ଶ୍ରୀଜଗନ୍ନାଥଙ୍କୁ ପ୍ରାପ୍ତ କରିବାର ସର୍ବଶ୍ରେଷ୍ଠ ସାଧନ ହେଉଛି ଭକ୍ତି । ଅନ୍ୟାନ୍ୟ କୃଷ୍ଣବାସୁଦେବବାଦୀଗଣ ମଧ୍ୟ ଶ୍ରୀଜଗନ୍ନାଥଙ୍କୁ ପୂର୍ଣ୍ଣବ୍ରହ୍ମ ପୁରୁଷୋତ୍ତମ ସ୍ୱରୂପରେ ସ୍ୱୀକାର କରନ୍ତି । ବିଭିନ୍ନ ବୈଷ୍ଣବ ମତବାଦୀଙ୍କ ବ୍ୟତୀତ ଯୋଗୀବୃନ୍ଦ ମଧ୍ୟ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ଜ୍ୟୋତିରୂପୀ କୁଣ୍ଡଳିନୀ ରୂପେ ବିବେଚନା କରିଥାନ୍ତି ।

ସର୍ବ ଲକ୍ଷଣ ସଂପୂର୍ଣ୍ଣଂ ସର୍ବେନ୍ଦ୍ରିୟ ବିବର୍ଜିତମ୍
କୂଟସ୍ଥ ମଚଳଂ ସୂକ୍ଷ୍ମ ଜ୍ୟୋତିରୂପ ସନାତନମ୍,
ଭାବଭାଷା ବିନିର୍ମୁକ୍ତଂ ବ୍ୟାପିନଂ ପ୍ରକୃତଃ ପରମ୍,
ନମସ୍ୟାମି ଜଗନ୍ନାଥମୀଶ୍ୱରଂ ସୁଖଦଂ ପ୍ରଭୁମ୍

ପୁରୁଷୋତ୍ତମ କ୍ଷେତ୍ରରେ ନିବାସ କରିଥିବା ନାନକପନ୍ଥୀବୃନ୍ଦ ଶ୍ରୀଗୁରୁ ଗ୍ରନ୍ଥସାହେବ ପାର୍ଶ୍ୱରେ ପୁରୁଷୋତ୍ତମ ଜଗନ୍ନାଥଙ୍କ ବିଗ୍ରହ ରଖି ଆରାଧନା କରିଥାନ୍ତି । ସେମାନଙ୍କ ମତରେ ଜଗନ୍ନାଥ ହିଁ ସର୍ବଧର୍ମସାର ଅଲଖ ଅଗମ ଜଗଦୀଶ ।

ସଦ୍‌ଗୁରୁ କହତ ଏ ଭାବଦିୟାନି
ଅଲଖ ଅଗମ ଜଗଦୀଶ ହଜୀନି ।

ପୁରୁଷୋତ୍ତମ ଜଗନ୍ନାଥଙ୍କ ରାମାନନ୍ଦୀ ସଂପ୍ରଦାୟର ବୈଷ୍ଣବବୃନ୍ଦ ପରଂବ୍ରହ୍ମ ରଘୁନାଥ ସ୍ୱରୂପରେ ବିଚାର କରିଥାନ୍ତି । ସେମାନଙ୍କ ଦାର୍ଶନିକ ବିଚାରବୋଧ ହେଉଛି-

ଲକ୍ଷ୍ମଣଂ ବଳରାମଞ୍ଚ ରାଘବଃ ପୁରୁଷୋତ୍ତମଃ
ମୈଥିଳୀ ଭକ୍ତିରୂପାଶ୍ଚ ସୁଭଦ୍ରା ଚାରୁହାସିନୀ
ଆଞ୍ଜନେୟ ମହାବୀରଂ କ୍ଷେତ୍ରସ୍ୟ ରକ୍ଷକୋତ୍ତମ
ରାମାନନ୍ଦ ଗୁରୁର୍ବନ୍ଦେ ଶ୍ରୀକ୍ଷେତ୍ରେ ଧ୍ୱଜରକ୍ଷକମ୍

ରାମାନ୍ଦନଙ୍କର ଅନ୍ୟତମ ଶିଷ୍ୟ କବୀରଙ୍କ ଦ୍ୱାରା ପ୍ରତିଷ୍ଠିତ ସଂପ୍ରଦାୟ ମତରେ ଶ୍ରୀଜଗନ୍ନାଥ ହିଁ ପରମଜ୍ୟୋତି ସ୍ୱରୂପ ଆଦିପୁରୁଷ । ସନ୍ଥକବୀର ପୁରୁଷୋତ୍ତମ କ୍ଷେତ୍ରରେ ଆଚାଣ୍ଡାଳ ବ୍ରାହ୍ମଣ ମଧ୍ୟରେ ମହାପ୍ରସାଦ ସେବା ମାଧ୍ୟମରେ ପ୍ରତିଷ୍ଠିତ ସାମ୍ୟ ମୈତ୍ରୀ ପରଂପରାରେ ବିମୁଗ୍ଧ ହୋଇ ଜଗନ୍ନାଥଙ୍କୁ ପରମଜ୍ୟୋତିର୍ମୟ ପୁରୁଷରୂପେ ସ୍ୱୀକାର କରିଥିଲେ ।

କବୀରନ ସୁନହ ଚିହ୍ନହୁ କଳିଧାମା,
ଆଦି ପୁରୁଷ ଯହିଁ ଜ୍ୟୋତି ସମାନା ।

ପ୍ରାତଃ ସ୍ମରଣୀୟ ରାମଭକ୍ତ ଗୋସ୍ୱାମୀ ତୁଳସୀଦାସ ପୁରୁଷୋତ୍ତମ ଚେତନାର ମହାଭାବରେ ଶ୍ରୀଜଗନ୍ନାଥ ବିଗ୍ରହରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଙ୍କୁ ଦର୍ଶନ କରିଥିଲେ ।

ଯୋଇ ରାମ ସୋଇ ଜଗଦୀସା,
ଜିହ୍ନହିକା ଅନ୍ତ ନ ପାଓ୍ୱତ ସେଷା,
ସେଷ ଭୟେ ଲଛମନ ଅନୁଚାରୀ,
ଭଦ୍ରା ଯେ ସିୟ ଜନକ କୁମାରୀ,
ବଳଉଁ ସୁଦ୍ଧ ବ୍ରହ୍ମ ଅବିନାସା,
ଜୟ ହନୁମାନ ରାମପଦ ବାସା ।

ରାମାନନ୍ଦୀ ଦର୍ଶନର ଏହି ମହନୀୟ ବିଚାର ବୋଧରେ ଅନୁପ୍ରାଣିତ ହୋଇ ସିଦ୍ଧ, ସାଧକ ଓ ଭକ୍ତବୃନ୍ଦ ଶ୍ରୀଜଗନ୍ନାଥଙ୍କ ମଧ୍ୟରେ ରଘୁନାଥଙ୍କୁ ହିଁ ଦର୍ଶନ କରିଥାନ୍ତି । ଭକ୍ତକବି ବଳରାମ ଦାସଙ୍କ ଭାଷାରେ:

ଶ୍ରୀରାମ ଜାଣିଲେ ମୁଁ ଯେ ଅଟେ ଜଗନ୍ନାଥ,
ସୀତା ସୁଭଦ୍ରା ଯେ ଦେବୀ ଅଟନ୍ତି ସଂଯାତ,
ଲକ୍ଷ୍ମଣ ଯେ ବଳରାମ ଏକ ସଙ୍ଗେ ହୋନ୍ତି ।

ବୈଦିକ ଦର୍ଶନରେ ଜନ୍ମ ନେଇଥିବା ପ୍ରତ୍ୟେକଟି ମତ ଓ ପଥ ଶ୍ରୀଜଗନ୍ନାଥଙ୍କୁ ପରଂବ୍ରହ୍ମ ସ୍ୱରୂପରେ ବିବେଚନା କରିଛନ୍ତି । ସେମାନଙ୍କ ମତରେ ଶ୍ରୀଜଗନ୍ନାଥ ହିଁ ଭୋଗ ଓ ମୋକ୍ଷଦାତା । ଆସ୍ତିକ

ଦର୍ଶନ ବ୍ୟତୀତ ନାସ୍ତିକ ଦର୍ଶନରେ ମଧ୍ୟ ଚତୁର୍ଦ୍ଧାମୂର୍ତ୍ତିଙ୍କୁ କେନ୍ଦ୍ରବିନ୍ଦୁ ରୂପେ ସ୍ୱୀକାର କରାଯାଇଛି । ନାସ୍ତିକ ଦର୍ଶନ ମଧ୍ୟରୁ ଜୈନ ଦର୍ଶନରେ ଶ୍ରୀଜଗନ୍ନାଥଙ୍କୁ ଜିନନାଥ କୁହାଯାଇଛି । କେତେକଙ୍କର ମତ ଆଷାଢ ଶୁକ୍ଳ ଦ୍ୱିତୀୟା ଅର୍ଥାତ ଶ୍ରୀଗୁଣ୍ଡିଚା ତିଥି ହେଉଛି ଜୈନଧର୍ମର ପ୍ରଥମ ତୀର୍ଥଙ୍କର ଋଷଭନାଥଙ୍କ ଗର୍ଭକଲ୍ୟାଣ ତିଥି । ଜୈନ ମାନଙ୍କର ଅଭିଷେକ ସହିତ ଶ୍ରୀଜଗନ୍ନାଥଙ୍କ ସ୍ନାନୋତ୍ସବର ସାମଞ୍ଜସ୍ୟ ରହିଛି । ଗବେଷକମାନଙ୍କ ମତରେ ଜୈନଧର୍ମର ବଦ୍ଧ ମଙ୍ଗଳ ଓ ନନ୍ଦୀପଦ ସଙ୍କେତଦ୍ୱୟର ମିଶ୍ରଣରେ ଜଗନ୍ନାଥ ମୂର୍ତ୍ତିର ବିକାଶ ଘଟିଛି । ଏହି ପୁରୋଦୃଷ୍ଟିରୁ ଶ୍ରୀଜଗନ୍ନାଥ ହିଁ ଜୈନଦର୍ଶନର କୈବଲ୍ୟ ଦାତା ବା କେନ୍ଦ୍ରବିନ୍ଦୁ । ଜୈନ ଦର୍ଶନ ସଦୃଶ ଅନ୍ୟତମ ନାସ୍ତିକ ଦର୍ଶନ ବୌଦ୍ଧ ମତରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ହିଁ ତ୍ରିରତ୍ନର ପ୍ରତୀକ । ଗବେଷକମାନଙ୍କ ମତରେ ବୁଦ୍ଧ, ଧର୍ମ ଓ ସଂଘ ଏହି ତ୍ରିରତ୍ନରୁ ତ୍ରିମୂର୍ତ୍ତିର ବିକାଶ ଘଟିଥିଲା । ବୌଦ୍ଧ ବ୍ରଜଯାନୀ ଇନ୍ଦ୍ରଭୂତି ଜଗନ୍ନାଥଙ୍କୁ ବୁଦ୍ଧ ବୋଲି ଚିତ୍ରଣ କରିଛି । ଓଡିଶାର ସିଦ୍ଧ ସାଧକ ବୃନ୍ଦ ମଧ୍ୟ ଜଗନ୍ନାଥ ଓ ବୁଦ୍ଧଙ୍କୁ ଏକ ଓ ଅଭିନ୍ନ ବୋଲି ବିବେଚନା କରନ୍ତି । ମହାକବି ଜୟଦେବଙ୍କ ରଚିତ ଗୀତଗୋବିନ୍ଦରେ ବିଷ୍ଣୁଙ୍କର ନବମ ଅବତାର ହେଉଛନ୍ତି ବୁଦ୍ଧ । ପୁରାଣ ସାହିତ୍ୟରେ ମଧ୍ୟ ଏହା ସ୍ୱୀକୃତ । ଏହି ଦିବ୍ୟଦୃଷ୍ଟିରେ ଶ୍ରୀଜଗନ୍ନାଥ ହିଁ ବୌଦ୍ଧ ଦର୍ଶନର କେନ୍ଦ୍ରବିନ୍ଦୁ ।

ସଂକ୍ଷେପରେ ଉଲ୍ଲେଖ କଲେ, ସମନ୍ୱୟର ମହାମେରୁ ଜଗନ୍ନାଥଙ୍କଠାରେ ଭାରତବର୍ଷରେ ଜନ୍ମ ନେଇଥିବା ପ୍ରତ୍ୟେକ ଦାର୍ଶନିକ ଚିନ୍ତା ଓ ଚେତନାର ମହାମିଳନ ସଂଘଟିତ ହୋଇଛି । ବିଶ୍ୱର ସର୍ବପ୍ରାଚୀନ ଦେବତା ସର୍ବଦର୍ଶନସାର ଶ୍ରୀଜଗନ୍ନାଥ ହିଁ ସଭିଙ୍କ ଦୃଷ୍ଟିରେ ବପୁଷ୍ମନ୍ତ ପରଂବ୍ରହ୍ମ ଏବଂ ତାଙ୍କୁ ହିଁ କେନ୍ଦ୍ର କରି ସକଳ ଦର୍ଶନର ଧାରା ସମନ୍ୱୟର ମହାଭାବରେ ରୂପାନ୍ତରିତ ହୋଇଛି । ଅନେକ ରୂପାତ୍ମକ ତଥା କ୍ଷଣକ୍ଷଣକେ ବିଲକ୍ଷଣ ରୂପଧାରଣ କରୁଥିବା ବିଶ୍ୱରେ ପୁରୁଷୋତ୍ତମ ଜଗନ୍ନାଥ ଭାରତୀୟ ତତ୍ତ୍ୱଜ୍ଞାନର ବ୍ୟାପକ ଦୃଷ୍ଟିକୁ ଦର୍ଶନରେ ରୂପାନ୍ତର କରି ପିଣ୍ଡ ଓ ବ୍ରହ୍ମାଣ୍ଡର ପ୍ରଭେଦକୁ ପ୍ରଜ୍ଞାନରେ ପରିଣତ କରିଛନ୍ତି । ଏହାଦ୍ୱାରା ଜୀବ ଓ ନିର୍ଜୀବର ଅନ୍ତଃସ୍ଥଳରେ ବିଦ୍ୟମାନଥିବା ଏକରୂପଣ ସହଜ ବୋଧଗମ୍ୟ ହୋଇପାରିଛି ତଥା ଦାର୍ଶନିକ ବିଚାର ଦ୍ୱାରା ଦୁଃଖପୂର୍ଣ୍ଣ ସଂସାରର ଆତ୍ୟନ୍ତିକ ଦୁଃଖ ଦୂରୀକରଣର ଦିବ୍ୟ ପଥ ପ୍ରଶସ୍ତ ହୋଇପାରିଛି ।


ସଦସ୍ୟ
ଓଡିଶା ସାହିତ୍ୟ ଏକାଡେମୀ
ଢେଙ୍କାନାଳ


---

# ଚକାଆଖି


ପରୀକ୍ଷିତ ମିଶ୍ର


ଦିବ୍ୟସୁନ୍ଦର ତୋ ଚକାନୟନ
ସୁବାସିତ ତନୁ ମୋହଇ ମନ
ପୁରୁଷୋତ୍ତମ ମୁରଲୀ ମୋହନ
ବ୍ରହ୍ମାଣ୍ଡ ସ୍ୱାମୀ ପତିତପାବନ ।
ଲୀଳାମୟ ପ୍ରଭୁ ! କୃଷ୍ଣ ବଦନ
ତୋ ପରି ଠାକୁର ଅଛି କେ ଆନ ?
ଜନ୍ମ ମୃତ୍ୟୁ ଆତଯାତ ଯେସନ
ସବୁର ପୁରୋଧା କୃପା ନିଧାନ ।
ଜଗନ୍ନାଥ ନାମେ ବିଶ୍ୱେ ବିଖ୍ୟାତ
ସୃଷ୍ଟି ସ୍ଥିତି ଲୟ ତୋର ନିୟତ
ଅନାଦି ଅନନ୍ତ କଳ୍ପ ଅକ୍ଷୟ
ପିଣ୍ଡ ମଧ୍ୟେ ପ୍ରାଣ ଯେହ୍ନେ ଅବ୍ୟୟ ।



ବର୍ଣ୍ଣାଢ୍ୟ ରଥରେ ତୁ ବିରାଜିତ
ବଡଭାଇ ସାନ ଭଗ୍ନୀ ସହିତ
ଲୋକାରଣ୍ୟେ ଗଡି ଚାଲଇ ରଥ
ଭକତ ଡାକଇ ଶ୍ରୀଜଗନ୍ନାଥ
ତ୍ରାହିକର ସ୍ୱାମୀ ତ୍ରାହି ଅନନ୍ତ ।
ଶ୍ରୀକ୍ଷେତ୍ରାଧିପତି ପ୍ରଭୁ ଜଗନ୍ତ
ଶ୍ରୀପାଦ ପଦ୍ମରେ ଅଣୁଏ ସ୍ଥାନ
ଦିଅ କୃପାକରି ଆହେ ଅମ୍ଳାନ


ରାଜେନ୍ଦ୍ର ନଗର
କଟକ



# ଓଡ଼ିଆ ସଂସ୍କୃତିରେ ଶ୍ରୀଜଗନ୍ନାଥ ଓ ରଥଯାତ୍ରା

ଡକ୍ଟର ହରିହର କାନୁନ୍‌ଗୋ



ଶ୍ରୀଜଗନ୍ନାଥ ମହାପ୍ରଭୁ ଆମ ଓଡ଼ିଶା ସଂସ୍କୃତିର ସର୍ବଜନମାନ୍ୟ ରାଷ୍ଟ୍ରଦେବତା । ସଂସ୍କାର ବା ସଂସ୍କୃତ ଶବ୍ଦରୁ ଏହି ସଂସ୍କୃତି ଶବ୍ଦର ସୃଷ୍ଟି । ଅର୍ଥାତ୍ ମାର୍ଜିତ ବା ପବିତ୍ରିକୃତ ଚେତନା ବା ମାନବର ଜ୍ଞାନଗତ ଉତ୍କର୍ଷତା ହିଁ ସଂସ୍କୃତିର ରୂପରେଖ । ଶ୍ରୀଜଗନ୍ନାଥ ଚେତନା ବା ଉପାସନା ହିଁ ଓଡ଼ିଆ ସଂସ୍କୃତିର ମୂଳ ବା କେନ୍ଦ୍ରବିନ୍ଦୁ । ମହାପ୍ରଭୁ ଜଗନ୍ନାଥଙ୍କୁ ବାଦ୍ ଦେଲେ ଏ ଜାତିର ଅସ୍ତିତ୍ୱ ରହେନାହିଁ । ତେଣୁ ସେ ହେଉଛନ୍ତି ଏ ଜାତିର ଆତ୍ମା । ଶ୍ରୀମନ୍ଦିର ରତ୍ନବେଦୀରେ କେବଳ ଦେବତା ଭାବରେ ସକାଳୁ ରାତିଯାଏ ପୂଜିତ ବା ଆରାଧିତ ହୁଅନ୍ତି ନାହିଁ ବରଂ ଆମ ମାନବ ଜାତିର ସୁଖଦୁଃଖ ବିପଦ ଆପଦ ସବୁକ୍ଷେତ୍ରରେ ସେ ସାହା ହୁଅନ୍ତି-ଉଦ୍ଧାର କରନ୍ତି ମଣିଷଭଳି । ପତିତଜନଙ୍କୁ ଉଦ୍ଧାର କରିବା ପାଇଁ କଳିଯୁଗରେ ସେ ପତିତପାବନ ବାନା ଉଡାଉଛନ୍ତି । ଯାହାଙ୍କ ପାଖରେ ଜାତି ବଡ ନୁହେଁ, ଜଗତ ବଡ-ମାନବିକ ମୂଲ୍ୟବୋଧ ବଡ, ସେ ହିଁ ଜଗତରନାଥ ଶ୍ରୀଜଗନ୍ନାଥ- ଓଡ଼ିଆ ଜାତିର ଅଜେୟ ଆତ୍ମା । ତାଙ୍କୁ ନେଇ ଏ ଜାତି ଗର୍ବ କରେ । ଏ କଳି ଯୁଗରେ ସେ ହିଁ ଏକମାତ୍ର ସତ୍ୟ ପରଂବ୍ରହ୍ମ-ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ଅନନ୍ୟ । ଭେଦଶୂନ୍ୟ, ବିକାରଶୂନ୍ୟ ସଂହତିଭାବ ସୃଷ୍ଟି କରେ ଶ୍ରଦ୍ଧାଳୁ ଭକ୍ତ ମନରେ ଏହି ମହାପ୍ରସାଦ ସେବନ ଦ୍ୱାରା । ପୁରୀ ଧାମରେ ମହାପ୍ରଭୁଙ୍କ ଅର୍ପିତ ପ୍ରସାଦ ବା ଦ୍ରବ୍ୟ ସ୍ପୃଶ୍ୟାସ୍ପୃଶ୍ୟ ଦୋଷରେ ଦୂଷିତ ହୁଏନାହିଁ କି ଏଠାରେ ବର୍ଣ୍ଣବିଚାର ନାହିଁ, ଉଚ୍ଛିଷ୍ଟାଦି ବିଚାର ନାହିଁ କି ପାପ ନିଷ୍ପାପ ବିଚାର ମଧ ନାହିଁ । ଆବ୍ରାହ୍ମଣଚଣ୍ଡାଳ ସମସ୍ତେ ଏଠି ନିର୍ବିକାର ଚିତ୍ତରେ ମହାପ୍ରଭୁ ଜଗନ୍ନାଥଙ୍କ ମହାପ୍ରସାଦ ସେବନ ପୂର୍ବକ ଉଚ୍ଛିଷ୍ଟ ଗ୍ରହଣ କରି ନିଜକୁ ପରମ ଭାଗ୍ୟବାନ ମନେ କରନ୍ତି ଏବଂ ଅନ୍ୟମାନଙ୍କ ମୁଖରେ ମହାପ୍ରସାଦ ଦେଇ ଦିବ୍ୟାନନ୍ଦ ଅନୁଭବ କରିବା ସଙ୍ଗେ ସଙ୍ଗେ ନିଜକୁ ଅଧିକ ପବିତ୍ର ମଧ ମନେ କରିଥାନ୍ତି । ଏହି ଶ୍ରୀକ୍ଷେତ୍ରରେ ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ସମସ୍ତେ ଏକତ୍ର ଏକ ପାତ୍ରରେ ପାନଭୋଜନ କରିବା ବା ସଂହତି ରକ୍ଷା କରିବା ହେଉଛି ଏ ପୀଠର ପରମ୍ପରା । ଏହି ପରମ୍ପରା ବୌଦ୍ଧ ଧର୍ମ ଓ ଦର୍ଶନ ଦ୍ୱାରା ପ୍ରଭାବିତ । ଏହି ଏକତ୍ୱ ଭାବ, ଭ୍ରାତୃଭାବ ଆମ ଓଡ଼ିଆ ସଂସ୍କୃତିର ମହନୀୟତାକୁ ପ୍ରତିପାଦିତ କରିଥାଏ । ସମଗ୍ର ବିଶ୍ୱରେ ଆମ ସଂସ୍କୃତିର ପରାକାଷ୍ଠା ମହାପ୍ରଭୁ ଜଗନ୍ନାଥଙ୍କ ଯୋଗୁଁ ଆଜି ବିଦିତ ।

ଆମ ସଂସ୍କୃତି ହେଉଛି ଜାତିଭେଦ ବିହୀନ ସଂସ୍କୃତି-ତାହାହିଁ ଜଗନ୍ନାଥ ସଂସ୍କୃତି । ବୁଦ୍ଧରୂପୀ ପତିତପାବନଙ୍କ ନାମରେ ସିଂହଦ୍ୱାର ଗୁମୁଟରେ ଜଗନ୍ନାଥଙ୍କ ପ୍ରତିବିମ୍ବ ଅଙ୍କନ କରାଯାଇ ପ୍ରମାଣ କରାଯାଇଛି ଯେ ବୁଦ୍ଧ-ଜଗନ୍ନାଥ-ପତିତପାବନ ଏକ ଓ ଅଭିନ୍ନ ଓ ତାହା ହିଁ ଶ୍ରୀଜଗନ୍ନାଥଙ୍କ ମୂଳରୂପ । ଅତଏବ ଶ୍ରୀଜଗନ୍ନାଥ ବୁଦ୍ଧରୂପୀ ପତିତପାବନ ହୋଇଥିବାରୁ ତାହାଙ୍କ ଯାତ୍ରାକୁ ପତିତପାବନ ଯାତ୍ରା ବା ରଥଯାତ୍ରା ବୋଲି କୁହାଯାଏ । କବିସମ୍ରାଟ ଉପେନ୍ଦ୍ରଭଞ୍ଜ ଏ ଯାତ୍ରା ସମ୍ପର୍କରେ ତାହାଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ' କାବ୍ୟରେ ଲେଖିଛନ୍ତି-

'ସ୍ନାନ ଯେ ଗୁଣ୍ଡିଚା ବେନି ସ୍ୱୟଂଲୀଳା ଯାର
ପତିତପାବନ ଅର୍ଥେ ପ୍ରାସାଦୁଁ ବାହାର ।'

ଅର୍ଥାତ୍ ପତିତମାନଙ୍କୁ ଉଦ୍ଧାର କରିବା ଉଦ୍ଦେଶ୍ୟରେ ସ୍ନାନ ବା ଗୁଣ୍ଡିଚା ଯାତ୍ରାରେ ଜଗନ୍ନାଥ ମହାପ୍ରଭୁ ପ୍ରାସାଦ ବା ଦେଉଳରୁ ବାହାରିଥାଆନ୍ତି । ଏଠାରେ ପତିତ ଶବ୍ଦର ଅର୍ଥ ହେଉଛି ଜାତି ବର୍ଣ୍ଣ ନିର୍ବିଶେଷରେ ମୁକ୍ତିକାମୀ ପାପୀ(ପତିତ) ମାନଙ୍କୁ ଉଦ୍ଧାର କରିବା ପାଇଁ ପ୍ରଭୁ ଦେଉଳ ବା ପ୍ରାସାଦ ବାହାରକୁ ଆସିଥାନ୍ତି ଅର୍ଥାତ୍



ବ୍ରାହ୍ମଣ ଚଣ୍ଡାଳ ସମସ୍ତ ମୁକ୍ତିକାମୀ ପାପୀଙ୍କର ଉଦ୍ଧାର ନିମନ୍ତେ ପ୍ରଭୁ ଘୋଷଯାତ୍ରା କରିଥାନ୍ତି । ଅତଏବ ବୁଦ୍ଧରୂପୀ ପତିତପାବନ ଜଗନ୍ନାଥଙ୍କର ପ୍ରଭାବ ଓ ପ୍ରତିଷ୍ଠା ପୁରୀ ଶ୍ରୀମନ୍ଦିରରେ ବହୁକାଳରୁ ରହିଥିଲା । ଏବେ ମଧ୍ୟ ଶ୍ରୀମନ୍ଦିରରେ ଏହି ମାନବ ଧର୍ମର ଉଦାରତା, ଦୈନନ୍ଦିନ ନୀତି, ବେଶ, ବିଭିନ୍ନ ଯାତ୍ରା, ବିଧିବିଧାନ ଭିତରେ ପରିଲକ୍ଷିତ ହୁଏ । ଅତଏବ ଏହି ଜଗନ୍ନାଥ ଧାମ ବା ପୀଠ ସମସ୍ତ ଜାତିର ଲୋକମାନଙ୍କ ପାଇଁ ଶ୍ରୀମନ୍ଦିର ପ୍ରତିଷ୍ଠା ସମୟରୁ ଉନ୍ମୁକ୍ତ ରହିଥିଲା ।

ଇତିହାସରୁ ଜଣାଯାଏ ଯେ, ଗଙ୍ଗବଂଶୀ ରାଜା ମଦନ ମହାଦେବଙ୍କଠାରୁ ପ୍ରତାପରୁଦ୍ରଦେବଙ୍କ ପର୍ଯ୍ୟନ୍ତ ବିଭିନ୍ନ ସମୟରେ ପୁରୀରୁ ବୌଦ୍ଧମାନଙ୍କୁ ବିତାଡିତ କରାଯାଇଥିଲେ ମଧ୍ୟ ପୁରୀ ଶ୍ରୀମନ୍ଦିର ପରିସର ମଧ୍ୟରୁ ବୌଦ୍ଧ ଉପାସନା ଓ ବୌଦ୍ଧଧର୍ମର ପ୍ରଭାବକୁ ସମ୍ପୂର୍ଣ୍ଣ ଲୋପ କରାଯାଇପାରିନଥିଲା । ପରବର୍ତ୍ତୀ ଖ୍ରୀଷ୍ଟୀୟ ଅଷ୍ଟମ ଶତାବ୍ଦୀରେ ଭୋଇବଂଶୀୟ ରାଜା ଦ୍ୱିତୀୟ ରାମଚନ୍ଦ୍ରଦେବଙ୍କ ଚରିତ୍ରରେ ଏକ ଆରୋପିତ ଦୁର୍ବଳତାର ସୁଯୋଗ ନେଇ ଉଚ୍ଚବର୍ଗର ଲୋକମାନେ ପ୍ରଥମଥର ପାଇଁ ଶ୍ରୀଜଗନ୍ନାଥଙ୍କର ଏକ ସ୍ୱତନ୍ତ୍ର ପ୍ରତିବିମ୍ବ ପତିତପାବନ ସିଂହଦ୍ୱାର ଗୁମୁଟରେ ସ୍ଥାପନା କରାଇ ନୀଚଜାତିଙ୍କର ସେବାପୂଜା ଓ ଦର୍ଶନ ଅଧିକାର ସେହିଠାରେ ସୀମିତ କରାଇଦେଲେ । ପରବର୍ତ୍ତୀ କାଳରେ ଆଇନ ବଳରେ ଏମାନଙ୍କୁ ମନ୍ଦିର ଭିତରକୁ ପ୍ରବେଶ ଅଧିକାର ସୁଯୋଗ ମିଳିଲା । କାରଣ ବହୁ ପୁରାତନ କାଳରୁ ଓଡ୍ର ବା ଓଡ୍ରଦେଶ ଥିଲା ପତିତଖଣ୍ଡ ବା ବ୍ରାତ୍ୟଖଣ୍ଡ । ଏହି ଆର୍ଯ୍ୟେତର ଜାତିର ବା ପତିତ ଜାତିର ଦେବତା ହିଁ ପ୍ରଭୁ ପତିତପାବନ-ବୁଦ୍ଧ-ଜଗନ୍ନାଥ । ତେଣୁ ମୂଳରୁ ଜଗନ୍ନାଥ ପତିତମାନଙ୍କର ଦେବତା ଏବଂ ଓଡ୍ରଦେଶ ପତିତଖଣ୍ଡ ହୋଇଥିବାରୁ ଏହିଖଣ୍ଡର ପାବନତ୍ୱର ପ୍ରତୀକ ହେଉଛନ୍ତି ସ୍ୱୟଂପ୍ରଭୁ ଜଗନ୍ନାଥ । ଅତଏବ ଜଗନ୍ନାଥ ପ୍ରାରମ୍ଭରୁ ଅସ୍ପୃଶ୍ୟ-ଅଛୁଁବ ବା ପଞ୍ଚମ ବର୍ଗର ଲୋକଙ୍କ ଦ୍ୱାରା ଶ୍ରୀମନ୍ଦିରରେ ପ୍ରତିଷ୍ଠା ପାଇ ପୂଜିତ ହୋଇଆସୁଛନ୍ତି । ପତିତପାବନ-ଜଗନ୍ନାଥ ସେହିମାନଙ୍କର ଦେବତା । ସେଇଥିପାଇଁ ବର୍ଷରେ ଥରେ ପତିତମାନଙ୍କୁ ଉଦ୍ଧାରିବା ପାଇଁ ତାଙ୍କର ଏଯାତ୍ରା-ପତିତପାବନ ଯାତ୍ରା ବା ଘୋଷଯାତ୍ରା ।

କଳିଯୁଗର ତ୍ରାଣକର୍ତ୍ତା ଭଗବାନ ବୁଦ୍ଧ ଅସହାୟ ମାନବର ମନରୁ ଜରା, ବ୍ୟାଧି ଓ ମୃତ୍ୟୁର ଭୟ ଦୂରକରି ମାନବ ଜୀବନରେ ନୂଆ ଦିଗ୍‌ଦର୍ଶନ ପ୍ରଦାନ କରିବାକୁ ନିଜ ଧର୍ମର ପ୍ରଚାର କରିଥିଲେ । ଏଣେ ଧର୍ମଜଗତରେ ଘଟୁଥିବା ଗ୍ଲାନିକୁ ଦୂର କରିବା ସଙ୍ଗେ ସଙ୍ଗେ ଦୁଷ୍ଟମାନଙ୍କୁ ସଂହାର କରି ସନ୍ଥମାନଙ୍କୁ ପାଳନ କରିବା ଶ୍ରୀକୃଷ୍ଣଙ୍କ ଦ୍ୱାପର ଯୁଗରେ ଆବିର୍ଭାବର ମୂଳଲକ୍ଷ୍ୟ ଥିଲା । କାରଣ ମହାଭାରତ ଯୁଗର ଘଟଣାବଳୀ ଦ୍ୱାପର ଓ କଳିଯୁଗ ସନ୍ଧିକ୍ଷଣରେ ହିଁ ଘଟିଥିଲା । ଅତଏବ ଦ୍ୱାପର ଓ କଳି ଯୁଗରେ ଏହି ଦୁଇ ମହାପୁରୁଷଙ୍କର ଆବିର୍ଭାବ ଓ ଲକ୍ଷ୍ୟରେ ଭିନ୍ନତା ରହିଥିଲେ ମଧ୍ୟ ତାହାର ଏକ ସମନ୍ୱୟ ମହାପ୍ରଭୁ ଜଗନ୍ନାଥଙ୍କ ମାଧ୍ୟମରେ ସମ୍ଭବ ହୋଇପାରିଛି । ଦ୍ୱାପର ଯୁଗର ଶ୍ରୀକୃଷ୍ଣ ଓ କଳିଯୁଗର ବୁଦ୍ଧଙ୍କର ଭିନ୍ନଭିନ୍ନ ଉଦ୍ଦେଶ୍ୟକୁ ଶ୍ରୀଜଗନ୍ନାଥଙ୍କ ମାଧ୍ୟମରେ ଖ୍ରୀଷ୍ଟୀୟ ପଞ୍ଚଦଶ ଶତାବ୍ଦୀର ଯଶସ୍ୱୀ କବି ସାରଳା ଦାସ ତାଙ୍କ ମହାଭାରତରେ ମଧ୍ୟ ଏଭଳି ସମନ୍ୱୟ ଆଣିପାରିଛନ୍ତି । ଯେପରି-

'ବଉଦ ରୂପେ ବିଜେ ଶ୍ରୀନୀଳକନ୍ଦରେ,<br>
ଯେକମୂର୍ତ୍ତି ଚତୁର୍ଦ୍ଧାରୂପ ଧରିଛନ୍ତି ଦାମୋଦରେ' ।

ଯେଉଁ ବିବର୍ତ୍ତନଧାରା ମଧ୍ୟରେ ଭଗବାନ ବୁଦ୍ଧ ଓ ଭଗବତ ଧର୍ମର ଉପାସ୍ୟ ଦେବତା ଶ୍ରୀକୃଷ୍ଣଙ୍କ ମଧ୍ୟରେ ଏକ ଯୁଗାନ୍ତକାରୀ ସମନ୍ୱୟ ଅଣାଯାଇ ଜଗନ୍ନାଥ ଧର୍ମ ଉପାସନା ସୃଷ୍ଟି କରାଗଲା, ତାହାର ପ୍ରାରମ୍ଭରେ ଇନ୍ଦ୍ରଭୂତିଙ୍କ ଉପାସ୍ୟ ଏକ ମୂର୍ତ୍ତି ଓ ପ୍ରତୀକ ବିଶିଷ୍ଟ ଜଗନ୍ନାଥ ରୂପୀ ବୁଦ୍ଧଙ୍କର ମୂର୍ତ୍ତିକଳ୍ପନା କରାଯାଇଥିଲା । ତେଣୁ ପ୍ରାରମ୍ଭରେ କେବଳ ଏକ ମୂର୍ତ୍ତି ବିଶିଷ୍ଟ ଜଗନ୍ନାଥ ରୂପୀ ବୁଦ୍ଧ ଓ ତାହାଙ୍କ ଧର୍ମଦଣ୍ଡ ବା ଚକ୍ରରାଜ ସୁଦର୍ଶନଙ୍କ ପୂଜା ଉପାସନା ହିଁ କରାଯାଉଥିଲା । ପରବର୍ତ୍ତୀ ଅବସ୍ଥାରେ ସମନ୍ୱୟର ପ୍ରକ୍ରିୟା ମାଧ୍ୟମରେ ଭାଗବତ ଧର୍ମର ଉପାସ୍ୟ ଶ୍ରୀକୃଷ୍ଣଙ୍କୁ ବୁଦ୍ଧଙ୍କ ସହିତ ଚିହ୍ନିତ କରାଇଲାବେଳେ ବଳଭଦ୍ର ଓ ସୁଭଦ୍ରାଙ୍କର ମୂର୍ତ୍ତିକଳ୍ପନା କରାଯାଇ ଚତୁର୍ଦ୍ଧାମୂର୍ତ୍ତିଙ୍କର ପୂଜା ଉପାସନାର ବ୍ୟବସ୍ଥା କରାଗଲା । ସମ୍ଭବତଃ ଗଙ୍ଗବଂଶୀ ଚୋଡଗଙ୍ଗ ଦେବ ବା ଅନଙ୍ଗଭୀମଦେବଙ୍କ ରାଜତ୍ୱ କାଳରେ ବଡ଼ଦେଉଳ ବା ବର୍ତ୍ତମାନର ମନ୍ଦିର ନିର୍ମାଣ ହେବା ପରେ ଏକ ମୂର୍ତ୍ତି ଚତୁର୍ଦ୍ଧାମୂର୍ତ୍ତିରେ ପରିଣତ ହୋଇ ରତ୍ନସିଂହାସନରେ ପୂଜା ପାଇ ଆସୁଛନ୍ତି । କାରଣ ତା ପୂର୍ବରୁ ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ସୋମବଂଶୀ ରାଜା ଯଯାତି କେଶରୀ ତାଙ୍କ ରାଜତ୍ୱର ଏଗାର ଅଙ୍କରେ ବୁଦ୍ଧରୂପୀ ଜଗନ୍ନାଥଙ୍କୁ ଝାଡଖଣ୍ଡରୁ ଅନୁସନ୍ଧାନ କରି ଆଣି ପୁରୀ ସମୁଦ୍ର କୂଳରେ ଅଠତିରିଶ ହାତର ପଟୋଳ(ମନ୍ଦିର) ନିର୍ମାଣ ପୂର୍ବକ ତହିଁରେ ପ୍ରତିଷ୍ଠା କରାଇଥିଲେ । ନୂତନ ଭାବରେ ଜଗନ୍ନାଥ ପ୍ରତିଷ୍ଠିତ ହୋଇଥିଲେ ମଧ୍ୟ ତାହାଙ୍କ ପୂଜା ଉପାସନାରେ ବୌଦ୍ଧଧର୍ମର ପ୍ରଭାବ ଓ ପରମ୍ପରା ଅକ୍ଷୁଣ୍ଣ ରହିଥିଲା । ସେତେବେଳେ ଜଗନ୍ନାଥ ଏକ ମୂର୍ତ୍ତି ବିଶିଷ୍ଟ ଦେବତା ଥିଲେ-ଚତୁର୍ଦ୍ଧାମୂର୍ତ୍ତିରେ ପୂଜା



ପାଉଥିବାର କୌଣସି ପ୍ରମାଣ ମିଳୁନାହିଁ । କୁହାଯାଏ ଯେ ନବକଳେବର ବେଳେ କେବଳ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବ୍ରହ୍ମ ହିଁ ପରିବର୍ତ୍ତନ କରାଯାଏ । ଏବେ ମଧ୍ୟ ଓଡ଼ିଶାର ବିଭିନ୍ନ ସ୍ଥାନରେ ଏକ ମୂର୍ତ୍ତି ଜଗନ୍ନାଥ ଦଧିବାମନ ରୂପରେ ପୂଜା ପାଇ ଆସୁଛନ୍ତି । ସ୍କନ୍ଦପୁରାଣ, ଉତ୍କଳଖଣ୍ଡରେ ଉଲ୍ଲେଖ ଅଛି ଯେ, ମହୋଦଧିରେ ଗୋଟିଏ ମହାବୃକ୍ଷ ଦାରୁ ରୂପେ ଭାସି ଭାସି ଆସିଥିଲା । ରାଜା ଇନ୍ଦ୍ରଦ୍ୟୁମ୍ନ ସେହି ମହାବୃକ୍ଷ ଦାରୁକୁ ଉଦ୍ଧାର କରି ଆଣି ପ୍ରଥମେ ଏକ ମୂର୍ତ୍ତି ଜଗନ୍ନାଥଙ୍କ ବିଗ୍ରହ ନିର୍ମାଣ କରିଥିଲେ । ପରବର୍ତ୍ତୀ କାଳରେ ଅନ୍ୟ ବିଗ୍ରହମାନଙ୍କର ନିର୍ମାଣ ଓ ପ୍ରତିଷ୍ଠା ହେଲା । ଏହି ନିର୍ମାଣ କେବେ ହୋଇଥିଲା ତାହା ନିର୍ଦ୍ଦିଷ୍ଟ ଭାବେ କୁହାଯାଇ ନପାରିଲେ ମଧ୍ୟ ଗଙ୍ଗବଂଶୀ ରାଜାଙ୍କ ସମୟରେ ଏହି ଚତୁର୍ଦ୍ଧାମୂର୍ତ୍ତି ବିଗ୍ରହଙ୍କର ପ୍ରତିଷ୍ଠା ହୋଇଥିଲା ।

ଗୌତମ ବୁଦ୍ଧଙ୍କର ଧର୍ମୋପଦେଶର ଯାଦୁକରି ପ୍ରଭାବରେ ସମଗ୍ର ଓଡ୍ର ବା ଓଡ୍ରଦେଶ ବୌଦ୍ଧଧର୍ମକୁ ନିଜର ରାଷ୍ଟ୍ରଧର୍ମ ରୂପେ ଗ୍ରହଣ କରିନେଇଥିଲା । ଏପରିକି ସେତେବେଳେ ବୌଦ୍ଧଧର୍ମ ସମଗ୍ର ଉତ୍କଳ, କଳିଙ୍ଗ, ତୋଷଳ (କଙ୍ଗୋଦ), କୋଶଳ ଏବଂ ଓଡ୍ରଖଣ୍ଡରେ ବ୍ୟାପକ ଓ ନିରୁଙ୍କୁଶ ଭାବେ ନିଜର ପ୍ରଭାବ ବିସ୍ତାର କରିଥିଲା । ଏହି ଅଞ୍ଚଳଗୁଡିକ ସେତେବେଳେ ମୁଖ୍ୟତଃ ନାଗବଂଶୀ ଓ ମୁଣ୍ଡାରୀ ଭାଷାଭାଷୀ ଶବର ତଥା ଅନ୍ୟାନ୍ୟ ବନଜାତି ଲୋକଙ୍କର ପ୍ରଧାନ ଆବାସସ୍ଥଳୀ ଥିଲା । ସେହି ସମୟରେ ହିଁ ନାଗ ଓ ମୁଣ୍ଡାରୀ ଭାଷାଭାଷୀ ଶବରମାନଙ୍କ ପ୍ରତୀକ ସ୍ୱରୂପ ଓଡ଼ିଶାର ପ୍ରଭୁ ଜଗନ୍ନାଥ ମହାପ୍ରଭୁ ଆବିର୍ଭୂତ ହୋଇଥିବା କଥା ଇତିହାସରୁ ଜଣାଯାଏ । ମହାପ୍ରଭୁ ଜଗନ୍ନାଥଙ୍କର ସର୍ପାକୃତି ମୁଖମଣ୍ଡଳ, ଚକ୍ଷୁ ଓ ମୂର୍ତ୍ତି ଗଠନରେ ସର୍ପ ମୁଖାକୃତିର ପ୍ରତିବିମ୍ବ ତାହା ହିଁ ସୂଚିତ କରାଏ । ପ୍ରମାଣ ସ୍ୱରୂପ ଆଜି ପର୍ଯ୍ୟନ୍ତ ନବକଳେବର ସମୟରେ ଜଗନ୍ନାଥଙ୍କର ମୁଖମଣ୍ଡଳ ନିର୍ମାଣ କରିବା ସମୟରେ ସର୍ପମୁଖର ପ୍ରତିବିମ୍ବକୁ ଅବଲମ୍ବନ କରିବାର ଏକ ନିର୍ଦ୍ଦିଷ୍ଟ ବିଧି ପାଳନ କରାଯାଇଥାଏ ଓ ଏଇଥିପାଇଁ ସେତେବେଳେ ବାସ୍ତୁପୂଜା ଅର୍ଥାତ୍ ଅଷ୍ଟକୁଳା ନାଗ ଓ ନାଗୁଣୀ ପୂଜାର ବିଧି ମଧ୍ୟ ରକ୍ଷା କରାଯାଇଆସୁଛି । ମହାପ୍ରଭୁ ଜଗନ୍ନାଥଙ୍କ କଳେବରକୁ ଲକ୍ଷ୍ୟକଲେ ଜଣାଯାଏ ଯେ, ଏହା ଏକ ସର୍ପ ମୁଖମଣ୍ଡଳର ପ୍ରତିବିମ୍ବ ହୋଇଥିବାସ୍ଥଳେ ମୁଖମଣ୍ଡଳ ତଳେ ରହିଥିବା ଗଣ୍ଡି ଶବରମାନଙ୍କ ପୂଜିତ ଖମ୍ବ ପୂଜାର ପ୍ରତୀକ ହୋଇରହିଛି । ମୂର୍ତ୍ତି କଳ୍ପନାରେ ଶବରମାନଙ୍କ ଖମ୍ବ ବା ଖମ୍ବେଶ୍ୱରୀ ପୂଜା ସହିତ ନାଗବଂଶର ଲାଞ୍ଛନ ସର୍ପ ମୁଖମଣ୍ଡଳର ସମନ୍ୱୟ ରକ୍ଷା କରାଯାଇ ଯେଉଁ ସମ୍ପୂର୍ଣ୍ଣ ଜଗନ୍ନାଥ ମୂର୍ତ୍ତି ଗଠନ କରାଗଲା, ତାହା ବସ୍ତୁତଃ ଓଡ୍ରଦେଶର ଦୁଇପ୍ରଧାନ ଅଧିବାସୀ ନାଗ ଓ ଶବରମାନଙ୍କ ଐକ୍ୟର ପ୍ରତୀକ । ଏହିପରି ଏକ ସମନ୍ୱୟ ରକ୍ଷାକାରୀ ମୂର୍ତ୍ତି କଳ୍ପନା ବୌଦ୍ଧଧର୍ମୀମାନଙ୍କ ଦ୍ୱାରା ହିଁ ସମ୍ଭବ ହୋଇପାରିଥିଲା । ତେଣୁକରି ଆମେ ଜଗନ୍ନାଥ ଶବ୍ଦର ପ୍ରଥମ ଉଲ୍ଲେଖ ବୌଦ୍ଧଧର୍ମ ଅନ୍ତର୍ଗତ ବଜ୍ରଯାନର ପ୍ରବକ୍ତା ଇନ୍ଦ୍ରଭୂତି (ଖ୍ରୀ:୭୧୭)ଙ୍କ 'ଜ୍ଞାନସିଦ୍ଧି' ଗ୍ରନ୍ଥରୁ ପାଉ । ଇନ୍ଦ୍ରଭୂତିଙ୍କ ଏହି ରଚନାରୁ ଜଣାଯାଏ ଯେ ନାଗା ଓ ଶବରମାନଙ୍କ ମଧ୍ୟରେ ଭାଗବତ ଓ ଧର୍ମଗତ ଐକ୍ୟ ପ୍ରତିଷ୍ଠା କରିବା ପାଇଁ ଏକ ସମନ୍ୱୟ ରକ୍ଷାକାରୀ ମୂର୍ତ୍ତି କଳ୍ପନା କରି ତାହାଙ୍କୁ ଜୀନମାନଙ୍କର ଶ୍ରେଷ୍ଠ ଜଗନ୍ନାଥ ବା ବୁଦ୍ଧ ରୂପେ ପ୍ରଥମଥର ପାଇଁ ଲୋକଲୋଚନକୁ ଆଣିଲେ । ଏହା ପୂର୍ବରୁ ଜଗନ୍ନାଥ ଶବ୍ଦର ଉଲ୍ଲେଖ ଅନ୍ୟ କୌଣସି ସାହିତ୍ୟ ବା ଅଭିଲେଖରୁ ମିଳେନାହିଁ । ଶବରମାନଙ୍କ ଆରାଧଦେବତା ଜଗନ୍ତ ସହିତ ନାଗଧର୍ମୀ ଓ ନାଗମାନଙ୍କର ସମନ୍ୱୟ ରକ୍ଷା କରିବା ପାଇଁ ବୌଦ୍ଧଧର୍ମୀମାନେ ଓ ବଜ୍ରଯାନର ପ୍ରବକ୍ତା ଇନ୍ଦ୍ରଭୂତି ଜଗନ୍ନାଥ ଶବ୍ଦର ପରିକଳ୍ପନା କରି ଓଡ଼ିଶାର ସମଗ୍ର ଜନଜାତିଙ୍କ ମଧ୍ୟରେ ଭାବଗତ ଓ ଧର୍ମଗତ ଐକ୍ୟ ପ୍ରତିଷ୍ଠା କରିପାରିଛନ୍ତି । ସେମାନଙ୍କ ଏହି ସମନ୍ୱୟ ରକ୍ଷାକାରୀ ମୂର୍ତ୍ତିକଳ୍ପନା ଓ ଜଗନ୍ନାଥ ନାମକରଣ ଓଡ଼ିଶାବାସୀଙ୍କୁ ସମଗ୍ର ପୃଥିବୀରେ ଐକ୍ୟବଦ୍ଧ ଜାତି ରୂପେ ଚିହ୍ନିତ ଓ ଉପସ୍ଥାପିତ କରାଇବା ସଙ୍ଗେ ସଙ୍ଗେ ଜଗନ୍ନାଥରୂପୀ ବୁଦ୍ଧଙ୍କୁ ସର୍ବଜନମାନ୍ୟ ରାଷ୍ଟ୍ରଦେବତାର ସ୍ୱୀକୃତି ଓ ସମ୍ମାନ ଆଣିଦେଇଥିଲା ।

ମହାପ୍ରଭୁ ଜଗନ୍ନାଥଙ୍କର ମୂଳରୂପ ହେଉଛି ବୌଦ୍ଧ । ତେଣୁ ତାହାଙ୍କ ଶ୍ରେଷ୍ଠ ଦୁଇଟି ଅନୁଷ୍ଠାନ ସ୍ନାନ ଓ ରଥଯାତ୍ରାରେ ବୌଦ୍ଧ ପ୍ରଭାବ ପରିଲକ୍ଷିତ ହୁଏ । ସ୍ନାନଯାତ୍ରା ଭଳି ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ମଧ୍ୟ ବୌଦ୍ଧପୂଜା ବିଧାନର ପ୍ରଧାନ ଅଂଶ । ଖ୍ରୀଷ୍ଟୀୟ ପଞ୍ଚମ ଶତାବ୍ଦୀର ପ୍ରାରମ୍ଭରେ ଚୀନ୍ ପରିବ୍ରାଜକ ଫାହିୟାନ ଖୋଟାନରେ ଅନୁଷ୍ଠିତ ରଥଯାତ୍ରାର ଯେଉଁ ବିବରଣୀ ଲିପିବଦ୍ଧ କରିଯାଇଛନ୍ତି, ତାହା ଆଜିସୁଦ୍ଧା ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ସହିତ ମେଳ ଖାଉଛି । ତେଣୁ ଏହାକୁ ବୌଦ୍ଧ ଅନୁଷ୍ଠାନ ଭାବରେ ସେ ଗ୍ରହଣ କରିଛନ୍ତି । କାରଣ ଆଷାଢ ମାସରେ ରଥଯାତ୍ରା ହେଉଥିବାର ଓ ରଥ ଆଗରେ ରାଜା ଆସି ଛେରାପହଁରା କରୁଥିବାର ଫାହିୟାନ ଲେଖିଯାଇଛନ୍ତି । ତେଣୁ ମହାପ୍ରଭୁ





ଜଗନ୍ନାଥଙ୍କ ରଥଯାତ୍ରା ଏକ ବୌଦ୍ଧ ଅନୁଷ୍ଠାନ । ପୁରାତତ୍ତ୍ୱବିତ୍ ରାଜେନ୍ଦ୍ର ଲାଲ ମିତ୍ରଙ୍କ ମତରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିଶ୍ୱପ୍ରସିଦ୍ଧ ରଥଯାତ୍ରା ବୁଦ୍ଧଦେବଙ୍କ ଜନ୍ମୋତ୍ସବ ପାଳନର ସ୍ମୃତି ମାତ୍ର । ତେଣୁ ଶ୍ରୀକ୍ଷେତ୍ର ପୁରୀର ଏ ରଥଯାତ୍ରା ସହିତ ଆଦିବାସୀ ଓ ବୌଦ୍ଧମାନଙ୍କ ପ୍ରଚଳିତ ରଥଯାତ୍ରାର ସାମଞ୍ଜସ୍ୟ ରହିଛି । ଏହି ଉଭୟ ରଥଯାତ୍ରାର ପ୍ରଭାବ ପୁରୀ ଜଗନ୍ନାଥଙ୍କ ରଥଯାତ୍ରା ଉପରେ ପଡିଥିବା ସମ୍ଭବପର ।

ଆଦିମ ଅଧିବାସୀ ଶବରମାନଙ୍କ ଭିତରେ ବୃକ୍ଷପୂଜା ଉପାସନା ପ୍ରଚଳିତ ଥିଲା । ବଣଜଙ୍ଗଲରେ ବାସ କରୁଥିବା ଆଦିବାସୀ ଅଧିବାସୀମାନେ ପ୍ରଥମେ ଗୋଟିଏ ଦେବତାର ପରିକଳ୍ପନା କଲେ ଓ ତାହା ଆଦି ଦେବତା ରୂପେ ପୂଜା ପାଇଲେ । ଏହି ଦେବତା ବୃକ୍ଷ ମଧ୍ୟରେ ବାସ କରିଥାନ୍ତି ବୋଲି ବିଶ୍ୱାସ କରି ଏମାନେ ବୃକ୍ଷପୂଜା ବା ଉପାସନା କଲେ । ଏପରିକି ବୃକ୍ଷର କୋରଡରେ ଥିବା ଲୁକ୍କାୟିତ ଦିବ୍ୟସତ୍ତାକୁ ଏମାନେ ବିଶ୍ୱାସ କଲେ । ନିର୍ବାଚିତ ବୃକ୍ଷ ଓ ପଥରଖଣ୍ଡକୁ ଏକତ୍ର କରି ଏମାନେ ପ୍ରାୟତଃ ଗାଁ ବା ବସ୍ତିମୁଣ୍ଡରେ ରଖି ପୂଜା କରୁଥିଲେ । ଅନେକ ସମୟରେ କୌଣସି ସୁସ୍ଥ ବୃକ୍ଷର କୋରଡରେ ଏହି ପଥରଗୁଡିକୁ ସ୍ଥାପନ କରି ଉଭୟଙ୍କୁ ଏକତ୍ର ପୂଜା କରିବାର ଚଳଣି ମଧ୍ୟ ରହିଆସିଥିଲା । ଖାଦ୍ୟ ଅନ୍ୱେଷଣରେ ବିଭିନ୍ନ ସମୟରେ ସ୍ଥାନ ପରିବର୍ତ୍ତନ କରିବାକୁ ପଡୁଥିବାରୁ ଏବଂ ସବୁ ସମୟରେ ନିର୍ଦ୍ଧାରିତ ସଙ୍କେତ ବିଶିଷ୍ଟ ବୃକ୍ଷ ମିଳୁନଥିବାରୁ କାଳକ୍ରମେ ଏହି ବୃକ୍ଷପୂଜା ଖମ୍ବ ପୂଜାର ରୂପ ଗ୍ରହଣ କଲା । ବୃକ୍ଷ ପରିବର୍ତ୍ତେ ସେମାନେ କାଠକାଟି ଖମ୍ବ ବା ଖୁଣ୍ଟ ଆକୃତିରେ ପୂଜା କରିବାକୁ ଆରମ୍ଭ କଲେ । ଏହି ଖମ୍ବ ବା ଖୁଣ୍ଟଗୁଡିକୁ ସେମାନେ ପୂର୍ବପରି ବସ୍ତି କିମ୍ବା ଘର ବାହାରେ ପୋତି ସଂସ୍ଥାପନ କରୁଥିଲେ ଓ ତାହା ସହିତ ମଧ୍ୟ ପୂର୍ବପରି ପଥରଗୁଡିକ ପୋତି ପୂଜା କରୁଥିଲେ । ଏହି ଦାରୁ ନିର୍ମିତ ଖମ୍ବଗୁଡିକ ଏକ ନିର୍ଦ୍ଦିଷ୍ଟ ସମୟରେ କ୍ଷୟ ହୋଇଯାଉଥିବାରୁ ସେ ସ୍ଥାନରେ ଏମାନେ ନୂତନ ଖମ୍ବ ସ୍ଥାପନ କରୁଥିଲେ । ସେମାନେ ଏହି ନୂତନ ଖମ୍ବଟିକୁ ଜୀବନ୍ୟାସ ଦେବାକୁ ଯାଇ ତା ମୂଳରେ ପଥର ବା ଲୁହା ଓ ପରବର୍ତ୍ତୀ କାଳରେ ପଞ୍ଚଧାତୁକୁ ଜୀବନ୍ୟାସ ସ୍ୱରୂପ ଖମ୍ବ ମୂଳରେ ପୋତୁଥିଲେ । ଏ କାର୍ଯ୍ୟଟି ଅତି ଗୋପନୀୟ ଭାବେ କୌଣସି ଅବୋଧ୍ୟ ମନ୍ତ୍ର ଉଚ୍ଚାରଣ ସହିତ ନିର୍ବାଚିତ ପୂଜକମାନେ କରୁଥିଲେ । ଏହି ଅବସରରେ ସମସ୍ତ ବସ୍ତି ବା ଗ୍ରାମ ଉତ୍ସବ-ମୁଖର ହୋଇ ଉଠୁଥିଲା । ଆଦିବାସୀମାନଙ୍କ ଧର୍ମରେ ଥିବା ଏହି ପଦ୍ଧତି ବୌଦ୍ଧଧର୍ମରେ ମଧ୍ୟ ଦେଖିବାକୁ ମିଳିଥାଏ । ଚୀନର ବେଜିଂଠାରେ ଏକ ବୁଦ୍ଧମୂର୍ତ୍ତିର ସଂସ୍ଥାପନ ବେଳେ ତାହାଙ୍କ ବକ୍ଷସ୍ଥଳରେ ଥିବା କୋଟରରେ ବ୍ରହ୍ମ ପ୍ରତିଷ୍ଠା କରାଯାଉଥିବା କଥା ପ୍ରଫେସର ପ୍ରହ୍ଲାଦ ପ୍ରଧାନ ଉଲ୍ଲେଖ କରିଛନ୍ତି । ଆଦିବାସୀମାନଙ୍କ ଏହି ପ୍ରଥାଟି ବୌଦ୍ଧଧର୍ମକୁ ପ୍ରଭାବିତ କରିଥିଲା । ଆଦିମ ଅଧିବାସୀମାନଙ୍କର ବୃକ୍ଷ ବା ଖମ୍ବ ବା ଦାରୁଦେବତା ବିବର୍ତ୍ତିତ ହୋଇ ଜଗନ୍ନାଥ ମୂର୍ତ୍ତି କଳ୍ପନାରେ ପୂର୍ଣ୍ଣତ୍ୱ ଲାଭ କରିଛି । ଆଦିବାସୀମାନଙ୍କ ଭିତରେ ପ୍ରଚଳିତ ମାନ୍ୟମକୋଣ୍ଡାର ଠାକୁରାଣୀ ଯାତ୍ରା, ଜାଲିଆଙ୍କ ଯାତ୍ରା ଓ କାମ୍ପିଲ୍ୟମ୍ମାଙ୍କ ଯାତ୍ରାର ପ୍ରଭାବ ପୁରୀ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରାରେ ପରିଲକ୍ଷିତ ହୁଏ ।

ସୋମବଂଶୀ ଯଯାତିକେଶରୀ ସୋନପୁରରୁ ଦିଅଁମାନଙ୍କୁ ଉଦ୍ଧାର କରି ଆଣି ନବକଳେବର କରାଇ ପୁରୀ ଶ୍ରୀକ୍ଷେତ୍ରର ଗୁଣ୍ଡିଚା ମନ୍ଦିର ବେଢାରେ ୩୮ ହାତର ପଟୋଳ(ଦେଉଳ) ନିର୍ମାଣ କରି ଶ୍ରୀଜୀଉଙ୍କୁ ବିଜେ କରାଇଥିଲେ ଓ ସେହିଦିନଠାରୁ ରଥଯାତ୍ରା ହୋଇଆସୁଥିବା ସମ୍ଭବପର । ସୋମବଂଶୀ ଯଯାତିକେଶରୀଙ୍କ ସମୟରେ ବଡଦାଣ୍ଡର ବଳଗଣ୍ଡିଠାରେ ମାଳିନୀ ନଦୀ ପ୍ରବାହିତ ହେଉଥିବାରୁ ଛଅ ରଥ ନିର୍ମାଣ କରାଯାଉଥିଲା ଏବଂ ବୀରନରସିଂହଦେବ ଓରଫ ପ୍ରଥମ ଭାନୁଦେବ(ଖ୍ରୀ:୧୨୬୪-୧୨୭୮) କିମ୍ବା ଦ୍ୱିତୀୟ ନରସିଂହଦେବ (ଖ୍ରୀ:୧୨୭୮-୧୩୦୭)ଙ୍କ ସମୟରେ ଏହି ମାଳନି ନଦୀ ବା ଶରଧାବାଲିକୁ ପୋତିଦେବା ଫଳରେ ଛ'ରଥ ପରିବର୍ତ୍ତେ ତିନିରଥ ନର୍ମିତ ହେଲା । ସେହି ବର୍ଷଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଘୋଷଯାତ୍ରା ବେଳେ ନିର୍ମିତ ତିନିରଥରେ ଜଗନ୍ନାଥଙ୍କ ସମେତ ଚତୁର୍ଦ୍ଧାମୂର୍ତ୍ତି ଗୁଣ୍ଡିଚା ଘରକୁ ବିଜେ କରି ଦଶମୀ ଦିନ ବାହୁଡି ଆସୁଛନ୍ତି ଏବଂ ସମସ୍ତ ବିଧିବିଧାନ ସମାପ୍ତ କରି ଦ୍ୱାଦଶୀରେ ନୀଳାଦ୍ରିକୁ ବିଜେ କରୁଛନ୍ତି ।

ବରିଷ୍ଠ ପ୍ରାଧ୍ୟାପକ, ଓଡ଼ିଆ ବିଭାଗ,
ବି.ଜେ.ବି.(ସ୍ୱୟଂଶାସିତ)ମହାବିଦ୍ୟାଳୟ,
ଭୁବନେଶ୍ୱର-୭୫୧୦୧୪



# ଶ୍ରୀଜଗନ୍ନାଥ ଚେତନା ଓ ଭକ୍ତକବି ବଳରାମ ଦାସ

ଡକ୍ଟର ତ୍ରିନାଥ ପଟ୍ଟନାୟକ

ଭାବକୁ ନିକଟ ସେହୁ ଅଭାବକୁ ଦୂର । ଯୁକ୍ତି କଲେ କିମ୍ବା ମନରେ ସନ୍ଦେହ ଆଣିଲେ ଭଗବାନ କେବେହେଲେ ସମ୍ମୁଖକୁ ଆସନ୍ତି ନାହିଁ । ଭକ୍ତ ଓ ଭଗବାନଙ୍କର ସମ୍ପର୍କ ଏକ ଅଲୌକିକ ଭାବବେଶର କଥା ସୂକ୍ଷ୍ମରାଜ୍ୟର ତତ୍ତ୍ୱ । ମୁଣ୍ଡରେ ଛାତିରେ ଚିତା ତିଳକ କାଟି ଭେକ ଧାରଣ କରି ଧାର୍ମିକ ଓ ଆଧ୍ୟାତ୍ମିକତାର ବାନା ଉଡାଇ କିଏ କେବେ ଭଗବାନଙ୍କର ପ୍ରିୟପାତ୍ର ହୋଇନାହାନ୍ତି । କେବଳ କୁହୁଡି ପଛରେ ଗୋଡାଇବା ହିଁ ସାର ହୋଇଥାଏ ।



ଏକାନ୍ତ ଶ୍ରୀଜଗନ୍ନାଥ ଭକ୍ତ ହେଉଛନ୍ତି ଶ୍ରୀବଳରାମ ଦାସ । ସେ ଜଣେ ସଂସାରୀ ମଣିଷ । କୁଟୁମ୍ବ ନେଇ ଏହି ସଂସାରରେ ସେ ଘର କରିଛନ୍ତି । ସେ ସାଧକ ମାତ୍ର ଲୋକ ଦେଖାଣିଆ ସାଧୁ ନୁହଁନ୍ତି । ମଠ ମନ୍ଦିରରେ ତାଙ୍କର ବାସ ନୁହେଁ । ଦାରାସୁତ ନେଇ ଘରେ ରୁହନ୍ତି । ସେଥିପାଇଁ ସେ ସ୍ପଷ୍ଟ ଭାବେ ସ୍ୱୀକାର କରିଛନ୍ତି-

ଦାରା, ସୁତ, ଧନ, ଜନ ସୁଖଭୋଗ ଶିରୀ
ଅଳପେ ଆପଣ ଦେଇଛନ୍ତି ତାହା ହରି ।
ଏ ମର୍ତ୍ତ୍ୟଲୋକେ ମୁହିଁ ଜଗନ୍ନାଥ ସେବି
ଇଚ୍ଛା ହୋଇଲେ ମୁଁ ବଇକୁଣ୍ଠକୁ ଯେ ଯିବି ।।
(ଜଗମୋହନ ରାମାୟଣ, ଉତ୍ତରାକାଣ୍ଡ)

ଏହାସତ୍ତ୍ୱେ ବି ବଳରାମ ଦାସ କବିଥିଲେ ଆଉ ରସିକ ମଧ୍ୟ । ସୁନ୍ଦରୀ ନାରୀର ଆକର୍ଷଣକୁ ସେ ଏଡାଇ ଦେଇପାରୁନଥିଲେ । ପୁରୀର ଜଣେ ବେଶ୍ୟା ସହିତ ଥିଲା ତାଙ୍କର ଅନ୍ତରଙ୍ଗ ସଂପୃକ୍ତି । ଅନୁମାନ କରାଯାଏ ଏହି ବେଶ୍ୟା ଜଣେ ସାଧାରଣ ବାରାଙ୍ଗନା ନଥିଲେ, ଥିଲେ ପରମ ସାଧିକା ତଥା କବି ବଳରାମ ଦାସଙ୍କର ପ୍ରେରଣା ଦାୟିନୀ । ତାଙ୍କର ନାମ ଥିଲା ଚାରୁଲତା । ସାଧକ ସାଧିକାଙ୍କର ସାନ୍ନିଧ ଲାଭ ନକଲେ, ସାଧନାରେ ସିଦ୍ଧିଲାଭ କରିହୁଏନା । ସେଥିପାଇଁ ତନ୍ତ୍ର ଜଗତରେ ଭୈରବୀ ଓ ଯୋଗିନୀମାନଙ୍କର ସ୍ଥାନ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ । ଆଉମଧ୍ୟ ଜଗନ୍ନାଥ ଦାସ, ଶ୍ରୀଚୈତନ୍ୟ, ରୂପଗୋସ୍ୱାମୀ ଓ ରାମାନନ୍ଦ ତଥା ଆଧୁନିକ ଯୁଗର ବିବେକାନନ୍ଦ, ଗାନ୍ଧୀ, ଅରବିନ୍ଦ ଓ ରବି ଠାକୁର ଏହି ଅପବାଦରୁ ମୁକ୍ତ ନୁହଁନ୍ତି ।

ବଳରାମ ଦାସ ଚାରୁଲତାଙ୍କର ରୂପ ଲାବଣ୍ୟରେ ମୁଗ୍ଧ ଥିଲେ । ତାଙ୍କର ରସପୁଷ୍କଳ ରଚନାମାନଙ୍କରେ ଏହି ନାରୀର ରୂପଶ୍ରୀକୁ ସେ ଉପଲକ୍ଷ୍ୟ କରି ବର୍ଣ୍ଣନା କରୁଥିଲେ । କବି ରମ୍ଭା, ଉର୍ବଶୀ, ମେନକା ଓ କାମମୋହିନୀ ପ୍ରଭୃତିଙ୍କର ବର୍ଣ୍ଣନା କରିବା ବେଳେ ଏହି ରୂପସୀ ବେଶ୍ୟାଙ୍କର ରୂପଶ୍ରୀକୁ ପ୍ରତିଫଳନ କରିଛନ୍ତି । ଏସବୁ ସତ୍ତ୍ୱେ ପ୍ରଭୁ ଶ୍ରୀଜଗନ୍ନାଥଙ୍କର ଆରାଧନାରେ ତିଳେହେଲେ ହେଳା କରୁନଥିଲେ । ସେ ମନ୍ଦିରରେ ଥାଆନ୍ତୁ କି ଗୃହରେ ଥାଆନ୍ତୁ କିମ୍ବା ବେଶ୍ୟା ସହିତ ରଙ୍ଗରସରେ ମାତିଥାଆନ୍ତୁ, ସବୁଠାରେ ସେ ଶ୍ରୀଜଗନ୍ନାଥଙ୍କର ସାନ୍ନିଧ ଲାଭ କରୁଥିଲେ ।

କବି ବଳରାମ ଦାସ ଅଧିକାଂଶ ସମୟ ବେଶ୍ୟା ଚାରୁଲତା ଗୃହରେ କଟାଇ ଦେଉଥିଲେ । ନିଜେ ରଚନା କରିଥିବା କାବ୍ୟ କବିତାକୁ ଚାରୁଙ୍କୁ ଶୁଣାଉଥିଲେ ଓ ପରାମର୍ଶ ନେଇ ଆବଶ୍ୟକ ସ୍ଥଳେ ସଂଶୋଧନ କରୁଥିଲେ । କବି ବଳରାମ ଦାସ ସାଧୁ ସଙ୍ଗ ମଧ୍ୟ କରନ୍ତି, ସର୍ବଦା ଶ୍ରୀହରିଙ୍କ ନାମ ସଂକୀର୍ତ୍ତନ କରନ୍ତି । ସକଳ ଜୀବରେ ଅଶେଷ ଦୟା ମଧ୍ୟ । 'ଶ୍ରୀଦାରୁବ୍ରହ୍ମ ସେବା ଦିନେ, ଅନ୍ୟ ନ ଜାଣେ ତାର ମନେ । କେବଳ ପ୍ରକୃତି ବଶରେ, ନିରତେ ଗମେ ବେଶ୍ୟା ଘରେ । ଚନ୍ଦ୍ରରେ କଳଙ୍କ ଯେସନ, ଅର୍ଜିଲା କଥା ନୁହେଁ ଆନ । ପୂର୍ବ ଅର୍ଜିତ କର୍ମ ଫଳେ, ନିରତେ ବେଶ୍ୟା ଘରେ ଚଳେ ।'

ସେଦିନ ଥିଲା ଶ୍ରୀଗୁଣ୍ଡିଚା । ରଥ ଉପରକୁ ଠାକୁରମାନେ ବିଜେ କରିବାକୁ ଢେର ଡେରିଅଛି । କବି ଚାରୁଲତାଙ୍କୁ ଦେଖା କରିସାରି ମନ୍ଦିର





ଯିବେ ବୋଲି ସ୍ଥିର କଲେ । ତାରୁ ସହିତ ଆମୋଦ ପ୍ରମୋଦରେ ମାତି ରଥଯାତ୍ରା କଥା ଭୁଲି ଯାଇଛନ୍ତି । ବଡଦାଣ୍ଡରେ ରଥଟଣା ଆରମ୍ଭ ହୋଇଗଲାଣି । ରଥଚକର ଗୁରୁଗର୍ଜନ ତାଙ୍କର ତନ୍ଦ୍ରା ଭଗ୍ନ କଲା । ସେ ଶ୍ରୀଜଗନ୍ନାଥଙ୍କର ମନମୋହନ ରୂପ ଓ ପବିତ୍ର ରଥଯାତ୍ରାର ଜନସମାଗମ କଥା ସ୍ମରି ଉନ୍ମତ୍ତ ହୋଇ ଉଠିଲେ । ଶୁଚିଅଶୁଚି କଥା ଚିନ୍ତାକରି ପାରିଲେ ନାହିଁ । ସେ ଦିନର ସ୍ନାନ ଶୌଚ କଥା ମଧ୍ୟ ଭୁଲିଗଲେ । ବେଶ୍ୟା କବରୀରେ ଗୁନ୍ଥା ଯାଇଥିବା ରଜନୀଗନ୍ଧାର ଫୁଲ ମାଳଟିକୁ ଛିଣ୍ଡାଇ ଆଣି ପ୍ରଭୁଙ୍କ ଦର୍ଶନ ଆଶାରେ ବଡଦାଣ୍ଡକୁ ଦୌଡିଗଲେ । ରଥ ଉପରେ ଚଢି ବେଶ୍ୟାଲାଗି ଫୁଲମାଳକୁ ପ୍ରଭୁଙ୍କୁ ଅର୍ପଣ କରିବାକୁ ଯାଉଛନ୍ତି, ପଣ୍ଡାମାନେ ବଳରାମଙ୍କୁ ଦେଖିନେଲେ । ବଳରାମଙ୍କ ମୁହଁରେ, ଦେହରେ ବେଶ୍ୟା ଦେହରୁ କଜ୍ଜ୍ୱଳ ହଳଦୀ ଓ କସ୍ତୁରୀର ଦାଗ ସବୁ ଲାଗିଛି । ତାମ୍ବୁଳ ସିନ୍ଦୂର, ଅଳତାର ଦାଗ ଦେହସାରା । ପଣ୍ଡାମାନେ ବଳରାମଙ୍କର ଚରିତ୍ର ବିଷୟରେ ସବୁକିଛି ଜାଣନ୍ତି । ମାତ୍ର ପ୍ରଭୁଙ୍କର ଭକ୍ତ ତଥା କବି ହୋଇଥିବା ଯୋଗୁଁ ସମସ୍ତେ ସମ୍ମାନ ଦିଅନ୍ତି । ସମସ୍ତେ ମଧ୍ୟ ବଳରାମଙ୍କୁ ଚିହ୍ନିଛନ୍ତି । ତାଙ୍କର ଜ୍ଞାନ ଗାରିମା ବିଷୟରେ ଜାଣନ୍ତି ।

ପଣ୍ଡାମାନଙ୍କ ପକ୍ଷେ ଆଜିର ଘଟଣା କିନ୍ତୁ ଅସହ୍ୟ ହେଲା । ସେମାନେ କବିଙ୍କୁ ଗାଳିଗୁଲଜ କରି ଗଳାଧକ୍କା ଦେଇ ରଥରୁ ବାହାର କରିଦେଲେ । ଆଉ କହିଲେ-

ଗଣ୍ଡେ ତୋ ତାମ୍ବୁଳର ଗାର, କୁଙ୍କୁମ ଦେହେ ଜରଜର ।<br>
ଅତି କଦର୍ଯ୍ୟ ତୋର କାୟେ, ଦିଶୁଛି ଚିତ୍ର ଖଣ୍ଡ ପ୍ରାୟେ ॥<br>
ସ୍ନାନ ଶଉଚ ତୋର ନାହିଁ, ଥିଲୁ ତୁ ବେଶ୍ୟା ଘରେ ଶୋଇ ।<br>
କିମ୍ପା ଚଢିଲୁ ତୁ ରଥର, ଭକତ ପଣ ପୋଡୁ ତୋର ॥

ବଳରାମ ଦାସ ଶକ୍ତ ଧକ୍କା ଖାଇ ଶରଧା ବାଲିରେ କିଛି ସମୟ ପଡିରହିଲେ । ତାପରେ ଲୋକମାନଙ୍କର ଟାହିଟାପରା ଶୁଣି ଉଠି ଠିଆହେଲେ । ଅପମାନ ଓ ଅଭିମାନରେ ସେ ଜଳି ଯାଉଛନ୍ତି । ବେନି ନୟନରୁ ଧାର ଧାର ଲୋତକ ଝରିଯାଉଛି । କଳା ଶ୍ରୀମୁଖକୁ ଅନାଇଲେ, ତାପରେ ହାତଯୋଡି କହିଲେ, ପ୍ରଭୁ ! ମୁଁ କି ଅପରାଧ କଲି । ଆପଣତ ଜାଣନ୍ତି-ସ୍ୱାମୀର ସେବକ ମୁହିଁ ଅଟଇ ସାନିଧ୍ୟ ଖଟା, ଏଭବ ସଂସାର ମୋତେ ନୁହଇକ ନଟା । ନୀଳଗିରି ଜଗନ୍ନାଥଙ୍କୁ ସର୍ବଦା ମୋର ଆଶ, ଶ୍ରୀଜଗନ୍ନାଥ ଶରଣ ମୁଁ ବଳରାମ ଦାସ ।

କବି ବଳରାମ ଦାସ ଅଭିମାନରେ ଫାଟି ପଡୁଛନ୍ତି । ସେ ପାଦେ ଆଗକୁ ଯାଇଛନ୍ତି ତ ପାଦେ ପଛକୁ ଫେରୁଛନ୍ତି, ପ୍ରଭୁଙ୍କୁ ଛାଡି କେଉଁ ଆଡେ ଯିବେ । ପୁଣି ମନରେ ପ୍ରଶ୍ନ ଆସୁଛି, ଯଦି ମୋର ଆରାଧ୍ୟ ଦେବତା ସବୁ ଦେଖୁଛନ୍ତି, ସବୁ ଜାଣୁଛନ୍ତି ତେବେ କାହିଁକି ନୀରବରେ ବସିଛନ୍ତି । ମୋର ଅପମାନ ଓ କଷ୍ଟ ତାଙ୍କୁ କଣ ଭଲ ଲାଗୁଛି । ସେ ନିଜର ସତ୍ତାକୁ ଭୁଲିଗଲେ । ଦୁଇହାତ ତୋଳି ଶ୍ରୀକଳାଠାକୁରଙ୍କ ଉଦ୍ଦେଶ୍ୟରେ ଗାଇଲେ-

''ଜଗନ୍ନାଥ ଦେଖିବି ଚାହିଁବି ଜଗନ୍ନାଥ, ଜଗନ୍ନାଥ ଛାମୁରେ ଯୋଡିବି ଦୁଇହାତ । ଜଗନ୍ନାଥ ବୋଲି ମୁଁ ବଞ୍ଚଇ ହାଦେ ଦିନ, ଜଗନ୍ନାଥ ବିନୁ ଆନେ ନବଳଇ ମନ । ଜଗନ୍ନାଥ ଶରଣ ମୁଁ ଜଗନ୍ନାଥ ଶାଖା, ଜଗନ୍ନାଥ ବିନୁ ମୋର ନାହିଁ ଆନେ ଲେଖା । ଜଗନ୍ନାଥ ମୋହର ପ୍ରାଣର ଆଦି ପତି, ଜଗନ୍ନାଥ ବିନୁ ମୁଁ ଆନେ ନପାଇବି ମୁକତି । ଜଗନ୍ନାଥ ସୁନ୍ଦର ମୁଖ ଚାହିଁ ଚାହିଁ, ହୋଇଲି ବଶ ମୁଁ ଆନେ କାର୍ଯ୍ୟ ନାହିଁ ।'' (ଜଗମୋହନ ରାମାୟଣ, ଲଙ୍କାକାଣ୍ଡ)

ପୁଣି ପ୍ରଭୁଙ୍କୁ ପ୍ରଶ୍ନ କଲେ ବଳରାମ ଦାସ । ପ୍ରଭୁ ! ତୁ ମୋର ପ୍ରାଣ ବନ୍ଧୁ ବୋଲି ଭାବି ତୋ ଛାମୁକୁ ଦୌଡି ଆସିଲି । କିନ୍ତୁ ତୁ ଇତର ଲୋକମାନଙ୍କ ଦ୍ୱାରା ମୋତେ ଏତେ ଦଣ୍ଡ ଦିଆଇଲୁ । ଏବେ ତୋତେ ମୁଁ ଚିହ୍ନିଗଲି । ଏବେ ବଡଦାଣ୍ଡରୁ ବାହୁଡି ଯାଉଛି । ତୋ ରଥ ଦଉଡିକୁ କିଏ କେମିତି ଟାଣିବ ଟାଣୁ ।

ଯାତ୍ରା କେମନ୍ତେ କରତୁହି । ତାହା ଦେଖଇ କିନା ମୁହିଁ ॥<br>
ଭଲା କେ ଚାଳୁ ଏବେ ରଥ । ତୋ ବାପ ନନ୍ଦର ଶପଥ ॥

ମୁଁ ଯଦି ତୋର ପ୍ରକୃତ ସେବକ ହୋଇଥିବି । ତୁ ଯଦି ମୋର ପ୍ରାଣ ନାୟକ ହୋଇଥିବୁ, ତେବେ ମୋ ପଣ ରହିବ । ତୁ ଏହି ରଥରେ ବସିଥିବୁ, ତୋ ରଥ ଟିପେ ସୁଦ୍ଧା ଆଗକୁ ମାଡିଯିବ ନାହିଁ ।

ହରିହୋ, ନନ୍ଦିଘୋଷ ରଥୁଁ ଦେଲୁ ଘଉଡି<br>
କେ ଟାଣିବ ତୋ ରଥ ଦଉଡି<br>
ନାଥ ତୁ ମୋତେ ନେଲେ ସିନା ଯିବୁ<br>
ନୋହିଲେ ସେହିଠାରେ ରହିଥିବୁ<br>
ଧରିଛି ଚିତ୍ତେ ତୁ ଯିବୁ କେମନ୍ତେ<br>
ଦାସ ବଳରାମ ଭରସି ତୋତେ । (ଭାବ ସମୁଦ୍ର)

ପ୍ରଭୁ ! ରାଜା ତୋର ଭକ୍ତ, ସେ ଥାଉ ଥାଉ ସେବକମାନେ ମୋତେ ମାଇଲେ । ସେ କିଛି କଲା ନାହିଁ । ହାବଡା ମାରି ଯେ ଦେଲା ଘଉଡି । ବଳରାମରେ ଯେ ଭାଙ୍ଗିଲା ଥୋଡି । ହରି ! ତୋରି ପ୍ରୌଢିମା ମୋତେ ଜଣା, ତୁ କିପରି ନାରୀ ରସିକ ମୋତେ ଜଣା । ତୁ ପରା ରାତିଦିନ ଚନ୍ଦ୍ରସେଣା ଘରେ କଟାଉ । ପତିବ୍ରତା ନାରୀର ଇଜ୍ଜତ ନେଉ । ଚନ୍ଦ୍ରସେଣା ଗୋଗୋଷ୍ଠରୁ ଫେରିଲେ ତୁ ବାଟ ନପାଇ କଳା ମୁହଁ ଦେଇ ପଳାଇଯାଉ । ଦାସ ବଳରାମ ଥିଲା ସେଠାଇଁ । ଚନ୍ଦ୍ରସେଣା ଗଉଡ ତୋତେ ଛେଚିଥାନ୍ତା । ତୋର ରାଧିକା ଘରୁ ପଳାଇଯିବା ଦୃଶ୍ୟ ଦେଖି ବଳରାମ ଦାସ ହସେ କର୍କର । ହେ ହରି, ମୋତେ ଦୁସ୍ତର ପଡିଛି । ହେ ନାଥ ତୋତେ ନେଇ ସିନା ମୋର ବଳ । ନାଥ ! ତୁ ଗଉଡୁଣୀମାନଙ୍କ ଦ୍ୱାରା ବନ୍ଧା ହୋଇ



ଖୁନ୍ଦା ଖାଉ । ସେଥିପାଇଁ କହୁଛି ଯାହାର ସାମନ୍ତ ଏଡେ ଅଗତି, ଦାସ ବଳିଆକୁ ପଡେ ଦୁର୍ଗତି । ପ୍ରଭୁ ! ତୋ ଠାରେ ମୁଁ କି ଦୋଷ କରିଥିଲି ଯେ, ତୁ ମୋ ପାଇଁ ଏଭଳି ନିରାଶ ବ୍ୟବସ୍ଥା କଲୁ । ତୁ କପଟିଆ । ତୋ କପଟର ଫଳ ମୁଁ ଏବେ ଭୋଗୁଛି । ତୁ ଚାହିଁଥିଲେ ସେବକମାନେ ଧକ୍କାମାରି କଦାପି ରଥ ତଳକୁ ଠେଲି ଦେଇନଥାନ୍ତେ । ହେଉ ହେଲା- କପଟ କଲେ କି ପାଇବୁ ମୋତେ, ଦାସ ବଳିଆ କି ଡରଇ ତୋତେ ?

ବଳରାମ ଦାସ ବଡଦାଣ୍ଡରୁ ଫେରିଆସି ସମୁଦ୍ର କୂଳରେ ପହଞ୍ଚିଲେ । ବାଙ୍କି ମୁହାଣ ନିକଟସ୍ଥ ଚକ୍ରତୀର୍ଥଠାରେ ଆସନ ପାତି ବସିଗଲେ । ଚାରିଆଡେ ନିର୍ଜନ । ମଣିଷ ତ ମଣିଷ, କୁଆ କୋଇଲି ସୁଦ୍ଧା ନାହାଁନ୍ତି । ବାଲି ଉପରେ ତିନିରଥ ନିର୍ମାଣ କଲେ । ସେଥିରେ ଠାକୁରମାନଙ୍କୁ ବସାଇଲେ । ଆଖି ବୁଜି ଧ୍ୟାନସ୍ଥ ହୋଇଗଲେ । ଭାବ ସମାଧି । ଶ୍ରୀଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରାଙ୍କର ମାନସ ପୂଜା । ସେ ପୂଜା ପୁଣି ଷୋଡଶ ଉପଚାରରେ । ମନଗହନରେ ଭେରୀ ତୂରୀ ମର୍ଦ୍ଦଳ ଢୋଲ ବାଜୁଛି । ନିଃଶ୍ୱାସ ପବନ ଶଙ୍ଖ ମହୁରୀ ବଜାଉଛି ।

ହୃଦୟ ମଧ୍ୟେ ଚକାସନେ । ପ୍ରଭୁଙ୍କୁ ବସାଇ ଯତନେ ।
ଆପଣା ଧଇର୍ଯ୍ୟ ସ୍ତମ୍ଭରେ । ବାନ୍ଧିଲା ମନ ପାଟଡୋରେ ।।
ଆନନ୍ଦ ଦାଣ୍ଡେ ରଥେ ଚଢି । ଲଗାଇ କଳ୍ପନା ଦଉଡି ।।

ପ୍ରଭୁଙ୍କୁ ନିଉଛାଳି ହୋଇ ବଳରାମ ଦାସ କହୁଥାନ୍ତି । ହରିହୋ, ବାଲିରେ ତ୍ରିରଥ କରିଛି ମୁହିଁ, ସନ୍ତୋଷେ ବିଜୟ କର ଗୋସାଇଁ । ନାଥ ! ତୁ ମୋତେ ଛାଡି ଚାଲି ଯାଇପାରିବୁ ନାହିଁ । ମୁଁ ତୋତେ ହୃଦୟରେ ଧରି ରଖିଛି । କାହିଁ ଛାଡିଯିବୁ ଜଗୁ ନିବାସ, ଆଣ୍ଟେ ଧରିଛି ବଳରାମ ଦାସ । ପ୍ରଭୁ ! ପୁଣିଥରେ ମୋ ଶପଥ କଥା ତୋତେ ମନେ ପକାଇ ଦେଉଛି- ମୁହିଁ ଯେବେ ସତ୍ୟ ଭୃତ୍ୟ ତୁମର, ଆଜ ନଚଳିବ ରଥ ସେଠାର । ନାଥ ତୋ ଦାସର ମହିମା ରହୁ । କଳିଯୁଗରେ କହିବାକୁ ଥାଉ । ଏତେକ ମାଗୁଛି କର ଗୋସାଇଁ । ବଳିଆ ଦାସ ଅଛି ତୋତେ ଧ୍ୟାୟୀ ।

ବାଲିରଥ ଉପରେ ପ୍ରଭୁଙ୍କର ଦିବ୍ୟ ଜ୍ୟୋତି ପ୍ରକାଶ ପାଇଲା । ବଳରାମ ଦାସ ଅଦ୍ଭୁତ ଦୃଶ୍ୟ ଦେଖି ତଟସ୍ଥ ହୋଇଗଲେ । ସତରେ କଣ ମହାପ୍ରଭୁ ଜଗନ୍ନାଥ ବଡଦାଣ୍ଡ ଛାଡି ଭାଇଭଗିନୀ ସହିତ ଏହି ବାଲିରଥରେ ଅଧିଷ୍ଠାନ କରିଛନ୍ତି ? ହଠାତ୍ ଶୂନ୍ୟବାଣୀ ହେଲା- ଦାସେ ! ମୋର ଉତ୍ସବ କଣ ହେବ ? ମୂଳ ମୋର ଭକ୍ତ । ଅଶେଷ ସୁଖ ମୁଁ ଭକ୍ତ କଥାମୃତରୁ ହିଁ ପାଉଛି । ତୁମର ଏକନିଷ୍ଠ ଭାବ ସମାଧି ହିଁ ମୋତେ ଟାଣିଆଣିଲା । ତୁମ ଭଳି ଭକ୍ତ ଯୁଗେ ଯୁଗେ ଦୁର୍ଲ୍ଲଭ । ଆଉ ତୁମର ଭାବସମାଧି ମଧ୍ୟ ଅତ୍ୟନ୍ତ ଦୁର୍ଲ୍ଲଭ । ମୋତେ ଭଣ୍ଡାଇବା ପାଇଁ ବହୁ କପଟୀ ଭକ୍ତ ସାଧୁ ସନ୍ନ୍ୟାସୀ ପଣ୍ଡା ପଡିଆରୀ ହୋଇ ଅଭିନୟ କରୁଛନ୍ତି । ତାଙ୍କ ହୃଦୟରେ ତିଳେ ସୁଦ୍ଧା ମୋ ପ୍ରତି ଭକ୍ତି ନାହିଁ । ମୋତେ ମାଧ୍ୟମ କରି ଅର୍ଥ ଓ ଯଶ ଉପାର୍ଜନରେ ଲାଗି ପଡିଛନ୍ତି । ସେମାନଙ୍କ ନିକଟରେ ମୁଁ ନଥାଏ । ସେମାନେ ଶେଷରେ ବହୁ ଅପଦସ୍ତ ହୁଅନ୍ତି ।

ଭକ୍ତ ବଳରାମ, ନିଜକର୍ମ ପାଇଁ ଅନୁତପ୍ତ ହୋଇ କାନ୍ଦି ପକାଇଲେ । କହିଲେ ପ୍ରଭୁ ! ମୁଁ ଯାହାସବୁ କରିଛି ଓ କହିଛି ସେ ସବୁ ଅଭିମାନର କଥା । ମୋତେ କ୍ଷମା କରନ୍ତୁ ।

ବଡଦାଣ୍ଡରେ ନନ୍ଦିଘୋଷ, ତାଳଧ୍ୱଜ ଓ ଦେବଦଳନ ରଥ ଆଉ ଚଳୁନି । ଭକ୍ତମାନେ ରଥଦଉଡି ଟାଣି ଟାଣି ଥକି ଗଲେଣି । ମତ୍ତହସ୍ତୀମାନେ ବହୁ ବଳ ପ୍ରୟୋଗ କରି ଆଣ୍ଠେଇ ଗଲେଣି । ରଥ ଟିକେ ସୁଦ୍ଧା ଝୁଙ୍କୁନି । ରାଜା ପ୍ରତାପରୁଦ୍ରଦେବ ବ୍ୟସ୍ତ ହୋଇଉଠିଲେ । ମହାପ୍ରଭୁଙ୍କୁ ସ୍ତୁତି କଲେ, ପୂଜାର୍ଚ୍ଚନା କଲେ କୌଣସି ଫଳ ହେଲାନି । ରାଜା କୁଶ ଆସନରେ ବସି ଧ୍ୟାନସ୍ଥହୋଇ ପ୍ରଭୁଙ୍କୁ ମନ ମଧ୍ୟରେ ସ୍ମରଣ କରିବାରେ ଲାଗିଥାନ୍ତି । ସେହି ଧ୍ୟାନ ମଧ୍ୟରେ ପ୍ରଭୁ ରାଜାଙ୍କୁ କହିଲେ- ମୋର ଭକତ ଯେଉଁ ଜନ, ମୋହର ନାମ କରେ ଗାନ । ସେ କେବେ ଅଶୁଚ ନୁହଁଇ, ସର୍ବଦା ସୁଚିମନ୍ତ ସେହି । ବଳରାମ ଦାସ ମୋର ପରମ ଭକ୍ତ । ସେ ଯେଉଁ ଅବସ୍ଥାରେ ଥାଉ, ସେ ମୋର ପ୍ରିୟ । ତାକୁ ତୋର ପଣ୍ଡା ସେବକମାନେ ବହୁ କଷ୍ଟ ଦେଲେ । ସେ ସମୁଦ୍ର କୂଳରେ ଚକ୍ରତୀର୍ଥଠାରେ ବାଲି ରଥକରି ମୋତେ ଅଟକାଇ ରଖିଛି । ତାର ଭାବ ସମାଧିରେ ଆମେମାନେ ବନ୍ଧାପଡିଛୁ । ବଳରାମ ଦାସ ପ୍ରତି ଅନ୍ୟାୟ ହୋଇଛି ତୁ ତାର ପ୍ରତିକାର କର । ରଥ ଚାଲିବ । ଭକତ ଭାବେ ବାନ୍ଧି ଅଛି, ଆମ୍ଭେ ତା ନପାରୁ ମୁରୁଛି । ଭକତ ମୋହର ଶରୀର । ମୁହିଁ ତାହାଙ୍କ ପ୍ରାଣେଶ୍ୱର । ଭକତ ରକ୍ଷଣ ନିମନ୍ତେ । ଚକ୍ର ମୁଁ ଧରି ଅଛି ହସ୍ତେ । ଏ ଅକାଟ୍ୟ ସତ୍ୟ ଅଟେ ମୋର, ହେ-ରାଜ ସଂଶୟ ନକର ।

ଶେଷରେ ଭକ୍ତ ବଳରାମ ଦାସଙ୍କର ଜୟ ହେଲା । ଅପରାଧିମାନେ ରାଜାଙ୍କ ଦ୍ୱାରା ଦଣ୍ଡିତ ହେଲେ । ଅତ୍ୟନ୍ତ ସମ୍ମାନର ସହିତ ବଳରାମ ଦାସଙ୍କୁ ପାଲିଙ୍କିରେ ବସାଇ ଚକ୍ରତୀର୍ଥରୁ ବଡଦାଣ୍ଡକୁ ଅଣାଯାଇ ରଥ ଉପରେ ବସାଇ ଦିଆଗଲା । କବିଙ୍କର ଆଦେଶ ପାଇ ତ୍ରିରଥ ଘର୍ଘର ନାଦକରି ବଡଦାଣ୍ଡର ଶରଧା ବାଲିରେ ଗଡି ଚାଲିଲେ । ଭକ୍ତମାନଙ୍କର ହରିବୋଲ ହୁଳହୁଳି ଧ୍ୱନିରେ ବଡଦାଣ୍ଡ ଉଚ୍ଛୁଳି ପଡୁଥାଏ । ଧନ୍ୟ ଭକ୍ତ ଧନ୍ୟ ଭଗବାନ ।

ସମ୍ପାଦକ, ପୁରାଣ ପତ୍ରିକା,
ନିଆଳୀ, ଜି-କଟକ




# ସନ୍ଥକବି ଭୀମଭୋଇ ଓ ଶ୍ରୀଜଗନ୍ନାଥ

ଡକ୍ଟର ଉଦ୍ଧବ ଚରଣ ନାୟକ

ଜଗନ୍ନାଥ ସଂସ୍କୃତିପରି ମହିମାଧର୍ମ ଓଡ଼ିଶାର ନିଜସ୍ୱଧର୍ମ । ମହିମାଧର୍ମ ବହୁ ଦେବଦେବୀ ଓ ପ୍ରତିମା ପୂଜାରେ ବିଶ୍ୱାସ କରେନାହିଁ । ମହିମାଧର୍ମ ଏକ ଏକେଶ୍ୱରବାଦୀୟ ଧର୍ମ । ଶୂନ୍ୟବ୍ରହ୍ମଙ୍କ ଉପାସନା ବା ଆରାଧନା ଏହି ଧର୍ମର ମୂଳତତ୍ତ୍ୱ । ମହିମାଧର୍ମର ମହାପ୍ରବନ୍ଧକ ହେଲେ ମହିମାସ୍ୱାମୀ ବା ମହିମା ଗୋସେଇଁ । ମୁଖ୍ୟ ପ୍ରଚାରକ ହେଲେ ସନ୍ଥକବି ମହାତ୍ମା ଭୀମଭୋଇ । ଭୀମଭୋଇ ମହିମାଧର୍ମର ଆଦିକବି ଭାବରେ ଖ୍ୟାତ । ସନ୍ଥକବି ଭୀମଭୋଇ ମୂର୍ତ୍ତିପୂଜା ସମ୍ପର୍କରେ ଗାଇଛନ୍ତି-



ଅଚେତରେ ସିନା ଜନପ୍ରାଣୀମାନେ କରୁଛନ୍ତି ଦେବପୂଜା ।
ପାଦେପଡି ରକ୍ଷାକର ବୋଲୁଛନ୍ତି ଦେବୁ ଖିରୀପୁରୀଖଜା ॥
ମୂର୍ତ୍ତିସିନା ସେହି ଜୀବ ଆତ୍ମା ନାହିଁ କାହୁଁ ଯାଚିଦେବବର ।
ବିଷ୍ଣୁ ନଟକୁଟ ମାୟାକୁ ନଜାଣି ଅଜ୍ଞାନରେ ମୂଢନର ॥
ମନୁଷ୍ୟ ହୋଇ ନିର୍ଜୀବ ସଙ୍ଗେଭାବ ଦେଖଟି କେଡେ ଅଜ୍ଞାନ ।
ଶୂନ୍ୟରୁ ଯେହୁ ପିଣ୍ଡପ୍ରାଣ ଗଢିଲା ନାହିଁ ତାକୁ ଅନୁମାନ ॥

ଏ ସମ୍ପର୍କରେ ମଧ୍ୟ ଉତ୍କଳମଣି ଗୋପବନ୍ଧୁ ଦାସ ଏହିପରି ଗାଇଛନ୍ତି-

ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ ।
ନିଜ ଅଭ୍ୟନ୍ତରେ ଦେଖ ଫେଡିଣ ନୟନ ॥
ହୃଦ କପିଳାସେ ତୋର ବହେ ପ୍ରେମଝର ।
ବିଜେ କରିଛନ୍ତି ତହିଁ ସ୍ୱୟମ୍ଭୂ ଶଙ୍କର ॥
ଶୁଚିମନ୍ତ ହୋଇ ନିତି ଜ୍ଞାନ ଦୀପଜାଳି ।
ଶୁଦ୍ଧଭକ୍ତି ରସେ ଦିଅ ସେ ଶ୍ରୀପଦେ ଢାଳି ॥

ଅଭିମାନଭରା କଣ୍ଠରେ ସନ୍ଥକବି ଭୀମଭୋଇ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଲକ୍ଷ୍ୟ କରି ସ୍ୱରଚନାରେ ଗାଇଛନ୍ତି-

ସେ ଯେବେ ଜଗନ୍ନାଥ ହୋନ୍ତା,
ଠାବକେ କିମ୍ପାଇ ବସନ୍ତା ।
ଜଗତଯାକ ସମଚିତ୍ତ ।
ତେଣୁ ବୋଲାନ୍ତି ଜଗନ୍ନାଥ ॥
ଏଘଟେ ଜଗନ୍ନାଥ ଅଛି ।
ପ୍ରତିମା ମିଛରେ ପୂଜୁଛି ॥
ମୂର୍ତ୍ତି ପ୍ରତିମା ଶୁଷ୍କ କାଠ,
ସେପୁଣି ନେବକି ବୈକୁଣ୍ଠ ?

ଏସବୁ ହେଉଛି ଭୀମଭୋଇଙ୍କ ଅନୁଭବର କଥା । ପୁନର୍ବାର ଭୀମଭୋଇ ତୀର୍ଥ, ବ୍ରତ, ମନ୍ଦିର ଇତ୍ୟାଦିରେ ସତ୍ୟ ନାହିଁ କି ଧର୍ମ ନାହିଁ ବୋଲି ସ୍ୱରଚନାରେ ଦୃଢତାର ସହ ଉଲ୍ଲେଖ କରିଛନ୍ତି-

ଯହିଁଥିଲେ ଯେତେ ଦେବଦେବୀଗଣ ଶୂନ୍ୟକୁ ଗଲେଣି ଉଠି ।
କାହାରି ହସ୍ତେ ନଖାଇବାକୁ ପୂଜା ଅକର୍ମ ଦେଖି ଏ ସୃଷ୍ଟି ॥
ଶ୍ରୀ ପୁରୁଷୋତ୍ତମ କପିଳାସଧାମ ତହୁଁ ଉଠିଲାଣି ଧର୍ମ ।
ତୀର୍ଥମାନେ ସବୁ ଭ୍ରଷ୍ଟ ହୋଇଲେଣି କାହିଁରେ ନାହିଁନା ବ୍ରହ୍ମ ॥
ଗଙ୍ଗା, ଗୟା, କାଶୀ, ପ୍ରୟାଗ ସହିତେ ସେତୁବନ୍ଧ ରାମନାଥ ।
ଏ ତୀର୍ଥମାନଙ୍କୁ ଧର୍ମ ଉଠିଲାଣି କାହିଁରେ ନାହିଁନା ସତ୍ୟ ॥
ଗୋଦାବରୀ, ଗଉମତୀ, ବୃନ୍ଦାବନ, ଦ୍ୱାରକାଯେ ହରିଦ୍ୱାରା ।
ଏ ତୀର୍ଥମାନେ ବିଫଳ ହୋଇଲାଣି ବୁଡିଲାଣି ଧର୍ମଧାରା ॥
ମାନସରୋବର ବଦରି ଯେ ନାଥ ବଇଦ୍ରଣୀ ଆଦିକରି ।
ଯମୁନା, ସରସ୍ୱତୀ ଭ୍ରଷ୍ଟ ହେଲେଣି ଚତୁର୍ଥ ଧାମକୁ ଧରି ॥
ମେଢ, ମଣ୍ଡପ, ଦେଉଳ, ଦେବାଳୟ ଜଗତି ଅଟ୍ଟାଳିକାମାନ ।
ଯହିଁରେ ଦେଖିଲେ ସତ୍ୟଧର୍ମ ନାହିଁ ସକଳେ ହେଲେଣି ଶୂନ୍ୟ ।

ଦଶମୀ ଏକାଦଶୀ ଓ ବିଭିନ୍ନ ବ୍ରତପାଳନ ଅମୂଳକ । ପ୍ରାଣୀମାନେ ମୋହରେ ପଡି ଏସବୁ ପାଳନ କରୁଛନ୍ତି ବୋଲି ଭୀମଭୋଇ କହନ୍ତି-

ତୀର୍ଥ, ବ୍ରତ, ଯଜ୍ଞ, ହୋମ ନଲାଗଇ କ୍ରିୟାକର୍ମ ଆଦିଛାଡି ।
ସକଳଜୀବ ମାୟାରେ ପଡିଛନ୍ତି ଆପଣ ମୋହେ ନପଡି ॥
ଦଶମୀ, ଏକାଦଶୀ ବ୍ରତ ନପାଇ ନୁହଇ ତାହାର କର୍ମ ।
ବ୍ରହ୍ମକୁ ଭେଟିବୁ ବୋଲି ପ୍ରାଣୀମାନେ କରୁଛନ୍ତି ଦାନଧର୍ମ ॥



ତୀର୍ଥମାନେ ଭ୍ରଷ୍ଟ ହେଲେଣି ବୋଲି ଯାହା ଭୀମଭୋଇ ଉଲ୍ଲେଖ କରିଛନ୍ତି ତାହା ସତ୍ୟ କି ନୁହେଁ ଧାର୍ମିକ ଜନତା ନିଶ୍ଚୟ ଉପଲବ୍ଧି କରିପାରୁଥିବେ । ଇଏତ ଅନୁଭବ ଓ ଅଭିଜ୍ଞତାର କଥା । ଏହାକୁ କଣ କେବେ କେହି ଅସ୍ୱୀକାର କରିପାରିବେ । ମହିମାଧର୍ମର ମତ ମୂର୍ତ୍ତି ବା ପ୍ରତିମା ପୂଜା ନକରିବା, ତୀର୍ଥ, ଶ୍ରାଦ୍ଧ, ବ୍ରତ ଓ ଦାନ ନକରିବା-ଏସବୁ ହେଉଛି ବ୍ରାହ୍ମଣ ଧର୍ମର ବିରୋଧୀ । ଫଳରେ ମହିମାଧର୍ମକୁ ଏବଂ ଭୀମଭୋଇଙ୍କୁ ବ୍ରାହ୍ମଣମାନେ ବିରୋଧ କରିବା ସ୍ୱାଭାବିକ । ଏଣୁ ଲୋକେ କହନ୍ତି ଯେ, ଭୀମଭୋଇ ୧୮୮୧ ମସିହାରେ ଶିଷ୍ୟମାନଙ୍କ ସହ ପୁରୀଯାଇ ଶ୍ରୀମନ୍ଦିରରେ ପ୍ରବେଶ କରି ଶ୍ରୀଜଗନ୍ନାଥ, ବଳଭଦ୍ର, ମା ସୁଭଦ୍ରାଙ୍କ ଦାରୁ ପ୍ରତିମାକୁ ପୋଡିଦେବା ପାଇଁ ଗଣ୍ଡଗୋଳ ସୃଷ୍ଟି କରିଥିଲେ । କାରଣ ମହିମା ଧର୍ମାବଲମ୍ବୀମାନେ ମୂର୍ତ୍ତିପୂଜାର ବିରୋଧୀ, ଅନ୍ୟ ଦେବଦେବୀଙ୍କ ପ୍ରସାଦ ତଥା ଶ୍ରୀମନ୍ଦିରର ମହାପ୍ରସାଦ ସେବନର ବିରୋଧୀ । ଏଣୁ ଲୋକମୁଖରେ ଏହା ପ୍ରଚାରିତ ହେବା ସ୍ୱାଭାବିକ ।

ପ୍ରକୃତ ଘଟଣାଟି ହେଲା, ୧୮୮୧ ମସିହାରେ ସମ୍ବଲପୁର ଓ ଏହାର ଆଖପାଖ ଗଡଜାତ ଅଞ୍ଚଳର କେତେକ ଲୋକ ଶ୍ରୀଜଗନ୍ନାଥ ପ୍ରତିମାକୁ ପୋଡିଦେବା ପାଇଁ ପୁରୀ ଯାଇଥିଲେ । ପୁରୀରେ ପହଞ୍ଚି ବଡଦାଣ୍ଡରେ ଗୋଟିଏ ଧାଡିରେ ଠିଆ ହୋଇ ଅଲେଖ ସ୍ୱାମୀ କି ଜୟ ବୋଲି ଉଚ୍ଚାରଣ କରି ଶ୍ରୀମନ୍ଦିର ଆଡକୁ ମାଡିଯାଇଥିଲେ । ଶ୍ରୀମନ୍ଦିରରେ ପ୍ରବେଶ କରିବା ପରେ ସେମାନଙ୍କର ପଣ୍ଡା-ପଡିଆରୀମାନଙ୍କ ସହ ଗଣ୍ଡଗୋଳ ହୋଇଥିଲା । ଏହି ଗଣ୍ଡଗୋଳରେ ଦଶା ରାମ ନାମକ ଜଣେ ବ୍ୟକ୍ତିର ମୃତ୍ୟୁ ହୋଇଥିଲା । ଏହି ସମ୍ବାଦଟି ସେତେବେଳେ ଓଡ଼ିଶାର ସମ୍ବାଦପତ୍ର ଉତ୍କଳଦୀପିକାର ୧୩.୩.୧୮୮୧, ୨୬.୩.୧୮୮୧ ସଂଖ୍ୟା ଓ ବଙ୍ଗଳାର ସୁଲଭ ସମାଚାର ୧୨୮୮ ସାଲ (୧୮୮୧) କାର୍ତ୍ତିକ ୨୧ ଦିନ ସଂଖ୍ୟାରେ ପ୍ରକାଶ ପାଇଥିଲା ।

ଉତ୍କଳ ଦୀପିକାରେ ପ୍ରକାଶିତ ଉକ୍ତ ସମ୍ବାଦଟିରେ ଉଲ୍ଲେଖ ଥିଲା ।

୧୮୮୧ ମସିହା ମାର୍ଚ୍ଚ ୧ ତାରିଖ ମଙ୍ଗଳବାର ଦିନ ଷୋହଳଜଣ ସ୍ତ୍ରୀ-ପୁରୁଷ ଉଲଗ୍ନ ଅବସ୍ଥାରେ ଭାତହାଣ୍ଡି ହାତରେ ଧରି ଶ୍ରୀଜଗନ୍ନାଥ ମନ୍ଦିରକୁ ପ୍ରବେଶ କରିବା ନିମନ୍ତେ ଉଦ୍ୟତ ହେଉଥିଲେ । ସେମାନେ ମଦ୍ୟପାନ କରିଥିବାର ଜଣାପଡୁଥିଲା । ମନ୍ଦିର ଆରକ୍ଷୀ ଓ ସେମାନଙ୍କ ମଧ୍ୟରେ ଟଣାଓଟରା ହେବାରୁ ଜଣେ ଲୋକର ଗୋଡ ଖସିଯାଇ ଚଟାଣରେ ପଡିଗଲା । ସେ ଆଘାତପ୍ରାପ୍ତ ହେଲା । ଡାକ୍ତରଖାନାରେ ତାର ମୃତ୍ୟୁ ଘଟିଲା । ସେହି ଲୋକଟିର ନାମ ଦଶା ରାମ । ଦଶା ରାମ ଥିଲା ଏହି ଦଳର ସର୍ଦ୍ଦାର । ଆଘାତପ୍ରାପ୍ତ ପରେ ଲୋକେ ଦଶା ରାମକୁ ଗରୁଡ ଖୁମ୍ବ ପାଖକୁ ନେଇ ଆସିଲେ । ତାକୁ ଶୁଆଇଦେଲେ । ହେଲେ ଡାକ୍ତରଖାନାରେ ତାର ମୃତ୍ୟୁ ଘଟିଥିଲା । ସେ ମାଡଦ୍ୱାରା ମରିନଥିବାର କଥା ଡାକ୍ତର ସାର୍ଟିଫିକେଟ୍ ପ୍ରଦାନ କଲେ । ଏ ସମ୍ପର୍କରେ ଏକ ମୋକଦ୍ଦମା ଦାଏର ହେଲା । ପୁଲିସ ସବ୍‌ଇନ୍‌ସପେକ୍ଟର ରାମ କୁମାର ମୁଖାର୍ଜୀ ଓ କୃପାସିନ୍ଧୁ ମହାନ୍ତି ଜମାନବନ୍ଦୀ ପ୍ରଦାନ କଲେ । ମାଜିଷ୍ଟ୍ରେଟ କମଲ ଘୋଷ ମୋକଦ୍ଦମାର ବିଚାର କରି ଅନ୍ୟ ଅଭିଯୁକ୍ତ ପନ୍ଦରଜଣଙ୍କୁ ତିନିମାସ ଲେଖାଏଁ ଜେଲଦଣ୍ଡ ଦେଲେ । ଏହି ଲୋକମାନଙ୍କ ଘର ରାୟପୁର ଓ ସମ୍ବଲପୁର ଅଞ୍ଚଳର ବୋଲି ଜଣାଯାଏ ।ଏହି ଅଭିଯୁକ୍ତମାନେ ମାଜିଷ୍ଟ୍ରେଟଙ୍କ ନିକଟରେ ଜଣାଇଲେ ଯେ, ଗୁରୁ ଅଲେଖଙ୍କ ଆଜ୍ଞା ଦଶା ରାମକୁ ହୋଇଥିଲା କି ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତିନିଜଣଙ୍କ ଦାରୁ ମୂର୍ତ୍ତିରେ ବ୍ରହ୍ମ ବିଦ୍ୟମାନ ନଥିବା ହେତୁ ସେମାନଙ୍କୁ ସିଂହାସନରୁ ଉଠାଣି ଆଣି ବଡଦାଣ୍ଡରେ ପୋଡି ଦେବା ପାଇଁ ସେମାନେ ଆସିଥିଲେ । ସେମାନଙ୍କ ସହ ଆସିଥିବା ଅନ୍ୟ ୨୮ଜଣଙ୍କୁ ସତ୍ୟବାଦୀଠାରେ ଅଟକ ରଖାଯାଇଥିଲା । ସେମାନଙ୍କ ମଧ୍ୟରେ ଥିଲେ ସ୍ତ୍ରୀ-ପୁରୁଷ ଓ ବାଳକବାଳିକା । ସେମାନଙ୍କ ମଧ୍ୟରେ ଚାରିଜଣ ଏହିକଥା ପ୍ରକାଶ କରିଦେବାରୁ ସେମାନଙ୍କୁ ଏକ ସପ୍ତାହ କରି ଜେଲ ହାଜତକୁ ପଠାଇ ଦିଆଯାଇଥିଲା । ଏହି ଲୋକମାନେ ମ୍ଳେଚ୍ଛ, ସ୍ନାନ କରନ୍ତି ନାହିଁ କି ଶୌଚ ହୁଅନ୍ତି ନାହିଁ ବୋଲି ଏହି ସମ୍ବାଦରେ ଉଲ୍ଲେଖ ଅଛି ।

ଏହି ଘଟଣାରେ କୌଣସି ମହିମାଧର୍ମାବଲମ୍ବୀ, ଭୀମଭୋଇ ବା ଭୀମ ଭୋଇଙ୍କ ଶିଷ୍ୟମାନେ ସଂପୃକ୍ତ ନଥିବା ଜଣାଯାଏ । ଏହାର ମଧ୍ୟ କୌଣସି ପ୍ରମାଣ ନାହିଁ । ତତ୍କାଳୀନ ସରକାରୀ ରେକର୍ଡପତ୍ର ଯଥା- ଏ ସମ୍ପର୍କିତ କଲେକ୍ଟର, ପୁରୀ ଏସ୍‌ପି, ପୁରୀ ଓ ସିଭିଲ ସର୍ଜନଙ୍କ ରିପୋର୍ଟରେ ଏହାର କୌଣସି ପ୍ରମାଣ ମିଳେ ନାହିଁ ଯେ, ଭୀମଭୋଇ କି ତାଙ୍କର ଶିଷ୍ୟମାନେ ଏହି ଘଟଣାରେ ସଂପୃକ୍ତ ଥିଲେ ବୋଲି । ଏପରିକି ଭୀମଭୋଇଙ୍କ କୌଣସି ରଚନାରେ ଏପ୍ରସଙ୍ଗ ଆଦୌ ଉଲ୍ଲେଖ ନାହିଁ । ତତ୍କାଳୀନ ବ୍ରିଟିଶ ଅଧିକାରୀ ମିଃ. ସି.ଇ.ବକ୍‌ଲ୍ୟାଣ୍ଡ ତାଙ୍କ ରଚିତ 'ଲେଫ୍ଟନାଣ୍ଟ ଗଭର୍ଣ୍ଣରଙ୍କ ଅଧୀନରେ ବଙ୍ଗଳା' ୧୯୦୧ରେ ଯଦି ଓ ଏହି ଘଟଣା ଉଲ୍ଲେଖ କରିଛନ୍ତି, ସେଥିରେ ସେ ଭୀମଭୋଇଙ୍କ ନାମ କି ତାଙ୍କ ଶିଷ୍ୟମାନଙ୍କର ନାମ ପ୍ରକାଶ କରିନାହାନ୍ତି । ଓଡିଶାର ବିଶିଷ୍ଟ ଐତିହାସିକ ତଥା ରାଜନୀତି ବିଶାରଦ ସ୍ୱର୍ଗତଃ ଡକ୍ଟର ହରେକୃଷ୍ଣ ମହତାବ ତାଙ୍କ ରଚିତ ଓଡିଶା ଇତିହାସ ପୁସ୍ତକରେ ଏହାକୁ ଖଣ୍ଡନ କରିଛନ୍ତି ।

ଏହା ନିଃସନ୍ଦେହ ଯେ, ମହିମାଧର୍ମ ପ୍ରତିମା ପୂଜାର ବିରୋଧୀ । ତେତ୍ରିଶ କୋଟି ଦେବଦେବୀଙ୍କ କଳ୍ପନା ଓ ବାହ୍ୟ ଆଡମ୍ବରକୁ ଦୃଢ ଭାବରେ ପ୍ରତ୍ୟାଖ୍ୟାନ କରେ । ବ୍ରାହ୍ମଣଧର୍ମକୁ ଘୋର ବିରୋଧ କରେ । ତାର ଅର୍ଥ ନୁହେଁ ଯେ, ହିନ୍ଦୁ ସମାଜରେ ପୂଜିତ ପ୍ରତିମାକୁ ସେମାନେ ଧ୍ୱଂସ କରିଦେବେ । ଯଦି ଏହା ହୋଇଥାନ୍ତା, ତେବେ ମହିମାଧର୍ମ ପ୍ରତ୍ୟେକ ଗ୍ରାମମୁଣ୍ଡରେ ପୂଜିତ ଗ୍ରାମ ଦେବତୀଙ୍କ ହାତୀ-ଘୋଡା ମୃଣ୍ମୟ ମୂର୍ତ୍ତିକୁ ଧ୍ୱଂସ କରିଦେବା ପାଇଁ ପ୍ରଥମେ ପଦକ୍ଷେପ ଗ୍ରହଣ କରିଥାଆନ୍ତେ । ଭୀମଭୋଇ ମହିମା ଧର୍ମାବଲମ୍ବୀ ତଥା ଭୀମଭୋଇଙ୍କ ଶିଷ୍ୟମାନଙ୍କୁ ଏହି ଘଟଣାରେ ସଂଶ୍ଳିଷ୍ଟ କରିବା ସମୀଚୀନ ନୁହେଁ ।

ସନ୍ଥକବି ଭୀମଭୋଇ ହେଉଛନ୍ତି ମହିମାଧର୍ମର ଆଦ୍ୟ ତଥା ଓଡ଼ିଆ ସାହିତ୍ୟର ଅନ୍ୟତମ କବି । ତାଙ୍କର ସମସ୍ତ ରଚନା ଗୁରୁ ମହିମା ସ୍ୱାମୀଙ୍କ

ଆଦେଶରେ ରଚିତ ବୋଲି ସେ ସ୍ୱରଚନାରେ ଉଲ୍ଲେଖ କରିଛନ୍ତି-

ଜନମ କାଳରୁ ମୁଁ ମୂର୍ଖ ହୋଇଥିଲି ।
ଷୋହଳ ବରଷକେ ମୁଁ କବିକୃତୀ କଲି ॥
ବେଦଶାସ୍ତ୍ର ବୋଲି ମୁଁ କିଛି ଜାଣେନାହିଁ ।
ଗୁରୁ ହୃଦ ପଦ୍ମେ ବସି ଯେବେଦେଲେ କହି ॥(ଆଦିଅନ୍ତଗୀତା)
ଯେତେବେଳେ ଗୁରୁଯେ କହିଦ୍ୟନ୍ତି ଭେଦ ।
ତେଣୁ ସେ ଯୋଡଇ କବି କୃତୀପଦ ॥
ଶ୍ରୀଗୁରୁଙ୍କ ଠାସ ନୟନ ସାଦୃଶ୍ୟ ବେଦଶାସ୍ତ୍ର ନାହିଁ ସାଧି ।
ଶୂନ୍ୟକୁ ଅନାଇ ପଦ ବଖାଣଇ ଅନୁଭବ କରିବୁଦ୍ଧି ॥(ସ୍ତୁତି ଚିନ୍ତାମଣି)
ଏକାରାଗେ ବାନ୍ଧିଲି ମୁଁ ଦୁଇଯୋଡା ଗୀତ ।
ଭଣେ ଭୀମ ଅରକ୍ଷିତ ଗୁରୁ ମୋ ସାମରଥ ॥ (ଚୌତିଶାମାଳା)

ଭୀମଭୋଇଙ୍କ ରଚନାରେ ଶ୍ରୀଜଗନ୍ନାଥ, ତାଙ୍କର ଅନ୍ୟ ଅବତାର ତଥା ଭଗବାନ ଶ୍ରୀରାମ ଓ ଶ୍ରୀକୃଷ୍ଣଙ୍କ ସମ୍ପର୍କରେ ଅତ୍ୟନ୍ତ ଉଚ୍ଚକୋଟୀର ବର୍ଣ୍ଣନା ଦେଖିବାକୁ ମିଳେ । ସେଥିମଧ୍ୟରୁ ଏଠାରେ କିଛି ଉଲ୍ଲେଖନୀୟ-

ବେଦବଖାଣିଛି ଶାସ୍ତ୍ରରେ ରହିଛି ନିୟତ ପ୍ରମାଣ ସତ ।
ନୀଳାଚଳେ ପ୍ରଭୁ ବିରାଜ କରନ୍ତେ ନୀଳଗିରି ଜଗନ୍ନାଥ ॥
ଅନୁସରି ବହୁଦୂରୁ ଆଶାକରି ହୃଦୟ ପଦ୍ମରେ ଚିନ୍ତି ॥
ମଉନରେ ବସି ନାମ ବୋଲାଇଲେ ଦାରୁ ପ୍ରତିମା ମୂରତି ।
ସ୍ନାହାନ ତର୍ପଣ କରିଦରଶନ ରୂପ ଦେଖି ହେଲ ଭୋଳା ।
ଚକା ବଇଠିରେ ବିରାଜ କରନ୍ତେ ତେଣୁ ନାମ ଚକାଡ଼ୋଳା ॥
କୋଟି ଅବତାର ନୁହଇ ଗୋଚରେ ଭେଦନାହିଁ ବର୍ଣ୍ଣ ଚିହ୍ନ ।
ବିବିଧ କଳ୍ପନା ରୂପକୁ ରଞ୍ଜନା ତ୍ରିପଣ୍ଡ କାଳିଆନାମ ॥
ଝିନବାସ ପୁଷ୍ପଅଙ୍ଗେ ଶୋଭାସଞ୍ଚ ବଡ ସିଂହାସନ ବେଶ ।
ରୂପକୁ କୋଟିଏ ସୂର୍ଯ୍ୟ ନୋହେସରି ଶ୍ରୀନାମ ବ୍ରହ୍ମ ଅଶେଷ ॥
ଖଟିଛି ପୟର ଆଦି ତିନିପୁର ସର୍ବ ଭୁତେ ତୋର ବାସ ।
ସୁଙ୍କଦ୍ୱୀଜବର ବେଦାନ୍ତ ଆଚାରେ ନାମ ଦେଲେ ଜଗଦୀଶ ॥
କାମିନୀ ଆରତ କାମବଶ୍ୟରତ ଢମାଳିଆ ପଣେ ସମ ।
ପ୍ରେମ ଅନୁରାଗେ ପ୍ରିୟନ୍ତି ସରାଗେ ମଦନ ମୋହନ ନାମ ॥
ଢମାଳିଆ ପଣେ ନାହିଁ ତ୍ରିଭୁବନେ ପଞ୍ଚପ୍ରାଣ ଗୋପୀଙ୍କର ।
ବଂଶୀଧ୍ୱନି ନାଦ ହୃଦୟରେ ଭେଦ ତେଣୁ ନାମ ବେଣୁଧର ॥
ଶିରେ ଚୂଳଗଭା ନାଚନ୍ତେ କି ଶୋଭା ନବରଙ୍ଗେ ଢଳି ଢଳି ।
ଆଦ୍ୟ ବୃନ୍ଦାବନେ ବେହାର କରନ୍ତେ ତେଣୁ ନାମ ବନମାଳୀ ॥
ଲାଭରେ ଲୋଭିତ ବହିର୍ଗର୍ବଚିତ୍ତ ବାସବବିବାଦ କରି ।
ଟେକି ଗିରିବର କରି ଛତ୍ରାକାର ନାମଦେଲେ ଗିରିଧାରୀ ॥
ଛଦ୍ମମାୟାକରି କପଟ ଆଚରି ପରୀକ୍ଷାରେ ଗଲ ହାରି ।
ତେଣୁ ଶକ୍ରାଜିତ ନାମ ଦେଇଗଲା ରାମ-ଗୋବିନ୍ଦ-ମୁରାରୀ ॥
ଧନ୍ୟ ସେ ପାଦୁକା ଭକତଙ୍କ ଶାଖା ବହୁଅଛି ଘନଘନ ।
ସୁଧା-ମକରନ୍ଦ ଆପ୍ୟାନ କରନ୍ତେ ମାଧବ ମଧୁସୂଦନ ॥
ବ୍ରଜସୁତ ଘେନି ଦିଗକୁ ଭ୍ରମଣି ସଙ୍ଗେଭାଇ ବଳରାମ ।
କାଳନ୍ଦୀରେ ପଶି କାଳିକି ଦଳନ୍ତେ କାଳୀୟ ମର୍ଦ୍ଦନ ନାମ ॥

ଭୀମଭୋଇ ଶ୍ରୀଜଗନ୍ନାଥଙ୍କର ରୂପ, ନାମ ଓ ଗୁଣ ବର୍ଣ୍ଣନା ଯେପରି ସୁନ୍ଦର ଓ ସାବଳୀଳ ଭାଷାରେ କରିଛନ୍ତି, ତାହା ତ ଆମେ ଜାଣିଲେ । ସତରେ ତାହା କେଡେ ହୃଦୟସ୍ପର୍ଶୀ ! ଏହାବ୍ୟତୀତ ଭୀମଭୋଇ ଦଶଅବତାର ବର୍ଣ୍ଣନାରେ ଦ୍ୱାପର ଯୁଗରେ ବଳରାମଙ୍କୁ ଅବତାର ଭାବରେ ଗ୍ରହଣ ନକରି ଶ୍ରୀକୃଷ୍ଣଙ୍କୁ ଅବତାର ଭାବରେ ଗ୍ରହଣ କରିଛନ୍ତି । ଭୀମଭୋଇ ଶ୍ରୀରାମ ଅବତାର ଓ ସାତଖଣ୍ଡ ରାମାୟଣକୁ ମାତ୍ର ଛଅଟି ପଦରେ ଯେପରି ନିଜ ରଚନାରେ ବର୍ଣ୍ଣନା କରିଯାଇଛନ୍ତି ତାହା ମଧ୍ୟ ହୃଦୟସ୍ପର୍ଶୀ !

ସତରେ ମହିମାଧର୍ମ ତଥା ଭୀମଭୋଇ କେଡେ ସୁନ୍ଦର ଭାବରେ ଶ୍ରୀଜଗନ୍ନାଥଙ୍କ ସହିତ ମହିମାଧର୍ମର ସମ୍ପର୍କ ସ୍ଥାପନ କରିଛନ୍ତି । ମହିମାଧର୍ମର ଅଭ୍ୟୁଦୟ ବା ପ୍ରଚାର ହିନ୍ଦୁଧର୍ମକୁ ଧ୍ୱଂସ କରିବା ପାଇଁ ଅଭିପ୍ରେତ ନଥିଲା କି ଏବେ ବି ନାହିଁ । ହିନ୍ଦୁଧର୍ମରେ ପ୍ରଚଳିତ ତେତ୍ରିଶ କୋଟି ଦେବଦେବୀଙ୍କ କଳ୍ପନା ଆରାଧନା, ବ୍ରାହ୍ମଣ୍ୟ ଆଧିପତ୍ୟ ତଥା ବାହ୍ୟ ଆଡମ୍ବରକୁ ପ୍ରତ୍ୟାଖ୍ୟାନ କରିବା, ସମାଜରୁ ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ହଟାଇ ଜାତିଭେଦ ବିବର୍ଜିତ, ସମାଜ ଗଠନ ପୂର୍ବକ ସନାତନ ହିନ୍ଦୁଧର୍ମର ପୂର୍ବ ମର୍ଯ୍ୟାଦାକୁ ଅକ୍ଷୁଣ୍ଣ ରଖିବା ହେଲା ମହିମାଧର୍ମର ପ୍ରଚାର ଓ ପ୍ରସାରର ମୂଳଲକ୍ଷ୍ୟ । ଏହା ହିନ୍ଦୁଧର୍ମର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଏକ ସଂସ୍କାରବାଦୀ ମତବାଦ ।

ଏପରିସ୍ଥଳେ ଭୀମଭୋଇ ତାଙ୍କର ଶିଷ୍ୟମାନଙ୍କୁ ସଙ୍ଗରେଧରି ପୁରୀ ଶ୍ରୀକ୍ଷେତ୍ରରେ ପ୍ରବେଶକରି ଶ୍ରୀଜଗନ୍ନାଥ ବିଗ୍ରହକୁ ଧ୍ୱଂସ କରିବାକୁ ଯାଇଥିଲେ ବୋଲି କହିବା ମସ୍ତବଡ ଭୁଲ । ଏହାଦ୍ୱାରା ଓଡ଼ିଶାରୁ ଅଭ୍ୟୁଦୟ ହୋଇଥିବା ଶ୍ରୀଜଗନ୍ନାଥ ସଂସ୍କୃତି ଓ ମହିମାଧର୍ମ କଳଙ୍କିତ ହେବ । ଉତ୍କଳର ଏହି ସଂସ୍କୃତି ଓ ଧର୍ମ ବିଶ୍ୱକୁ ଆଲୋକବର୍ତ୍ତିକା ଦେଖାଇଛି-ଏହା ନିଃସନ୍ଦେହରେ କୁହାଯାଇପାରେ ।

ସାଧାରଣ ସମ୍ପାଦକ
ମହିମାଧର୍ମ ଗବେଷଣା ପରିଷଦ, ଓଡ଼ିଶା
ଇ-୬୫, ୟୁନିଟ୍-୮ ଭୁବନେଶ୍ୱର-୧୨



# ଓଡ଼ିଆ ଭକ୍ତି ସଙ୍ଗୀତରେ ଶ୍ରୀଜଗନ୍ନାଥ ଚେତନା

ଡକ୍ଟର ଶ୍ରୀଚରଣ ଦାସ



ଶ୍ରୀଜଗନ୍ନାଥ ଓଡ଼ିଶାର ଜନମାନସରେ ସର୍ବଶ୍ରେଷ୍ଠ ପରିଚିତ, ଯିଏ ଅତି ଆପଣାର, ଏକାନ୍ତ ନିଜର । ସେ ଏତେ ଆତ୍ମୀୟ ଯେ, ସ୍ତ୍ରୀ, ପୁତ୍ର, ଭାଇ, ବନ୍ଧୁଙ୍କୁ ଯାହା ଜଣାଇବାକୁ ଇଚ୍ଛା ନଥାଏ, ତାଙ୍କ ନିକଟରେ ସ୍ୱତଃ ସେ କଥାର ଗଣ୍ଠି ଫିଟିପଡେ । ଓଡ଼ିଶାର ଚିରନମସ୍ୟ ଦେବତା ସିଏ । ତାଙ୍କ ପରି ପ୍ରଭୁ ବିଶ୍ୱରେ ବିରଳ । ତେଣୁ ସେ ଜଗତର ନାଥ ଜଗନ୍ନାଥ ।ଏ ଜାତିର ଇତିହାସ ସହିତ ସେ ଓତପ୍ରୋତ ଭାବରେ ଜଡିତ । ଏକାଧାରରେ ତାଙ୍କୁ ଶାନ୍ତି, ମୈତ୍ରୀ, ପ୍ରୀତି, ଦୟା, କ୍ଷମା ଓ କରୁଣାର ଏକ ସୁମଧୁର ସମନ୍ୱୟ ଭାବରେ ଗ୍ରହଣ କରାଯାଏ । ତାଙ୍କୁ ଆଶ୍ରୟ କଲେ ସବୁ ଦୁଃଖ ଦୂର ହୋଇଯାଏ । ଯନ୍ତ୍ରଣାରୁ ମୁକ୍ତିମିଳେ । ସେ ହାତ ବଢେଇ ଲହୁ, ଲୁହ ପୋଛି ଦିଅନ୍ତି । କୋଳେଇ ନେବାକୁ ଇଙ୍ଗିତ ଦିଅନ୍ତି । ଶ୍ରୀଜଗନ୍ନାଥ ଉତ୍କଳର ବଳ, ଗର୍ବ, ସ୍ୱାଭିମାନ ଓ ଗୌରବର ପ୍ରତୀକ ହୋଇଥିବାରୁ ପ୍ରତିଟି ଓଡ଼ିଆ ଯେକୌଣସି ଶୁଭକାର୍ଯ୍ୟରେ ତାଙ୍କୁହିଁ ସ୍ମରଣ କରେ ।

ଶ୍ରୀଜଗନ୍ନାଥ ସର୍ବବିଧ ବିସ୍ମୟର କେନ୍ଦ୍ରବିନ୍ଦୁ । ଜାତି, ଧର୍ମର ପ୍ରାଚୀର ଭାଙ୍ଗି, ବର୍ଣ୍ଣବିଦ୍ୱେଷର ପ୍ରଥା ଲଘଂନ କରି ମାନବିକତା ବିହୀନ ପତିତମାନଙ୍କୁ ଉଦ୍ଧାର କରିବା ପାଇଁ ସେ ସାଜିଛନ୍ତି ପତିତପାବନ । ତାଙ୍କଠାରେ ସର୍ବଧର୍ମର ସମନ୍ୱୟ ଘଟିଛି । ତାଙ୍କ ପାଖକୁ ବୁଦ୍ଧ, ଜୈନ, ମୁସଲମାନ, ଖ୍ରୀଷ୍ଟିଆନ, ଗାଣପତ୍ୟ, ଶୈବ, ଶାକ୍ତ, ବୈଷ୍ଣବ ଇତ୍ୟାଦି ସବୁଧର୍ମ ଓ ମତବାଦର ସିଦ୍ଧସାଧକ ଓ ମନିଷୀ ଆସି ନିଜର ମତ ପ୍ରତିଷ୍ଠା ପାଇଁ ଯେତେ ଚେଷ୍ଟିତ ହୋଇଛନ୍ତି, ସବୁମତ ତାଙ୍କଠାରେ ବିଲୀନ ହୋଇଛି । ସେଥିପାଇଁ ସେ ସବୁଠାରୁ ରହସ୍ୟମୟ । ତେଣୁ ଯଥାର୍ଥରେ କୁହାଯାଇଛି-

ସର୍ବରହସ୍ୟଂ ପରୁଷୋତ୍ତମସ୍ୟ
ଦେବଃ ନ ଜାନାନ୍ତି କୁତୋ ମନୁଷ୍ୟଃ ।

ସେ ଶୂନ୍ୟ ଓ ପୂର୍ଣ୍ଣ, ସାକାର ଓ ନିରାକାର । ଅତ୍ର ତତ୍ର ସର୍ବତ୍ର ବିରାଜିତ । ଶ୍ରୀଜଗନ୍ନାଥଙ୍କଠାରୁ ସାମ୍ୟବାଦର ଅୟମାରମ୍ଭ ଏବଂ ସେ ଯଥାର୍ଥରେ ହେଉଛନ୍ତି ବସୁଧୈବ କୁଟୁମ୍ବଙ୍କର ମୁଖ୍ୟନାୟକ । ମମତାର ରଜ୍ଜୁରେ ସେ ସମସ୍ତଙ୍କୁ ବାନ୍ଧି ଦେଇଛନ୍ତି ଏବଂ ଭକ୍ତିଭାବରେ ଆପେ ଆପେ ବାନ୍ଧି ହୋଇପଡିଛନ୍ତି । ବିଶ୍ୱ ସଂସ୍କୃତିକୁ ଶ୍ରୀଜଗନ୍ନାଥ ସଂସ୍କୃତିର ଉଦାର ମାନବିକତାବାଦ ଏକ ମହନୀୟ ଅବଦାନ ।

ପ୍ରତି ଯୁଗରେ ସେ ହୋଇଛନ୍ତି ଭକ୍ତ ଭାବଗ୍ରାହୀ । ଭକ୍ତ ନିଜର ଅଭିଳାଷକୁ ବିଭିନ୍ନ ଉପାୟରେ ତାଙ୍କ ନିକଟରେ ବ୍ୟକ୍ତ କରିବାର ଇଚ୍ଛା ରଖି ନିକଟବର୍ତ୍ତୀ ହୁଏ । ସଂଗୀତ ତାଙ୍କ ପାଇଁ ସବୁଠାରୁ ଆଦରଣୀୟ । ତାଙ୍କପରି ସଙ୍ଗୀତପ୍ରିୟ ଦେବତା ପୃଥିବୀରେ ବିରଳ । ସଂଗୀତର ମୂର୍ଚ୍ଛନାରେ ନିଜକୁ ହଜାଇ ଦିଅନ୍ତି । ଆତ୍ମହରା ହୋଇଉଠନ୍ତି । ପ୍ରତିଦିନ ସଂଗୀତ ନଶୁଣିଲେ ଆଖିକୁ ତାଙ୍କର ନିଦ ଆସେ ନାହିଁ । ସେଥିପାଇଁ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଉତ୍କଳର ପ୍ରାଚୀନ କବିମାନଙ୍କଠାରୁ ଆରମ୍ଭ କରି ଏପର୍ଯ୍ୟନ୍ତ ସଂଖ୍ୟାଧିକ କବି ବହୁ ଭଜନ, ଜଣାଣ, ଛାନ୍ଦ, ଚଉତିଶା ଆଦି ଭକ୍ତି ସଂଗୀତ ରଚନା କରି ଚାଲିଛନ୍ତି । ପଞ୍ଚଦଶ ଶତାବ୍ଦୀରୁ ସାଂପ୍ରତିକ କାଳ ପର୍ଯ୍ୟନ୍ତ ଉଦ୍ଧାର କରାଯାଇଥିବା ଭକ୍ତି ସଂଗୀତର କବିମାନଙ୍କ ମଧ୍ୟରେ ଅଧିକ ଲୋକପ୍ରିୟ ଭକ୍ତି ସଂଗୀତ ରଚନା କରିଛନ୍ତି ସାରଳା ଦାସ, ମାଧବୀ ଦାସୀ, ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ, ଶ୍ରୀଚନ୍ଦନ, ଦୀନକୃଷ୍ଣ ଦାସ, ସାଲବେଗ, ସାରିଆ ଭିକ, ଭିକାରୀ, ବୈଦ୍ୟନାଥ ଦ୍ୱିଜ, ଉପେନ୍ଦ୍ରଭଞ୍ଜ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଭକ୍ତଚରଣ ଦାସ, ପିଣ୍ଡିକ ଶ୍ରୀଚନ୍ଦନ, ହାଡିଦାସ, ଅଭିମନ୍ୟୁ ସାମନ୍ତସିଂହାର, ବୀରକିଶୋର ଦେବ, କବିସୂର୍ଯ୍ୟ ବଳଦେବ ରଥ, ଗୋପାଳକୃଷ୍ଣ ପଟ୍ଟନାୟକ, ବନମାଳି ଦାସ, ନିତ୍ୟାନନ୍ଦ ଦାସ, ଗୌରଚରଣ ଅଧିକାରୀ, ଚନ୍ଦନ ହଜୁରୀ, ଚଣ୍ଡୀଦାସ, ବିକ୍ରମ ନରେନ୍ଦ୍ର, କଳ୍ପଲତା ଜେମା, ଆର୍ତ୍ତଦାସ, ଗଜପତି ମୁକୁନ୍ଦଦେବ, ସାନନ୍ଦ ଦ୍ୱିଜ, ଭରତ ଦାସ, ଗୋପାଳ





ଦାମୋଦର ଦ୍ୱିଜ, ପଦ୍ମନାଭ ପଟ୍ଟନାୟକ, ବାଙ୍କନିଧି ଦାସ, ଭଗବାନ, ବାମନ ଦାସ, କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର, ବୈଷ୍ଣବ ପାଣି, କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ, ବୈକୁଣ୍ଠ ନାଥ ବ୍ରହ୍ମଚାରୀ, ହରିପ୍ରିୟା ଦେବୀ, ଶ୍ରୀମତୀ ବ୍ରହ୍ମୋତ୍ରୀ ମହାନ୍ତି, ଶ୍ରୀମତୀ ତୁଳସୀ ଦାସ, କ୍ଷୀରୋଦ ଚନ୍ଦ୍ର ପୋଥାଳ, ନଗେନ୍ଦ୍ର ମହାପାତ୍ର, ଅଲେଖ ବିଶ୍ୱାଳ, ସାରଦା ପ୍ରସନ୍ନ ନାୟକ, ପ୍ରଫୁଲ୍ଲ କର ପ୍ରଭୃତି ପ୍ରାଚୀନ ମଧ୍ୟଯୁଗୀୟ ତଥା ବିଂଶ ଶତାବ୍ଦୀର କାବ୍ୟ କବିତାରେ ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଯେଉଁ ଭକ୍ତି ସଂଗୀତ ରଚିତ ହୋଇଅଛି ତାହା ଅତ୍ୟନ୍ତ ଭକ୍ତିରସାପ୍ଲୁତ ଓ ମର୍ମସ୍ପର୍ଶୀ । ସେହି ଭକ୍ତି ସଂଗୀତ ଗୁଡ଼ିକୁ ଯେତେ ଗାନ କଲେ ତାହା କେବଳ ଯେ କାନକୁ ସୁଖକର ମନେ ହୁଏ ତାହା ନୁହେଁ, ଦେହକୁ ପବିତ୍ରର ଗଙ୍ଗୋତ୍ରୀରେ ସ୍ନାନ କରାଇ ଦେଇଥାଏ । ଜଗନ୍ନାଥ ଯେ କେତେ ମହାନ ପ୍ରଭୁ ସଂଗୀତ ଶ୍ରବଣରେ ଆପେ ଆପେ ବାରି ହୋଇପଡନ୍ତି । ତାଙ୍କୁ ଯେତେ ଦର୍ଶନ କଲେ ଯେପରି ମନ ବୁଝେନାହିଁ, ସେହିପରି ତାଙ୍କ ସଂଗୀତକୁ ଯେତେ ଶୁଣିଲେ ଶ୍ରବଣର ଆସକ୍ତିରୁ ଦୂରାଇବା ଅସମ୍ଭବ ହୁଏ ।

ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଯେତେଗୁଡ଼ିଏ ଭକ୍ତିସଂଗୀତ ରଚନା କରାଯାଇଛି ତନ୍ମଧ୍ୟରେ ଭଜନ ଓ ଜଣାଣର ସଂଖ୍ୟା ସର୍ବାଧିକ । ଏହାକୁ ମୂଲ୍ୟାୟନ କରିବା ଏକ ଅସମ୍ଭବ ବ୍ୟାପାର । ଷୋଡଶ ଶତାବ୍ଦୀ ଓଡ଼ିଆ ସାହିତ୍ୟର ସନ୍ଥ ସାହିତ୍ୟର ଯୁଗଭାବରେ ପରିଚିତ । ଏହି ସମୟରେ ବଳରାମ ଦାସ, ଜଗନ୍ନାଥ ଦାସ, ଅଚ୍ୟୁତାନନ୍ଦ ଦାସ, ଯଶୋବନ୍ତ ଏବଂ ଅନନ୍ତ ଦାସଙ୍କ ସମେତ ଆହୁରି ଅନେକ କବି ପୁରାଣ, ସଂଗୀତ ଏବଂ ଯୋଗଭକ୍ତିର ସାହିତ୍ୟ ରଚନା କରି ଓଡ଼ିଶାର ଆଧ୍ୟାତ୍ମିକ ପରିଧିକୁ ପ୍ରସାରିତ କରିଥିଲେ । ସର୍ବୋପରି ଶ୍ରୀଜଗନ୍ନାଥଙ୍କୁ ଭିତ୍ତିକରି କବିମାନେ ସେମାନଙ୍କ ଲେଖନୀକୁ ବଳବତ୍ତର କରିଥିଲେ । ଶ୍ରୀଜଗନ୍ନାଥ ଦାସଙ୍କର ଏକ ଲୋକପ୍ରିୟ ଭଜନ ହେଲା-

ଶ୍ରୀପୁରୁଷୋତ୍ତମ ଯିବା ମନ । ସାଙ୍ଗ ହୋଇଥିବା ପାଞ୍ଚଜଣ
ତୁନି ହୋଇଥିବା କେହି ନଜାଣିବେ ବସିଭାଳୁଥିବା ମନେମନ ପ୍ରଭୁ ପାଞ୍ଚଜଣ ।

ଏହି ଭକ୍ତି ସଂଗୀତଟିରେ ସେ ଶ୍ରୀକ୍ଷେତ୍ରର ସିଂହଦ୍ୱାର, ବାଇଶିପାବଛ, କଳ୍ପବଟ ଏବଂ ତିନିରଥ ଆଦିର ଉଲ୍ଲେଖ କରିଛନ୍ତି । ଷୋଡଶ ଶତାବ୍ଦୀର କବି ଅଚ୍ୟୁତାନନ୍ଦ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଯେତେଗୁଡ଼ିଏ ଭକ୍ତି ସଂଗୀତ ଲେଖିଛନ୍ତି ତନ୍ମଧ୍ୟରେ ଦୀନବନ୍ଧୁ ଭଜନଟି ଅତ୍ୟନ୍ତ ଭାବଗର୍ଭକ ।

ଦୀନବନ୍ଧୁ ! ମୋ ଦୁଃଖ ନଗଲାଯେ
ତୁମ୍ଭେ ଦୀନବନ୍ଧୁ ମୋ ବନ୍ଧୁ ନୋହିଲେ
ମୋ ବନ୍ଧୁ ହୋଇବ କେ ।

ସେ ଜଗନ୍ନାଥଙ୍କୁ ଦୀନଦରିଦ୍ରର ବନ୍ଧୁ ଭାବରେ ଜାଣିଛନ୍ତି । ସେ ପରମ ଯୋଗୀ, ଦୁଃଖୀ ଦୁଃଖର ଅପହରଣକାରୀ । ତାଙ୍କ ଦୁଃଖ ପାଇଁ ଅଚ୍ୟୁତାନନ୍ଦ ଆର୍ତ୍ତ ଭାବରେ କଣ୍ଠ ଫଟାଇ ପ୍ରାର୍ଥନା କରିଛନ୍ତି ।

ମାଧବୀ ଦାସୀ ଏହି ସମୟର ଜଣେ ବିଶିଷ୍ଟ ଭକ୍ତ ଓ କବି । ଉତ୍କଳର ପ୍ରାଚୀନ ନାରୀ କବିମାନଙ୍କ ମଧ୍ୟରେ ସେ ଥିଲେ ଅସାଧାରଣ ପ୍ରତିଭାର ଅଧିକାରିଣୀ । ମାଧବୀ ଏକାଧାରରେ ବ୍ରଜବୋଲି ବଙ୍ଗଳା ଓ ଓଡ଼ିଆ ଭାଷାରେ ବହୁପଦ୍ୟ ରଚନା କରିଛନ୍ତି । ତାଙ୍କର ଓଡ଼ିଆ ଭଜନ-

ଚକାନୟନ ହୋ ! ଜଗଜୀବନ ଶ୍ରୀହରି
କାତରେ ଜଣାଣ କରୁଛି ଛାମୁରେ
ଶୁଣ ପ୍ରଭୁ ଶ୍ରୁତି ଡେରି ।

ଜଗନ୍ନାଥ ପ୍ରାଣତାର ସର୍ବୋତ୍କୃଷ୍ଟ ପରିଚୟ । ନାରୀ କବି ଭାବରେ ମାଧବୀ ଦାସୀ ଏହି ଭଜନରେ ଅହଲ୍ୟା, ଦ୍ରୌପଦୀ, ମୃଗୁଣୀ, ମୀରା, କରମା, ପିଙ୍ଗଳା ଆଦିଙ୍କୁ ସଙ୍କଟରୁ ରକ୍ଷା କରିବା ଦୃଷ୍ଟାନ୍ତ ଦେଇଛନ୍ତି ।

ରୀତିଯୁଗୀୟ କବିମାନଙ୍କର ଭକ୍ତି ଚେତନାରେ ଅନେକତ୍ର ରାମ, କୃଷ୍ଣ ଓ ଶ୍ରୀଜଗନ୍ନାଥ ଏକ ଓ ଅଭିନ୍ନ । ଭକ୍ତକବି ଦୀନକୃଷ୍ଣ ଦାସଙ୍କର ରସକଲ୍ଲୋଳ କାବ୍ୟରେ କୃଷ୍ଣହିଁ ସ୍ୱୟଂ ଜଗନ୍ନାଥ । ତାଙ୍କର ଲୋକପ୍ରିୟ ଭକ୍ତିସଙ୍ଗୀତଗୁଡ଼ିକ ମଧ୍ୟରେ-

ଜଗବନ୍ଧୁ ପରି ଜଣେ ସାମନ୍ତ ନାହିଁ ନାହିଁ ତ
ଚଉଦ ଭୁବନ ବାରତା ଜାଣନ୍ତି
ଚକ୍ରରେ ଛେଦନ୍ତି ଆରତ ।

ସେହିପରି କୃପାସିନ୍ଧୁ ବଦନ କରି ଅବଲୋକନ କେଉଁ କରମହୀନଜନ । ଚଉତିଶାର ପଦ୍ୟ ଅତ୍ୟନ୍ତ ଲଳିତ ଏବଂ ମର୍ମସ୍ପର୍ଶୀ । କଥିତ ଅଛି କବି ଏହି ଚଉତିଶାଟିକୁ ଯୋଡହସ୍ତରେ ଗରୁଡଖମ୍ଭ ନିକଟରେ ରହି ଗାନ କରି ଶ୍ରୀଜଗନ୍ନାଥଙ୍କୁ ବିଚଳିତ କରିପକାଇଥିଲେ । ଫଳରେ ଶ୍ରୀଜଗନ୍ନାଥ ତାଙ୍କ ସ୍ତୁତିରେ ମୁଗ୍ଧ ହୋଇ ଦୀନକୃଷ୍ଣଙ୍କୁ କୁଷ୍ଠ ରୋଗରୁ ମୁକ୍ତ କରିଥିଲେ ।

ସପ୍ତଦଶ ଶତାବ୍ଦୀର ଜଣେ ପ୍ରତିଭାଶାଳୀ ସଂଗୀତଜ୍ଞ ହେଉଛନ୍ତି ସାଲବେଗ । ତାଙ୍କର ପିତା ମୁସଲମାନ ଲାଲବେଗ ଓ ମାତା ବ୍ରାହ୍ମଣୀ । ସେ ଅନେକ ହୃଦୟସ୍ପର୍ଶୀ ଭଜନ ଓ ଜଣାଣର ରଚୟିତା ଏବଂ ପ୍ରତିଟି ରଚନା ମୂଲ୍ୟବୋଧଭିତ୍ତିକ । ତାଙ୍କର ସଂଗୀତମାନଙ୍କ ମଧ୍ୟରେ ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ, କେଣେ ଘେନି ଯାଉଛ ଜଗନ୍ନାଥଙ୍କୁ, ଏକା ତୋ ଭକତ ଜୀବନ, ଜଗବନ୍ଧୁ ହେ ଗୋସାଇଁ, ଚାଲ ସଖୀ ଆମ୍ଭେ ଦର୍ଶନ କରିବା ନୀଳଗିରି କାଳିଆକୁ, ଆହେ ନୀଳଗିରି, ତୁମ୍ଭ ଶ୍ରୀଭୁଜ ଦୟଣା କେରିକେରି ପ୍ରଭୃତି ଭକ୍ତି ସଂଗୀତ ଓଡ଼ିଆ ପ୍ରାଣତନ୍ତ୍ରୀକୁ



ଦୋହଲାଇ ଦିଏ । ସାରିଆ ଭିକ ଏହି ସମୟର ଜଣେ କବି ଏବଂ ତାଙ୍କର ଥକା ମନ ଚାଲଯିବା ଚକାନୟନ ଦେଖିବା ଭକ୍ତି ସଂଗୀତଟି ଖୁବ୍ ଭାବଗର୍ଭକ । ରୀତିଯୁଗର କବିମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ କବି ଉପେନ୍ଦ୍ରଭଞ୍ଜ ଜଗନ୍ନାଥଙ୍କୁ ଆପଣାର ଆରାଧ୍ୟ ପ୍ରଭୁ ମନେ କରି ଲେଖିଛନ୍ତି ମାନ ଉଦ୍ଧାରଣ କରହେ ତାରଣ, ଶରଣ ମୁଁ ତୁମ୍ଭ ପାଦତଳେ ଏବଂ କଳା ଶ୍ରୀମୁଖ ହେ ନଗଲା ମୋର ଦୁଃଖ । କଳ୍ପତରୁକୁ ଆଶ୍ରେ କରିଛି ମୁଁ କି ବୋଲିବେ ଶୁଣି ଲୋକ । ଏହି ସମୟର କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର ମଣିମା ଶୁଣିମା ହେଉ ଗରିବ ଡାକ, ନୀରକ୍ଷ ଜନଙ୍କୁ ରଖ ପଙ୍କଜ ମୁଖ । ଭକ୍ତ ଚରଣ ଦାସଙ୍କ ମନବୋଧ ଚଉତିଶାର କହଇ ମନ ଆରେ ମୋ ବୋଲ କର, କଳା ଶ୍ରୀମୁଖବାରେ ଦେଖିବା ଚାଲ । ଅଭିମନ୍ୟୁ ସାମନ୍ତସିଂହାରଙ୍କ

ଜୟ ଜଗନ୍ନାଥ ଚଢ଼ିନନ୍ଦିଘୋଷ ରଥ
ଅନ୍ତର୍ଯ୍ୟାମୀ ଅନ୍ତର୍ଗତ ବାରତା ଜାଣ
ଦୁଃଖୀ ଜଣାଇଲେ ଦୁଃଖ କେବେହେଁ ନୁହଁ ବିମୁଖ
ଦୁଃଖ ଏଡ଼ି ସୁଖତାକୁ ଦିଅ ପ୍ରମାଣ
ସେହିପ୍ରଭୁ ନୁହଁ କି ତୁମ୍ଭେ

ଦୁଃଖୀ ଜଣାଇଲେ ଦୁଃଖ ନଶୁଣ ଏବେ ଏବଂ କବିସୂର୍ଯ୍ୟ ବଳଦେବ ରଥଙ୍କର କେହି ସରିକି, ପ୍ରଭୁପଣେ ନିଳାଦ୍ରୀ କେଶରୀ କି, ବାଧିଲା ଜାଣିକ୍ଷମା କର ନୋହିଲେ ରମା ରମଣ ଦଣ୍ଡେ ଦିଅ ଟାଳି, କ୍ଷୀରମୟ ସିନ୍ଧୁ ଜେମା ପ୍ରାଣବନ୍ଧୁ ତୁମ୍ଭେତ ଜଗତପତି ଆଦି ଭକ୍ତି ସଂଗୀତ ଗୁଡ଼ିକରେ ଶ୍ରୀଜଗନ୍ନାଥଙ୍କର ରୂପ, ଗୁଣ ଓ ମହିମା ବର୍ଣ୍ଣିତ ହେବା ସହ ନିଜ ଜୀବନର ଦୁଃଖ ଜଣାଇ ତାହାକୁ ଦୂର କରିବା ପାଇଁ ରହିଛି ଆତ୍ମନିବେଦନଭାବ । ଅଷ୍ଟାଦଶ ଶତାବ୍ଦୀର ଅନ୍ୟ ଜଣେ କବି ହେଲେ ବୀରକିଶୋର ଦେବ । ସେ ଓଡ଼ିଶାର ଗଜପତି ଥିଲେ । ଅନେକ ଭଜନ ଓ ଚଉପଦୀର ରଚୟିତା ଭାବରେ ତାଙ୍କର ପ୍ରସିଦ୍ଧି ରହିଛି । ସେ ଲେଖିଥିବା-ପତିତପାବନ ବାନା ଆଉ କେତେ ବେଳକୁ, ଭାସିଗଲି ଭବଜଳେ ନାବ ଦିଅ କୂଳକୁ ଆଦି ଭଜନ ଗଜପତି ବୀରକିଶୋର ଦେବଙ୍କର ଜଗନ୍ନାଥଙ୍କ ପ୍ରତିଥିବା ଅସୀମ ଭକ୍ତିର ନିଦର୍ଶନ ।

ଓଡ଼ିଆ ଭାଷାରେ ପଦାବଳୀ ସାହିତ୍ୟର ରଚୟିତା ଭାବେ ପ୍ରସିଦ୍ଧି ଲାଭ କରିଥିବା ବନମାଳୀ ଦାସ ଥିଲେ ପୁରୀର ଅଧିବାସୀ । ଶ୍ରୀଜଗନ୍ନାଥଙ୍କ ପ୍ରତି ଥିବା ତାଙ୍କର ଅସୀମ ଭକ୍ତିମତ୍ତାର ନିଦର୍ଶନ ସେ ରଚନା କରିଥିବା ଭଜନ ଓ ଜଣାଣମାନଙ୍କରୁ ହିଁ ସହଜରେ ବାରି ହୋଇପଡ଼େ । ତାଙ୍କର ଭକ୍ତି ସଂଗୀତ ମଧ୍ୟରେ ଜଗନ୍ନାଥ ହେ, କିଛି ମାଗୁ ନାହିଁ ତୋତେ, ଧନ ମାଗୁନାହିଁ ଜନ ମାଗୁନାହିଁ, ମାଗୁଛି ଶରଧା ବାଲିରୁ ହାତେ, ମହାବାହୁ ଏହି କଥାରେ ମୋ ମନ, ଦୀନବନ୍ଧୁ ଏହି ଅଳି ଶ୍ରୀଛାମୁରେ, ଦୀନବନ୍ଧୁ ଦଇତାରି ଦୁଃଖ ନଗଲା ମୋହରି, ଆଦି ବେଶ୍ ଉଲ୍ଲେଖଯୋଗ୍ୟ । ରୀତିଯୁଗର ସମସ୍ତ କବିଙ୍କ ରଚନାରେ ଜଗନ୍ନାଥ ପ୍ରାଣ ଅଛି, କିନ୍ତୁ ସମସ୍ତଙ୍କ ରଚନାକୁ ଏଥିରେ ସ୍ଥାନିତ କରିବା ସମ୍ଭବ ନୁହେଁ । ଆଲୋଚିତ କବିମାନଙ୍କୁ ବାଦ୍‌ଦେଲେ ଏହି ସମୟର ଅନ୍ୟ ଦୁଇଜଣ କବି ହେଉଛନ୍ତି ନିତ୍ୟାନନ୍ଦ ଦାସ ଓ ବୀରକିଶୋର ଦେବ । କବି ନିତ୍ୟାନନ୍ଦଙ୍କର ପତିତ ଜନଙ୍କୁ ଉଦ୍ଧାରିବା ପାଇଁ ଉଡାଉଅଛ ପତାକା, ନାବ ଦିଅ କୂଳକୁ ଭଜନ ଜନମାନସରେ ଅଧିକ ପ୍ରଭାବଶାଳୀ । ଊନବିଂଶ ଶତାବ୍ଦୀର କବି ଗୌରଚରଣ ଅଧିକାରୀ ରାଧାକୃଷ୍ଣ ଲୀଳାତ୍ମକ ବହୁ ଚଉପଦୀ, ଚୈତନ୍ୟ ବନ୍ଦନା ଏବଂ ଭକ୍ତିରସାତ୍ମକ ଭଜନ ଜଣାଣର ରଚୟିତା । ଶ୍ରୀଜଗନ୍ନାଥଙ୍କୁ ଆପଣାର ମନେ କରି ସେ ଯେଉଁ ଭଜନ ଲେଖିଛନ୍ତି ତନ୍ମଧ୍ୟରେ ନୀଳ ଚକ୍ରେହୋ ଦେଖ ଉଡୁଛି ବାନା ଏବଂ ଦୁଃଖନାଶନ ଗରୁଡାସନ ହରି ଦୁଃଖ ଜଣାଇବି କାହାକୁ ଆଦି ପ୍ରଧାନ, ପୁରୀ-ହରଚଣ୍ଡୀ ସାହିରେ ଜନ୍ମଲାଭ କରିଥିବା ଚନ୍ଦନ ହଜୁରୀଙ୍କର ଜଗନ୍ନାଥ ଭଜନ-ଚକାନୟନକୁ ପତିତ କହି, ତକାଇ ଖର ନିଃଶ୍ୱାସ ପକାଇ, ଲୋକମାନସକୁ ଅଧିକ ପ୍ରଭାବିତ କରିଥାଏ । ଆର୍ତ୍ତତ୍ରାଣଙ୍କର ପ୍ରଭୁ କି ସୁନ୍ଦର ଦିଶ, ବସି ରତ୍ନ ସିଂହାସନ, ପାପୀମାନେ ତରିଗଲେ କରିତୁମ୍ଭ ଦରଶନ, ଗଜପତି ମୁକୁନ୍ଦଦେବଙ୍କର-ଆହେ ନିଳାଦ୍ରୀ ବିହାରୀ, କଟକେ ଅଟକ ହେବାରୁ ମୋଦିନ ସରୁନାହିଁ ଝୁରିଝୁରି ଏବଂ ସାନନ୍ଦ ଦ୍ୱିଜଙ୍କର-କାହାକୁ ମୁଁ କରିବଇଁ ସାକ୍ଷୀ ଚକାଆଖି, ଜଗନ୍ନାଥ ପ୍ରାଣତାର ସର୍ବୋତ୍କୃଷ୍ଟ ପରିଚୟ ପ୍ରଦାନ କରେ ।

ବିଂଶ ଶତାବ୍ଦୀର କବିମାନଙ୍କ ମଧ୍ୟରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର ସବୁଥିରୁ ବଞ୍ଚିତ କରି କେଉଁ ଯଶବାନା ଉଡାଇବହେ, ଯାହା ଦେଇଥିଲ ସବୁତ ନେଲଣି ଆଉ ଏବେ କିସ ଛଡାଇବହେ, ଅଭିମାନ ବ୍ୟଂଜକ ଭକ୍ତି ସଂଗୀତ ଓଡ଼ିଶାର ବହୁଲୋକଙ୍କ ମୁଖରୁ ଶୁଣିବାକୁ ମିଳେ । ବୈକୁଣ୍ଠନାଥ ବ୍ରହ୍ମଚାରୀ ଏହି ସମୟର ଜଣେ ବିଶିଷ୍ଟ ସାଧକ ଏବଂ ବହୁଭକ୍ତି ସଂଗୀତର ରଚୟିତା । ସେ ଜଗନ୍ନାଥଙ୍କୁ ଏକାନ୍ତ ନିଜସ୍ୱ ମନେ କରି ଲେଖିଛନ୍ତି-

ଜଗନ୍ନାଥ ମୋହରି
ଜଗତରେ ଜଣେ ମୁହିଁ ତୋହରି
ତୁମ୍ଭେ ଜଗନ୍ନାଥ କରିଲେ ଅନାଥ
ଜଣାଇବି କାହା ଆଗେ ଗୁହାରି ।

ସେହିପରି ତାଙ୍କର କର୍ମହୀନଜନ କେଉଁ କରୁଣସୁରେ । କମଳାକାନ୍ତକୁ କହେ ଅତିଆତୁରେ, ଏବଂ ମହାବାହୁ ! ଘେନା ହେଉ

ଏ ଗରିବ ବାରତା । ଦିନୁଦିନ ଦୁଃଖ ରହୁ ଦେଲେ ଦୁଃସ୍ଥ ଅବସ୍ଥା ଆଦି ଜଣାଣ ଜଗନ୍ନାଥ ପ୍ରାଣତାର ବଳିଷ୍ଠ ପରିଚୟ ଦିଏ । କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ ଓଡ଼ିଆ ସାହିତ୍ୟରେ ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ ହେଲେହେଁ ମୁଖ୍ୟତଃ ଜଣେ ସଙ୍ଗୀତକାର । ତାଙ୍କ ସଙ୍ଗୀତଗୁଡିକ ମଧରେ ଭଜନ ଓ ଜଣାଣ ବେଶି ଲୋକପ୍ରିୟ । ବଡ ଦେଉଳେ ବଡଦିଅଁ କାହିଁକି, ବଡ ବୋଲାଇ କିଛି ଲାଜ ନାହିଁକି ? ନାହିଁ କରିଦେଲେ କଥାତ ସରନ୍ତା କାହିଁକି ପିଟନ୍ତି ମଥା ? ଜଗନ୍ନାଥ ବୋଲାଉଛ ଦୀନବନ୍ଧୁ ! ମୋହରି ବେଳକୁ ଶୁଖିଗଲା କିହେ, ଅଥଳ କରୁଣାସିନ୍ଧୁ ପ୍ରଭୃତି ସଂଗୀତ ଜଗନ୍ନାଥଙ୍କ ପ୍ରତି ଅସୀମ ଭକ୍ତିଭାବର ନିଦର୍ଶନ । ଏହି ସମୟର ନାରୀକବି ହରିପ୍ରିୟା ଦେବୀଙ୍କର ଶରଣାଗତକୁ ହରି ନକଲେ ପାରି, ସରିତ ଗଲାଣି ସବୁ ନୟନବାରି,

ଏବଂ ତୁଳସୀ ଦାସଙ୍କ-

ଚକାଆଖିହେ, ଛୁଇଁକି କହିବ ଆଖି
ସତ କହିବଟି
କିଏ ବାଛି ବାଛି କୃପାନିଧି ନାମ ଦେଲା କାହିଁକି ।

ଏହି ଉଲ୍ଲେଖନୀୟ ଭକ୍ତି ସଂଗୀତ ଯେଉଁଥିରେ ଜଗନ୍ନାଥ ପ୍ରାଣତାର ସ୍ୱର ଓ ସ୍ୱାକ୍ଷର ଝଙ୍କୃତ । ବିଂଶ ଶତାବ୍ଦୀର କବି କ୍ଷୀରୋଦ ଚନ୍ଦ୍ର ପୋଥାଳ ଶ୍ରୀଜଗନ୍ନାଥଙ୍କ ସମ୍ପର୍କରେ ଯେତେଗୋଟି ଭଜନ ଓ ଜଣାଣ ରଚନା କରିଛନ୍ତି ତନ୍ମଧରେ ବେଶି ଆଦୃତ କୋଠ ଭୋଗଖିଆ ମୋ ଚକା ଆଖିଆ, ଉଠହେ ପହଡ ଭାଙ୍ଗି, ଯାହାକୁ ଭଜନ ସମ୍ରାଟ ସ୍ୱର୍ଗତ ଭିକାରୀ ବଳ ଗାନ କରି ଓଡ଼ିଶାରେ ଚହଳ ପକାଇ ଦେଇଥିଲେ । ଶେଷରେ ସଂଗୀତଜ୍ଞ ପ୍ରଫୁଲ୍ଲ କରଙ୍କର ଭକ୍ତି ସଂଗୀତରେ ଶ୍ରୀଜଗନ୍ନାଥଙ୍କ ପ୍ରତି ଅସୀମ ଭକ୍ତିଭାବର ସୂଚନା ମିଳେ । ତାଙ୍କର ଭଜନ- ହୃଦକୁ କରିଛି ରତ୍ନ ସିଂହାସନ, ମନମୋର ନୀଳାଚଳ, ବିଜେକର ନାଥ, ଆହେ ଜଗନ୍ନାଥ, ଧନ୍ୟହେଉ ଜନ୍ମମୋର, ଶ୍ରୋତାମାନଙ୍କୁ ଭକ୍ତିର ଡୋରିରେ ବାନ୍ଧିପକାଏ ।

ଓଡ଼ିଆ ଲୋକପ୍ରିୟ ଭକ୍ତି ସଂଗୀତର ଏହା ସାମଗ୍ରିକ ରୂପ ନୁହେଁ । କେତେଜଣ କବିଙ୍କର ଗୋଟିଏ ଦୁଇଟି ଭଜନ ଜଣାଣର ପଦେ ପଦେ ମାତ୍ର ଏଥିରେ ଉଦ୍ଧୃତ । ଶ୍ରୀଜଗନ୍ନାଥଙ୍କୁ କେନ୍ଦ୍ରକରି ଓଡିଆ ଭକ୍ତି ସଂଗୀତର ସଂଖ୍ୟା ଏତେ ବିପୁଳ ଯେ, ଏହାକୁ ସାମଗ୍ରୀକ ଭାବରେ ବ୍ୟାଖ୍ୟା କରିବା ଖୁବ୍ କଠିନ, ଅସମ୍ଭବ ମଧ । ତାଙ୍କ ପ୍ରତି ଭକ୍ତି ଅର୍ଘ୍ୟ ଅର୍ପଣ କରିବାରେ ମୂର୍ଖ, ପଣ୍ଡିତ, ରାଜାପ୍ରଜା କାହାମଧରେ ବାଛବିଚାର ନଥାଏ । କହିବା ନିଷ୍ପ୍ରୟୋଜନ ଯେ, ସବୁଠାରୁ ଅଧିକ ଜଗନ୍ନାଥ କୈନ୍ଦ୍ରିକ ଭକ୍ତିସଂଗୀତ ରଚିତ ହୋଇଛି ବିଂଶ ଶତାବ୍ଦୀରେ । ଏବେ ଯେତେ ସଂଖ୍ୟକ ଜଗନ୍ନାଥ ଭଜନ, ଜଣାଣ ବଜାରରେ କ୍ୟାସେଟ୍ ହୋଇ ବିକ୍ରି ଚାଲିଛି ଏବଂ ଟିଭି ମୋବାଇଲରେ ବ୍ୟବସାୟ ଲକ୍ଷ୍ୟ ନେଇ ବାଜୁଛି ସେଥିରେ ଭକ୍ତିର ମାତ୍ରା କେତେ ରହିଛି ତାହା ନକହିବା ଭଲ । ଶ୍ରୀଜଗନ୍ନାଥଙ୍କ ପରି ଦେବତାଙ୍କୁ ଆଜିର କବି ଓ ସଂଗୀତକାର ମାନେ ନାନାଦି ଅକଥା, କୁକଥା ଓ ଅବୋଧ ଭାଷାରେ ଗାଳିବର୍ଷଣ କରି ବ୍ୟଙ୍ଗ ସ୍ୱରରେ ଗୀତ ପରିବେଷଣ କରିବା ଅତ୍ୟନ୍ତ ପରିତାପର ବିଷୟ । ସେଥିପାଇଁ ଏହି ସଂଗୀତଗୁଡିକ ସାମୟିକ ସମୟ ପାଇଁ ଲୋକମାନଙ୍କ ଶ୍ରୁତିକୁ ଆକର୍ଷିତ କରୁଥିଲେ ହେଁ ଚିରସ୍ଥାୟୀ ହୋଇପାରୁନାହିଁ । ସାଧୁ ସାବଧାନ ! ଏଥିପ୍ରତି ସଜାଗ ରୁହନ୍ତୁ । ଶ୍ରୀଜଗନ୍ନାଥଙ୍କୁ ଏତେ ହାଲକା ଭାବରେ ବର୍ଣ୍ଣନା କରିବାକୁ ପ୍ରୟାସ କରନ୍ତୁ ନାହିଁ । ସାଂପ୍ରତିକ କାଳର ମାତ୍ର କେତୋଟି ଭକ୍ତି ସଂଗୀତ ଯଥା ନନ୍ଦିଘୋଷ ତୋର ଅଟକି ଗଲା ବଡ ଶଙ୍ଖଠାରେ , କିଏ ସେ ଭକତ ଏତେ ଆପଣାର ଡାକିଲା ଚନ୍ଦନପୁରେ, କେରି କେରି ସୁନାଦୁବ, ଲୋ ସଜନୀ କେରି କେରିସୁନା ଦୁବ, ଶ୍ରୀଜଗନ୍ନାଥଙ୍କୁ ସୁମରଣା କଲେ ସବୁ ଅନୁକୂଳ ହୁଏ ଶୁଭ, ଗୋଡ ଯୋଡିକ ଥାଇଁ ବୋଇଲେ ସତ ମୋ ବଚନ ରାମା ସତ ମୋ ବଚନ, ଜଗନ୍ନାଥଙ୍କ ଶରଧା ବାଲିରେ ଚାଲିବାକୁ ମନ ମୁଁ କ୍ଷେତ୍ର ଯିବି, ମୋତେ ଲଗାଇଛି ବୋଲି ଡୋରି ମୁଁ ଆସିଛି ପୁରୀ ପ୍ରଭୃତି ଭକ୍ତି ସଂଗୀତ ଲୋକପ୍ରିୟ ହୋଇପାରିଛି । ମାତ୍ର ଏଥିମଧରୁ ଅନେକ ଅନ୍ତଃସାରଶୂନ୍ୟ ।

ଓଡ଼ିଆ ଲୋକପ୍ରିୟ ଶ୍ରୀଜଗନ୍ନାଥ ଭକ୍ତି ସଂଗୀତଗୁଡିକ ସମର୍ପଣ ଭାବକୁ ନେଇ ରଚିତ । ଏହାକୁ ନେଇ ଅନେକ ପରୀକ୍ଷାନିରୀକ୍ଷା ହୋଇଛି । ତାଙ୍କ ଲୀଳାଖେଳାର ଅନ୍ତଃନାହିଁ । ନାମର ମହାତ୍ମ୍ୟ, ଗୁଣର ମହିମା ବିଭିନ୍ନ ରୂପରେ ଏହା ବପୁଷ୍ମାନ । ତାଙ୍କଠାରେ ଅଟଳ ବିଶ୍ୱାସ ସ୍ଥାପନ କରି ଓଡ଼ିଆ ଜାତି ବହୁ ବିପଦ ଓ ବିପର୍ଯ୍ୟୟରୁ ରକ୍ଷା ପାଇଛି ଏବଂ ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛି ମଧ । ପ୍ରଭୁ ଭାବକୁ ନିକଟ, ଅଭାବକୁ ଦୂର । ତଥାପି ସେ ଏ ଜାତିର ଗତିମୁକ୍ତିଦାତା ଓ ଭାଗ୍ୟବିଧାତା । ପ୍ରତିଟି ଓଡ଼ିଆ ଏକନିଷ୍ଠ ଭକ୍ତିରଖି ପାରିଲେ ଜଗନ୍ନାଥ ସଂସ୍କୃତିର ପ୍ରକୃତ ମୂଲ୍ୟବୋଧ ନିକଟରେ ପହଞ୍ଚିପାରିବ ଏବଂ ଜଗନ୍ନାଥ ସଂଗୀତରେ ଶ୍ରୀଜଗନ୍ନାଥଙ୍କୁ ସଠିକ୍ ଆକଳନ କରିପାରିବ ।

ଓଡ଼ିଆ ବିଭାଗ
ଏରଞ୍ଚ କଲେଜ,
ଏରଞ୍ଚ, କଟକ



# ଜଗନ୍ମାତ ଜଗନ୍ନାଥ

ଦେବାଶୀଷ ଚକ୍ରବର୍ତ୍ତୀ



ଓଡିଶାର ସର୍ବମୟକର୍ତ୍ତା ଶ୍ରୀଜଗନ୍ନାଥଙ୍କର ଓଡିଆଙ୍କ ସହିତ ସଂପର୍କ ଅତ୍ୟନ୍ତ ନିବିଡ । ସେ କେବଳ ଆଧାତ୍ମିକ ଦେବତା ନୁହନ୍ତି । ସେ ସାମାଜିକ, ସାଂସ୍କୃତିକ ତଥା ରାଜନୈତିକ ଚେତନାର ପ୍ରତିଭୂ । ଶ୍ରୀଜଗନ୍ନାଥ ସଂସ୍କୃତି ହିଁ ଓଡିଶାର ସଂସ୍କୃତି । ଶ୍ରୀଜଗନ୍ନାଥଙ୍କ ପାଖରେ ବହୁମତ ପନ୍ଥର ସମନ୍ୱୟ ଘଟିଛି । ଯିଏ ଯେଉଁ ରୂପରେ ଚାହିଁଛି ତାଙ୍କୁ ସେ ସେହି ରୂପରେ ପାଇଛି । ସେ ଭକ୍ତ ପାଇଁ ପାଲଟିଛନ୍ତି କେତେବେଳେ କୋଦଣ୍ଡଧାରୀ ରାମଚନ୍ଦ୍ର ତ ପୁଣି କେତେବେଳେ ପାଲଟିଛନ୍ତି ମୁରଲିଧାରୀ କୃଷ୍ଣଚନ୍ଦ୍ର । ବୌଦ୍ଧମାନଙ୍କ ପାଇଁ ସେ ତଥାଗତ ଓ ଜୈନଙ୍କ ପାଇଁ ଜୀନନାଥ । ତେଣୁ ଶ୍ରୀଜଗନ୍ନାଥ ଚିରକାଳ ରହସ୍ୟମୟ । ସାଧାରଣ ମନୁଷ୍ୟ ତ ଦୂରର କଥା ଦେବତାମାନେ ମଧ୍ୟ ଏହା ଭେଦ କରିବାକୁ ଅକ୍ଷମ । ଏଣୁ କୁହାଯାଇଛି ସର୍ବଂ ରହସ୍ୟ ପୁରୁଷୋତ୍ତମସ୍ୟ, ଦେବା ନଜାନାନ୍ତି କୁତଃ ମନୁଷ୍ୟା । ଦେବୀ ପୂଜନର ପରଂପରା ଓଡିଶାରେ ଅତ୍ୟନ୍ତ ପ୍ରାଚୀନ । ତେଣୁ କେତେକ ଆଲୋଚକ ସର୍ବପୁରାତନ ଦେବବିଗ୍ରହ ଶ୍ରୀଜଗନ୍ନାଥଙ୍କ ସହିତ ଦେବୀ ଦୁର୍ଗାଙ୍କର ଅଭେଦ କଳ୍ପନା କରନ୍ତି । ଜଗତ ପାଳକ ଶ୍ରୀଜଗନ୍ନାଥ ଓ ଜଗତମାତା ଦେବୀ ଦୁର୍ଗାଙ୍କ ମଧ୍ୟରେ ରହିଥିବା ସାମଞ୍ଜସ୍ୟ ଏହି ଧାରାକୁ ଅଧିକ ଦୃଢୀଭୂତ କରିଥାଏ ।

ଅବତାରୀ ପୁରୁଷ ଭାବରେ ଶ୍ରୀଜଗନ୍ନାଥ ବହୁଭକ୍ତ ମାନସରେ ଗୃହୀତ ହୋଇ ଆସିଛନ୍ତି । କବି ଦିବାକର ଦାସ ଜଗନ୍ନାଥ ଚରିତାମୃତରେ ପରମବ୍ରହ୍ମ ଜଗନ୍ନାଥ/ଅବତାରଟି ଏଥୁ ଜାତ ବୋଲି ପ୍ରକାଶ କରି ଜଗନ୍ନାଥଙ୍କୁ ଅବତାରୀ ଭାବରେ ଉପସ୍ଥାପନା କରିଛନ୍ତି । ଏହାଛଡା ତାନ୍ତ୍ରିକ ପ୍ରବର ମନ୍ତ୍ରୀବର ତାଙ୍କ ରଚିତ ଜୟ ଚିନ୍ତାମଣି ଗ୍ରନ୍ଥରେ ଶ୍ରୀଜଗନ୍ନାଥଙ୍କୁ ଅବତାରୀ ପୁରୁଷ ବୋଲି ଚିହ୍ନିତ କରିଛନ୍ତି ।

ବେଦୋଦ୍ଧାରକରଂ ବହନ୍ତ ମବନୀ ଦ୍ରଂଷ୍ଟାଗ୍ର ରାଜକ୍ ଭୁବଂ<br>
ଲୀଳାଦାରିତ ଦୈତ୍ୟରାଜ ହୃଦୟମ୍ ମୟା ନଂଶାଦ୍ ବାମନମ୍<br>
ଦର୍ପୋପାନ୍ତକରଂ ଦଶାସ୍ୟଦଳନଂ ଧ୍ୱସ୍ତଂ ପ୍ରଳମ୍ବ କୃପା<br>
କାସଂ ମ୍ଳେଚ୍ଛ ବିନାଶ ନୈକ ନିପୁଣଂ ନୀଳାଦ୍ରିନାଥଂ ଭଜେ ।

ଶ୍ରୀଜଗନ୍ନାଥଙ୍କ ସଦୃଶ ଦେବୀଦୁର୍ଗା ମଧ୍ୟ ଦଶାବତାର ଧାରଣ କରିଛନ୍ତି । ତନ୍ତ୍ର ସଂଗ୍ରହରେ ଦେବୀଙ୍କର ଦଶାବତାର ସଂପର୍କରେ ଉଲ୍ଲେଖ ଅଛି । ତେଣୁ ଶ୍ରୀଜଗନ୍ନାଥ ମତ୍ସ୍ୟକୂର୍ମାଦି ଅବତାର ଗ୍ରହଣ କରିଥିବା ବେଳେ ଦେବୀ ଦୁର୍ଗା, କାଳିକା, ତାରିଣୀ ଓ ଭୁବନେଶ୍ୱରୀ ପ୍ରଭୃତି ଦଶାବତାର ଧାରଣ କରିଥାନ୍ତି । ତେଣୁ ଶ୍ରୀଜଗନ୍ନାଥ ଓ ଦେବୀଦୁର୍ଗା ଉଭୟଙ୍କ ମଧ୍ୟରେ ଏହି ସାମ୍ୟ ଲକ୍ଷ୍ୟଣୀୟ

ତିନୋଟି ଘଟଣା ଅବଲମ୍ବନରେ ଦେବୀ ଦୁର୍ଗାଙ୍କର ମହତ୍ତ୍ୱ ପ୍ରଖ୍ୟାପିତ ହୋଇଛି । ପ୍ରଥମତଃ ମହାମାୟାଙ୍କ ସହାୟତାରେ ମଧୁ କୈଟଭ ଦଳନ, ଦ୍ୱିତୀୟରେ ମହୀଷାସୁରମର୍ଦ୍ଦନ ଏବଂ ତୃତୀୟରେ ଶୁମ୍ଭ ନିଶୁମ୍ଭ ନିଧନ । ମହୀଷାସୁର ଅସୁର ପରି ବଳଶାଳୀ ଏବଂ ପଶୁପରି ବିବେକ ରହିତ । ମହିଷାସୁର ଦଳନ ମାଧ୍ୟମରେ ଦେବୀ ମଣିଷ ମଧ୍ୟରେ ଥିବା ପାଶବ ପ୍ରବୃତ୍ତିର ଦଳନ କରିଛନ୍ତି । ଶୁମ୍ଭ ନିଶୁମ୍ଭ ବଧ କାଳରେ ଦେବୀ ମହାକାଳୀ ରୂପ ଧାରଣ କରିଥିଲେ । ଯୁଦ୍ଧରେ ସହାୟତା କରିବାକୁ ସେ ନିଜ ଦେହରୁ ମାତୃକାଗଣଙ୍କୁ ଉତ୍ପନ୍ନ କରାଇଥିଲେ । ନିଶୁମ୍ଭ ଦେବୀଙ୍କ ଦ୍ୱାରା ନିହତ ହେବାରୁ ଶୁମ୍ଭ ଦେବୀଙ୍କୁ ତୁ ଅନ୍ୟର ବଳରେ ବଳୀୟାନ ବୋଲି ଭର୍ତ୍ସନା କରିବାରୁ ଦେବୀ ଗର୍ବୋନ୍ମତ୍ତ ଶୁମ୍ଭକୁ ଏକୈବାହଂ ଜଗତ୍ୟତ୍ର ଦ୍ୱିତୀୟା କାମମପରା ବୋଲି ପ୍ରକାଶ କରିଥିଲେ । ଏହାପରେ ମାତୃଗଣ ଦେବୀଙ୍କ ମଧ୍ୟରେ ଅନ୍ତର୍ହିତା ହୋଇଥିଲେ । ଦୁର୍ଗାଏକାକୀ ଶୁମ୍ଭକୁ ସଂହାର କରିଥିଲେ।

ଅନୁରୂପ ଭାବରେ ମହାପ୍ରଭୁ ଶ୍ରୀଜଗନ୍ନାଥ ହେଉଛନ୍ତି ପରଂବ୍ରହ୍ମ । ସେ ସର୍ବପୁରାତନ ଦେବ ବିଗ୍ରହ । ପରବର୍ତ୍ତୀ କାଳରେ ଦ୍ୱିବ୍ୟୂହ, ତ୍ରିବ୍ୟୂହ ଓ ଚତୁର୍ବ୍ୟୂହ ତତ୍ତ୍ୱରେ ଯଥାକ୍ରମେ ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ସୁଦର୍ଶନ ତାଙ୍କ ସହିତ ସଂଯୋଜିତ ହୋଇଛନ୍ତି । ଜଗନ୍ନାଥ ଅକ୍ଷର ଚତୁଷ୍ଟୟ ଯଥାକ୍ରମେ ଜ(ଜଗନ୍ନାଥ) ଗ(ବଳଭଦ୍ର)ନ(ସୁଭଦ୍ରା) ଓ ଥ(ସୁଦର୍ଶନ) ରୂପେ ଗୃହୀତ ହୋଇଛନ୍ତି । ତେଣୁ ଶ୍ରୀଜଗନ୍ନାଥ ଶବ୍ଦ ମଧ୍ୟରେ ଚତୁର୍ଦ୍ଧାମୂର୍ତ୍ତି ଗୁମ୍ଫିତ ହୋଇ ରହିଛନ୍ତି । ଶ୍ରୀମନ୍ଦିରରେ ବହୁ ଦେବଦେବୀ ନିରାଜିତ ହେଉଥିଲେ ମଧ୍ୟ ସେମାନେ ଶ୍ରୀଜଗନ୍ନାଥଙ୍କ ଅଂଶବିଶେଷ ହୋଇଥିବାରୁ ସେମାନଙ୍କ ନିରାଜନ ମାଧ୍ୟମରେ ବାସ୍ତବରେ ଶ୍ରୀଜଗନ୍ନାଥହିଁ ପୂଜା ପାଇଥାନ୍ତି ।

ପରଂବ୍ରହ୍ମ ଶ୍ରୀଜଗନ୍ନାଥ ତ୍ରିଗୁଣାତ୍ମିକ । ସେ ଜାଗ୍ରତାବସ୍ଥାରେ ସତ୍ତ୍ୱଗୁଣାତ୍ମକ ବିଷ୍ଣୁ, ସ୍ୱପ୍ନାବସ୍ଥାରେ ରଜୋଗୁଣାତ୍ମକ ବ୍ରହ୍ମା ଓ ସୁପ୍ତାବସ୍ଥାରେ ତମୋଗୁଣାତ୍ମକ ଶିବ । ଅନୁରୂପ ଭାବରେ ଦେବୀ ଦୁର୍ଗା ମଧ ତ୍ରିଗୁଣାତ୍ମିକା । ଚଣ୍ଡିରେ ଦେବୀଙ୍କର ଏହି ତ୍ରିଗୁଣ ରୂପର ପରିକଳ୍ପନା କରାଯାଇଛି । ସେ ନିତ୍ୟା ଏବଂ ସନାତନୀ । କାଳର ଅଧିଷ୍ଠାତ୍ରୀ ରୂପେ ସେ ମହାକାଳୀ । ଏହାଛଡା ଜଗତର ପାଳନକର୍ତ୍ତ୍ରୀ ରୂପେ ମହାଲକ୍ଷ୍ମୀ ରୂପରେ ତଥା ବିଦ୍ୟାଦାତ୍ରୀ ରୂପରେ ମହାସରସ୍ୱତୀ ଭାବରେ ବିଦିତା । ମହାକାଳୀ, ମହାଲକ୍ଷ୍ମୀ ଓ ମହାସରସ୍ୱତୀ ଯଥାକ୍ରମେ ଶ୍ରୀଜଗନ୍ନାଥ, ଦେବୀ ସୁଭଦ୍ରା ଓ ଶ୍ରୀବଳଭଦ୍ରଙ୍କ ପରି କୃଷ୍ଣ, ହରିଦ୍ରା ଏବଂ ଶ୍ୱେତବର୍ଣ୍ଣର ।

କେତେକ ଆଲୋଚକ ରତ୍ନ ସିଂହାସନରେ ଆରୂଢ ଶ୍ରୀଜଗନ୍ନାଥଙ୍କୁ ମହାକାଳୀ ଭାବରେ ଗ୍ରହଣ କରିଛନ୍ତି । ବିଷ୍ଣୁଙ୍କର ଶକ୍ତିର ନାମ କାଳୀ ।ବିଷ୍ଣୁଙ୍କୁ କାଳ ବୋଲି ପ୍ରକାଶ କରାଯାଇଛି । ମହାପ୍ରଭୁଙ୍କର ଆୟୁଧ କାଳଚକ୍ର ସୁଦର୍ଶନ ଶ୍ରୀ ଜିଉଙ୍କର ବାମଭାଗରେ ସଂସ୍ଥାପିତ । ପୂଜା ସମୟରେ ଶ୍ରୀ ଜିଉଙ୍କର ନାକରେ ନୋଲକ, ମୁଣ୍ଡରେ ଓଢଣୀ ଦିଆଯିବା ସହିତ ତାଙ୍କୁ ଦେବୀପ୍ରତିମା ରୂପରେ ନିରାଜନା କରାଯାଇଥାଏ ।ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଦେବୀ ସୁଭଦ୍ରା ଓ ସୁଦର୍ଶନ ମୂର୍ତ୍ତି ଚତୁଷ୍ଟୟଙ୍କୁ ତାନ୍ତ୍ରିକମାନେ ଶ୍ୟାମାଯନ୍ତ୍ର, ତାରାଯନ୍ତ୍ର, ଭୁବନେଶ୍ୱରୀଯନ୍ତ୍ର ଓ ଚକ୍ରାବ୍ଜ ଯନ୍ତ୍ର ଭାବରେ ଗ୍ରହଣ କରି ପ୍ରକାଶ କରିଛନ୍ତି–

ତାରାଯନ୍ତ୍ର ପ୍ରଳମ୍ବଘ୍ନୋ, ସୁଭଦ୍ରା ଭୁବନେଶ୍ୱରୀ
ଶ୍ୟାମା ଯନ୍ତ୍ରେ ଜଗନ୍ନାଥ ସାକ୍ଷାତ୍ ଦକ୍ଷିଣ କାଳିକା ।

ତେଣୁ ତନ୍ତ୍ରୋକ୍ତ ଦଶମହାବିଦ୍ୟାର ଆଦିମହାବିଦ୍ୟା ହେଉଛନ୍ତି ଶ୍ରୀଜଗନ୍ନାଥ । ଶ୍ୟାମା ଯନ୍ତ୍ରରେ ସେ ତେଣୁ ନିରାଜିତ ହୋଇଥାନ୍ତି । ଅପରପକ୍ଷରେ ଦଶ ମହାବିଦ୍ୟାର ଦ୍ୱିତୀୟ ମହାବିଦ୍ୟା ତାରାଯନ୍ତ୍ରରେ ଶ୍ରୀବଳଭଦ୍ର ଓ ତୃତୀୟ ମହାବିଦ୍ୟା ଭୁବନେଶ୍ୱରୀ ଯନ୍ତ୍ରରେ ଦେବୀ ସୁଭଦ୍ରା ଆରାଧିତ ହୋଇଥାନ୍ତି ।

ମହାପ୍ରଭୁ ଶ୍ରୀଜଗନ୍ନାଥ ଦାରୁବ୍ରହ୍ମ ଭାବରେ ଜଗତ ବିଦିତ । କାରଣ ତାଙ୍କର ଦାରବ ବିଗ୍ରହ । ଏହାଛଡା ଦାରୁ ଉପାସନା ପରଂପରା ସର୍ବପୁରାତନ । ଶାରଦୀୟ ଦୁର୍ଗାପୂଜାରେ ପ୍ରାଚୀନ ସଂସ୍କୃତିର ନିଦର୍ଶନ ସ୍ୱରୂପ ନବପତ୍ରିକା ପୂଜନ ବିଧାନ ପ୍ରଚଳିତ ଅଛି । କଦଳୀ, ସାରୁ, ହରିଦ୍ରା, ବେଲ, ଡାଳିମ୍ବ,ଧାନ ଓ ଅପରାଜିତା ପତ୍ର ପ୍ରଭୃତି ଦେବୀଙ୍କର ପ୍ରତୀକ ରୂପେ ପୂଜା ପାଇଥାନ୍ତି । ଏହାଛଡା ମହାପ୍ରଭୁ ଶ୍ରୀଜଗନ୍ନାଥ ନୀଳମାଧବ ରୂପରେ ଶବର ରାଜା ବିଶ୍ୱାବସୁଙ୍କ ଦ୍ୱାରା ପୂଜା ପାଉଥିଲେ । ଶ୍ରୀଜଗନ୍ନାଥଙ୍କ ଭଳି ଦେବୀଦୁର୍ଗା ମଧ ଶବର(ପୁଳିନ୍ଦ)ମାନଙ୍କ ଦ୍ୱାରା ନିରାଜିତା ହୋଇଥିବା କଥା ମହାଭାରତରୁ ଜଣାଯାଏ । ଶାରଦା ତିଳକ ଗ୍ରନ୍ଥରେ ଦେବୀ ଶବର କନ୍ୟା ଭାବରେ ବର୍ଣ୍ଣିତା ହୋଇଛନ୍ତି ।ଏହାଛଡା ଶ୍ରୀଜିଉଙ୍କର ରଥଯାତ୍ରା ପରି ଦେବୀଙ୍କର ମହାପୂଜା ଶବରୋତ୍ସବ ଭାବରେ କାଳିକା ପୁରାଣରେ ସ୍ୱୀକୃତିଲାଭ କରିଛି ।

ଦେବୀ ଦୁର୍ଗା ଶିବପତ୍ନୀ ଭାବରେ ଗୃହୀତ ହୋଇଥିଲେ ମଧ୍ୟ ଯଥାର୍ଥରେ ସେ ଥିଲେ ଶିବଙ୍କର ଅଂଶ ସମ୍ଭୁତା । ମହୀଷାର ଉତ୍ପୀଡନରେ ଭୟଭୀତ ଦେବକୁଳ ଉପାୟ ନିର୍ଦ୍ଧାରଣ ପାଇଁ ଦେବୀଙ୍କ ନିକଟରେ ପ୍ରାର୍ଥନା କରିବାରୁ ସେ ସମସ୍ତଙ୍କ ଶକ୍ତି ପୁଞ୍ଜରୁ ମହାଶକ୍ତି ସୃଷ୍ଟି କରିବା ପାଇଁ ପରାମର୍ଶ ଦେଇଥିଲେ । ସମସ୍ତ ଦେବତାଙ୍କର ଏକୀଭୂତ ଦେବପୁଞ୍ଜରୁ ଦେବୀ ସମ୍ଭୁତା ହୋଇଥିଲେ । ତେଣୁ ତାଙ୍କୁ ବିଷ୍ଣୁମାୟା ଭାବରେ ଅଭିହିତ କରାଯାଇଛି ।ଶ୍ରୀଜଗନ୍ନାଥ ଯେ ମହାବିଷ୍ଣୁ ତାହା ପୂର୍ବରୁ ଆଲୋଚନା କରାଯାଇଛି । ତେଣୁ ଦେବୀ ଦୁର୍ଗା ଶ୍ରୀଜଗନ୍ନାଥଙ୍କର ଅଂଶ ସ୍ୱରୂପା ।

ଆଶ୍ୱିନ ଶୁକ୍ଳପକ୍ଷ ଅଷ୍ଟମୀରୁ ଶୁକ୍ଳ ପକ୍ଷ ନବମୀ ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ଅନୁଷ୍ଠିତ ଦୁର୍ଗା ମାଧବ ଉପାସନା ଶ୍ରୀଜଗନ୍ନାଥଙ୍କ ସହିତ ଦେବୀ ଦୁର୍ଗାଙ୍କର ସଂପର୍କକୁ ଅଧିକ ଦୃଢୀଭୂତ କରିଥାଏ ।ଆଦି କବି ସାରଳା ଦାସ ଦେବୀଙ୍କୁ ପରମବୈଷ୍ଣବୀ ତଥା ବିଷ୍ଣୁ ବଲ୍ଲଭୀ ଭାବରେ ଅଭିହିତ କରି ପ୍ରକାଶ କରିଛନ୍ତି । ଜୟ ଜୟ ଶାରଳେ ଗୋ ବିଷ୍ଣୁର ବଲ୍ଲଭୀ/ ଜୟ ଜୟ ଶାରଳେ ଗୋ ପରମ ବୈଷ୍ଣବୀ । ସମୁଦ୍ର ମନ୍ଥନରୁ ବାହାରିଥିବା ଅମୃତକୁ ଅସୁରମାନଙ୍କ କବଳରୁ ରକ୍ଷା କରିବାକୁ ବିଷ୍ଣୁ ମୋହିନୀ କନ୍ୟାର ରୂପ ଧାରଣ କରିଥିଲେ । ବିଷ୍ଣୁଙ୍କର ମୋହିନୀ ରୂପରେ ଶିବ ମଧ ପ୍ରଲୁବ୍ଧ ହୋଇଥିଲେ ।ଶିବଙ୍କର ମନଦଶା ଜାଣିପାରି ତାଙ୍କୁ ପରବର୍ତ୍ତୀ କାଳରେ ସେ ପ୍ରାପ୍ତ ହେବ ବୋଲି ବିଷ୍ଣୁ ପ୍ରକାଶ କରିଥିଲେ । ତେଣୁ ମହିଷାସୁର ନିଧନ ପାଇଁ ଦୁର୍ଗାରୂପରେ ସେ ସମ୍ଭୁତା ହୋଇ ଶିବପତ୍ନୀ ଭାବରେ ପରିଚିତ ହୋଇଥିଲେ । ତେଣୁ ଦେବୀଙ୍କ ସହିତ ଶ୍ରୀଜଗନ୍ନାଥଙ୍କ ଅଭେଦତ୍ୱ ଏଥିରୁ ସ୍ପଷ୍ଟ ଅନୁମିତ ।

ଶ୍ରୀମନ୍ଦିରରେ ଦୁର୍ଗାପୂଜାର ପ୍ରଚଳନ ଏହାର ଏକ ଉଜ୍ଜ୍ୱଳ ନିଦର୍ଶନ । ଶ୍ରୀମନ୍ଦିରରେ ଦୁର୍ଗାପୂଜା ପରମ୍ପରା



ଅର୍ବାଚିନ ନୁହେଁ । କପିଳେନ୍ଦ୍ର ଦେବଙ୍କ ପୂର୍ବରୁ ଏହା ଶ୍ରୀମନ୍ଦିରରେ ଅନୁଷ୍ଠିତ ହୋଇ ଆସୁଛି । ଷୋଡଶ ଶତାବ୍ଦୀର ଉତ୍ତରାର୍ଦ୍ଧରେ ପ୍ରଥମ ରାମଚନ୍ଦ୍ରଦେବଙ୍କ ରାଜତ୍ୱ କାଳରେ ରାଜଗୁରୁ ବର୍ଦ୍ଧନ ମହାପାତ୍ରଙ୍କ ବିରଚିତ ଦୁର୍ଗୋତ୍ସବ ଚନ୍ଦ୍ରିକାରୁ ଦୁର୍ଗାପୂଜନ ସାମରିକ ତଥା ସାମାଜିକ ପରମ୍ପରା ରୂପେ ଗୃହୀତ ହୋଇଥିବାର ସୂଚନା ମିଳିଛି । ପତି ଅପମାନ ସହ୍ୟକରିନପାରି ପିତା ଦକ୍ଷଙ୍କର ହୋମାନଳରେ ଝାସ ଦେଇ ପ୍ରାଣ ବିସର୍ଜନ କରିଥିବା ସତୀଙ୍କର ଦଗଧ କଳେବର ବିଷ୍ଣୁଙ୍କ ନିର୍ଦ୍ଦେଶରେ ସୁଦର୍ଶନଙ୍କ ଦ୍ୱାରା ବିଭକ୍ତ ହୋଇଥିଲା । ସତୀଙ୍କ କଳେବରର ବିଭିନ୍ନ ଅଂଶ ଭାରତର ବିଭିନ୍ନ ସ୍ଥାନରେ ପଡି ଏକାବନଟି ଶକ୍ତିପୀଠ ସୃଷ୍ଟି ହୋଇଥିଲା । ଯାଜପୁରରେ ଦେବୀଙ୍କର ନାଭି ଓ ଶ୍ରୀକ୍ଷେତ୍ରରେ ତାଙ୍କର ପାଦ ପଡି ଥିବାରୁ ଏହି ଦୁଇପୀଠ ଯଥାକ୍ରମେ ନାଭିଗୟା ଓ ପାଦପୀଠ ଭାବରେ ଅଖ୍ୟାତ । ସେହିପରି ଆଲୋଚକ ମାନେ ଶ୍ରୀକ୍ଷେତ୍ରକୁ ରସନା କ୍ଷେତ୍ର ଭାବରେ ପ୍ରକାଶ କରିଥାନ୍ତି । ଯାଜପୁରରେ ଦେବୀବିରଜା ଭୈରବୀ ଭାବରେ ଗୃହୀତା ହୋଇଥିବା ବେଳେ ଶ୍ରୀକ୍ଷେତ୍ରରେ ବିମଳା ଓ ଶ୍ରୀଜଗନ୍ନାଥ ଯଥାକ୍ରମେ ଭୈରବୀ ଓ ଭୈରବ ଭାବରେ ପରିଚିତ ହୋଇଛନ୍ତି । ତେଣୁ ନୀଳତନ୍ତ୍ର ପ୍ରକାଶ କରିଛି– ବିମଳାସା ମହାଦେବୀ ଜଗନ୍ନାଥସ୍ତୁ ଭୈରବ । ଆଶ୍ୱିନ କୃଷ୍ଣ ଅଷ୍ଟମୀ ଠାରୁ ଶୁକ୍ଳ ନବମୀ ପର୍ଯ୍ୟନ୍ତ ଶ୍ରୀମନ୍ଦିରରେ ଷୋହଳ ଦିନ ବ୍ୟାପୀ ଦୁର୍ଗାପୂଜା ଅନୁଷ୍ଠିତ ହୋଇଥାଏ । ଷୋହଳ ଦିନବ୍ୟାପୀ ହୋଇଥିବାରୁ ଏହାକୁ ଷୋଳପୂଜା ବୋଲି ମଧ୍ୟ କୁହାଯାଇଥାଏ । ଏହି ସମୟରେ ଦେବୀ ବିମଳାଙ୍କ ସହିତ ମାଧବ ଏକତ୍ର ରୁନ୍ଧା(ବନ୍ଧା)ହୁଅନ୍ତି । ଏହାକୁ ଶାକ୍ତ ଗୁଣ୍ଡିଚା ବୋଲି ମଧ୍ୟ କୁହାଯାଇଥାଏ । ଶୁକ୍ଳ ନବମୀ ଦିନ ଦେବୀ ବିମଳା ଓ ମାଧବ ରଥାରୂଢ ହୋଇ ଦୋଳ ମଣ୍ଡପ ସାହିର ନାରାୟଣୀ ମନ୍ଦିରକୁ ବିଜେ କରିଥାନ୍ତି । ଏହା ଗୁପ୍ତଗୁଣ୍ଡିଚା ଭାବରେ ମଧ୍ୟ ପରିଚିତ ଲାଭ କରିଛି । ଶ୍ରୀଗୁଣ୍ଡିଚାରେ ଶ୍ରୀଜଗନ୍ନାଥ ଭଗ୍ନୀ ସୁଭଦ୍ରା ଓ ଭ୍ରାତା ବଳଭଦ୍ରଙ୍କ ସହିତ ଯାତ୍ରାକରିଥିବାରୁ ପତ୍ନୀ ଲକ୍ଷ୍ମୀ ରୁଷ୍ଟାହୋଇଥିଲେ । ତେଣୁ ରୁଷ୍ଟାପତ୍ନୀଙ୍କର ମାନଭଞ୍ଜନ କରିବାକୁ ଶ୍ରୀଜଗନ୍ନାଥ ମାଧବ ରୂପରେ ଓ ଲକ୍ଷ୍ମୀ ଦୁର୍ଗା ରୂପରେ ଏହି ଯାତ୍ରା କରୁଥିବାରୁ ଏହାକୁ ଗୁପ୍ତ ଗୁଣ୍ଡିଚା ବୋଲି କୁହାଯାଇଥାଏ ।

ବିଭିନ୍ନ ଶାସ୍ତ୍ର ପୁରାଣରେ ବଳଭଦ୍ର ଶିବ ସ୍ୱରୂପ ଓ ଦେବୀ ସୁଭଦ୍ରା ଆଦ୍ୟାଶକ୍ତି ସନାତନୀ ଦେବୀ ଦୁର୍ଗା ରୂପେ ସ୍ୱୀକୃତ । ଶ୍ରୀଜଗନ୍ନାଥ କେତେବେଳେ ଦେବୀ ସୁଭଦ୍ରାଙ୍କର ଜ୍ୟୋଷ୍ଠଭ୍ରାତା ତ ପୁଣି କେତେବେଳେ ନିଜେ ଜଗତ ଜନନୀ ଦେବୀ ଦୁର୍ଗା ରୂପେ ପରିଚିତ । ଶ୍ରୀଜଗନ୍ନାଥ ଯଥାର୍ଥରେ ରହସ୍ୟମୟ । ତେଣୁ ସେ ଏକାଧାରରେ ଶିବ ଓ ଶକ୍ତି । ସେ ଯେଉଁପରି ପରମଶିବ ସେହିପରି ପରମ ବୈଷ୍ଣବୀ ଦେବୀ ଦୁର୍ଗା । ତେଣୁ ଜଗତପାଳକ ଶ୍ରୀଜଗନ୍ନାଥଙ୍କ ଠାରେ ଜଗତ ଜନନୀ ଦେବୀ ଦୁର୍ଗାଙ୍କର ସଂଧାନ ଅସଂଗତ ମନେ ହେବ ନାହିଁ ନିଶ୍ଚୟ ।

ମଣ୍ଡୁଆ, କେନ୍ଦୁଝରଗଡ
ପିନ୍ – ୭୫୮୦୭୪






# ମାଣିକ

ସୁଧୀର ମାନସିଂହ



ଭୋର ସକାଳ । କାଉ କୋଇଲିଙ୍କ କଡ ଲେଉଟାଇବାର ବେଳ । ଆକାଶରୁ ପାହାନ୍ତିଆ ତାରା ଏଯାଏ ଘରକୁ ଲେଉଟିନି । ଅନ୍ଧାର ହଟିନାହିଁ । ଝିଙ୍କାରିର ଝିଂ ଝିଂ ତଥାପି ଲାଗିରହିଛି । ଗୁହାଳ ଘରେ ବାଛୁରୀଗୁଡାକ ବି ମାଆକୋଳ ଛାଡିନାହାନ୍ତି । ହମ୍ବା ରଡି ହେବାକୁ ଆହୁରି ଡେରିଅଛି । ଅଥଚ ମାଣିକ ଭୋରୁ ଭୋରୁ ଉଠିବସି ପାଇଟି ସାରିଦେଲାଣି । ଗାଁ ପୋଖରୀକୁ ବାହାରିଛି ଗାଧୋଇଯିବାକୁ । ବାସନକୁସନ ସଫା, ସୁତୁରାରେ ଝଣଝାଣ ଶବ୍ଦରେ ପାଖଘର ଛବିମାଆ ଉଠି ପଡିଛି । ସହଜେ ଛବିମାଆର କଫ ବେମାରୀ ଯେ, ରାତିସାରା ଖଁ ଖାଁ ସଁ ସାଁ ହେଉଥାଏ । ବିଚାରୀ ବଡ କଷ୍ଟ ପାଉଥାଏ । ପାଖଘରର ଶବ୍ଦରେ ଉଠିପଡି ଖଣ୍ଡିକାଶ ଭିତରେ ବୁଢ଼ୀ ଡାକପକେଇଛି । ଆଲୋ ହେ, ମାଣିକ ! ଆଜି ଏତେ ସକାଳୁ ଉଠି କଣ କରୁଛୁ । ତତେ କଣ ଭୂତ ଉଠାଇଦେଇଚି ନାଁ କଣ ? ମାଣିକ କହୁଥାଏ, ନାଇଁ ଲୋ ମାଆ ! ଭୂତ ନାଇଁ ମ, ପାହାନ୍ତିଆ ପହରରେ ବଡଠାକୁରଙ୍କୁ ସପନରେ ଦେଖିଲି । ମାଆ ଲୋ ! ଚତୁର୍ଦ୍ଧା ମୂରତୀ । ସୁନାବେଶ ବେଳର ରୂପ । ଝୁଣା ଗୋଗୁଳ କର୍ପୂରର ମହକରେ ମୁଁ ମୋହିତ ହୋଇଯାଉଥାଏ । ମୁଁ ମୋରି କାନରେ ଠିକ୍ ଠିକ୍ ଶୁଣିଛି । ସେ ଯେପରି ମତେ କହୁଥାନ୍ତି, ଆଲୋ ମାଣିକ ! ଆଜି କଣ ଦହି ବିକି ଯିବୁନିକି ? ଶୋଇଛୁ କଣ ? ଧଡକରି ନିଦଟା ଭାଙ୍ଗିଗଲା । କେତେ ଖୋଜିଲି । ଆଉ ଦେଖା ପାଇଲିନି । ସତକୁ ସତ ତାଙ୍କର ସେ ଅଭୁଲା ମନୋହର ରୂପ ମୋ ମନ ଭିତରେ ରହିଯାଇଥାଏ । ମନେ ମନେ ବହୁତ ହେଜି ହେଲି । ବଡଠାକୁରଙ୍କ ଏଇମୁହଁ, ଏଇଆଖି, ଏଇ ମୂରତୀ କେଉଁଠି କାଳେ ଦେଖିଛି । ସେଇ ସପନରେ ଆସିଗଲେ କି ? ବହୁ କଷ୍ଟରେ ମନେପଡିଲା ମାମୁଁଙ୍କ ସାଙ୍ଗରେ ଶ୍ରୀକ୍ଷେତ୍ର ଯାଇଥିଲାବେଳେ ଏଇ ସୁନାବେଶ ରୂପ ସେ ଦେଖିଥିଲା । ମାଣିକ ଉତ୍ତରରେ ଛବିମାଆ ସ୍ତବ୍ଧ ହୋଇଗଲା । ଛବିମାଆ ବୁଢୀ କହିଲା ଧନ୍ୟ ଲୋ ମାଣିକ ! ଆମଠୁ ବୟସରେ କେତେ ସାନ ତୁ, ତୋର ଦିଅଁଦେଉଳ ଭାବନା ପାଇଁ ସିନା ବଡଠାକୁର ସପନରେ ଆସିଲେ । ପାହାନ୍ତି ପହରରୁ ବଡଦିଅଁଙ୍କୁ ଦେଖିଛୁ ଆଜି ଦିନଯାକ ତୋର ଭଲରେ କଟିବ । ଦହି ହାଣ୍ଡି ବିକ୍ରି ହୋଇଯିବ ।

ସବୁଦିନ ପରି ଗାଧୁଆପାଧୁଆ ସାରି ତୁଳସୀ ଚଉରାରେ ପାଣି ଲଗାଇ କଣ ଟିକିଏ ପାଟିରେ ପକାଇଦେଇ ମାଣିକ ବାହାରି ପଡିଲାଣି ରାସ୍ତାକଡ ଚଟି ଘର ଛକକୁ ଦହି ହାଣ୍ଡି ଧରି । ପାଟଣା ଅଞ୍ଚଳ ଦହି ଭାରି ନାଁ । ବାଉଁଶ ପାଛିଆରେ ଦହି ଢାଳିଦେଲେ ପାଣି ଟୋପାଏ ଗଳିବନି । ସେଇ ଅଞ୍ଚଳର ଗୋପାଳଗୋପାଲୁଣୀମାନେ ବଡନୀତିରେ ଦହି ତିଆରି କରନ୍ତି । ଏଇ ଅଞ୍ଚଳର ଦହିକୁ ସରଦହି, ବସାଦହି, ବାଉଁଶିଆ ଦହି ବା ପାଟଣା ଦହି ବିଭିନ୍ନ ନାଁରେ ଖୋଜିଥାନ୍ତି । ମାସ ମାସ ଆଗରୁ ଏଇ ଦହି ପାଇଁ ବରାଦ ।

ଅଧିକନ୍ତୁ ପାଟଣାଛକରେ ମାଣିକଦହିର ଗୋଟେ ନିଆରା ଆଦର ରହିଛି । ପଥଚାରୀମାନଙ୍କର ସେଇ ଦହି ଉପରେ ବଡଶ୍ରଦ୍ଧା । ଯାହା ହେଉ ସକାଳୁ ସକାଳୁ ମାଣିକ ଦହିହାଣ୍ଡି ଧରି ଚଟିରେ ବସିଯାଇଛି । ବେଳ ପହରେ ହେଲାଣି କାଇଁ ଜଣେ ହେଲେ କେହି ଗରାଖ ଦେଖାନାହିଁ । ଆଜି କି ତିନିଦିନ ହେଲା ଏଇ ଦଶା ଲାଗି ରହିଛି । ମାଣିକ ମନ ଭିତରେ ନାନା ପ୍ରଶ୍ନ ଉଙ୍କି ମାରୁଚି ।



ଏଇ ଖିର ଦହି ନେଇ ତା ସଂସାର । ବାଡି ଗୋବରେ ଗୋବାଏ ଜମିନାହିଁ । ଚିଲିକା କୂଳର ନାଶି ଅଞ୍ଚଳଟା ଲାଗି ଗାଁର ମରଦମାନେ ଗାଈମଇଁଷି ଧରି ନାଶିକୂଳରେ ପଧା କରି ପଡି ରହିଛନ୍ତି । ଲୁଣା ମଧୁର ଉଭୟ ଜଳକୁ ସହି ଆସିଥିବା ନଳଘାସ ଗୁଡାକ ଗୋରୁ ମଇଁଷିଙ୍କ ଖାଦ୍ୟ । ନଡାକୁଟା କାଁ ଭାଁ ଦରକାର ହୁଏ । ସକାଳୁ ଗୋଠକୁ ଗଲାବେଳେ ବେଳାଏ ସନ୍ଧ୍ୟାରେ ଫେରିବା ବେଳେ ଆଉ ବେଳାଏ ଏଇପରି ଦିବେଳା ଗାଈଦୁହାଁ । ନାଶିଘାସ ଛଡା ଆଉ ସେମାନଙ୍କୁ କିଏ ବା କଣ ଦେଉଛି । ଗାଈଗୋରୁଙ୍କ ପାଇଁ ଦିଅଁ ସିନା ନାଶିଘାସ ଖଂଜି ଦେଇଛନ୍ତି । କିନ୍ତୁ କ୍ଷୀରଦହି ବିକା ନହେଲେ ଏଇ ମଣିଷ ବଞ୍ଚିବେ କିମିତି ? ସମସ୍ତେ ତ ଠକ୍‌ଠାକ୍ ମରିଯିବେ ।

ମାଣିକ ଅନେକ ଆଗକୁ ଆଗକୁ ଭାବି ଚାଲିଛି । ପାହାନ୍ତିଆ ପହରରେ ବଡଠାକୁରଙ୍କୁ ସପନରେ ଦେଖିକି ମନରେ ବେଶ୍ ଆଶା ବାନ୍ଧିଥିଲା । ଆଶାଥିଲା ଦିନଟା ଭଲରେ କଟିବ । ବେପାରଟା ଭଲ ହେବ । ସେ ଆଶା ମଉଳିବାକୁ ବସିଲାଣି । ଏଇ ଆଶା ନିରାଶର ଭଉଁରୀ ଭିତରେ ମାଣିକ ଅନାଇଁ ବସିଛି । ଦୁଇଟା ମରାଠା ବରକନ୍ଦାଜ ହେବେ କି ? ଦୁଇଟା କଳା ଆଉ ଧଳା ଘୋଡାରେ ଦୁଇଟା ସୈନ୍ୟ ଶୀରୀକ୍ଷେତ ଆଡୁ ମାଡିଆସୁଛନ୍ତି । ମାଣିକ ଭୟରେ ଦହିହାଣ୍ଡି ଧରି ଫେରିଯିବାକୁ ବାହାରିଛି । ଚାହୁଁ ଚାହୁଁ ଦୁଇଜଣ ଯାକ ଦୁଇଟା ଘୋଡାରୁ ଓହ୍ଲାଇପଡିଲେ । ଗୋରା ସୈନ୍ୟଜଣକ ଟିକିଏ ଗମ୍ଭୀର । ଶ୍ୟାମଳବର୍ଣ୍ଣର ସୈନ୍ୟଜଣକ ହସକୁରା । କଥା କହିବା ସମୟରେ ତା ଭୂଲତା ନାଚିଯାଉଥାଏ । ହସ ହସ କଣ୍ଠରେ ସେ କହିଲା ଏ ଝିଅ ଆମେ ଦହି ଖାଇବାକୁ ତୋ ପାଖରେ ଅଟକିଗଲୁ । ତୋ ଦହି ପରା କୁଆଡେ ବଢିଆ । ତୁ କଣ ରାଜାଘର ସିପାହୀ ଦେଖି ଡରିଯାଉ ନା କଣ ? ଆମକୁ ଦେଖିତ ତୁ ଦହିହାଣ୍ଡି ଧରି ଗାଁ ମୁହାଁ ହେବା ଜଣାଯାଉଥିଲା । ମାଣିକ କୋଉ ଛାଡିବା ମାଇପି । କହିଲା-ସାତ ଚକଟା ପୋଲୁହ ଘଣ୍ଟା, ବିଭୂତିଭୂଷଣ ଗାଲିଶି କଟା ହଇଓ ବାବୁ ଦାଣ୍ଡକୁ ବେପାର ପାଇଁ ଘରଓଳି ଡେଇଁ ଆସିବା ପରେ ଡରିବି କାହାକୁ ବା । କଣ କା ଓଳିରେ ଘର କରିଛି । ବଢାଏ ବଢାଏ କରି ମାଣିକ ଦହି ବଢାଇ ଚାଲିଛି । ଦିଜଣ ଯାକ ମାଣିକ ଆଣିଥିବା ଦିହାଣ୍ଡି ଯାକ ଦହି ଖାଇଦେଲେ । ମାଣିକ କାବା ହୋଇ ଚାହିଁରହିଛି । ପେଟରେ କଥା ରଖିପାରିଲାନି । ଆଲୋ ମାଆଲୋ ! ଦିହାଣ୍ଡି ଯାକ ଦହି ମୋର ଖାଇଗଲେ । ତମ ଦିଜଣଙ୍କର ସେଇଟା ଗୋଟେ ଗୋଟେ ପେଟ ନାଁ ନୀଳାଚଳ ସମୁଦର । ପଇସା ରଖିଚଟି ? ଦିଜଣ ଯାକ ମାଣିକ କଥାଶୁଣି ହସିହସି ନାକେଦମ୍ । ଚଉଷଠି ପଉଟି ଯାହାଙ୍କୁ ନିଅଣ୍ଟ ହଉଛି ଏ ଦିହାଣ୍ଡି ଦହି କଥା ମାଣିକ ପଚାରୁଛି, କି ଉତ୍ତର ଅବା ଦେବେ ।

ମାଣିକ ପୁଣି ପଚାରୁଛି, ହଉ ସାଆନ୍ତେ ଖାଇସାରିଲଣି ତ, ପଇସା କଉଡି ଦିଅ । ତେଣେ ଘରେ ସମସ୍ତେ ଚାହିଁ ରହିଥିବେ । ଦିଜଣ ଯାକ ମାଣିକକୁ ବୁଝାଉଥାନ୍ତି, ଆଲୋ ମାଣିକ ! ଆମ ପାଖରେ ପଇସା କଉଡି କାଇଁ ? ରଜା ବିପଦରେ ପଡିଛନ୍ତି ବୋଲି ଦକ୍ଷିଣକୁ ଆମେ ଯୁଦ୍ଧକୁ ଯାଉଛୁ । ଏଇ ରତ୍ନ ମୁଦିଟା ରଖ । ରଜା ଏଇବାଟେ ନିଶ୍ଚେ ଯିବେ । ତାଙ୍କୁ କହିବୁ କାଳିଆ ବଳିଆ ଦୁଇଭାଇ ଯୁଦ୍ଧକୁ ଗଲେ । ବାକିରେ ଦହି ଖାଇଛନ୍ତି । ରତ୍ନ ମୁଦିଟା ରଜାଙ୍କୁ ଦେଇଦେଲେ ବାକି ପଇସା ଦେଇଦେବେ ବୋଲି ସେ ଦୁଇଭାଇ କହିଛନ୍ତି । ତୋ ପଇସା ପାଇବାରେ ଆଉ ଅସୁବିଧା ନାଇଁ ।

ମାଣିକ ବଡ ଦ୍ୱନ୍ଦ୍ୱରେ ପଡିଗଲା । ଯଦି ରାଜା କି ରାଜକର୍ମଚାରୀ କେହି ନ ଆସିଲେ ଏ ରତ୍ନ ମୁଦି ସେ ନେଇ କଣ ବା କରିବ । ଗୋପାଳ ସାହିରେ ରତ୍ନମୁଦିର ମୂଲ୍ୟ କିଏ ଦେବେ ? ଏମାନେ ତ ଖାଇସାରିଲେଣି । କଣ ବା କରିପାରିବ । ଯଦି ବା ଅଟକାଇ ରଖେ କେତେବେଳଯାଏଁ ଏଠି ସେ ପଡିରହିବ । ଥଳକୂଳ ପାଉନି ମାଣିକ । ମନେମନେ ଭାବିଚିନ୍ତି ପୁଣି ପଚାରିଲା, କହିଲ ଦେଖି ତୁମ ଦୁଇଜଣଙ୍କ ନାଁ ଆଉ ଠିକଣା । ରାଜାଙ୍କୁ ମୁଦି ଦେଇ ପୁଣି କହିବି ତ ।

କାଳିଆ ପୁଣି ମୁରୁକି ହସି କହିଲା ମାଣିକ ! ଆମେ ପରା ଦୁଇଭାଇ କାଳିଆ ଆଉ ବଳିଆ । ଆମ ଘର ବଡଦେଉଳ । ଶିରୀକ୍ଷେତର ପୁରୀ ମାର୍ଫତ ଗଜପତି ରାଜା । ଏ ମୁଦି ଅଛି ତେଣୁ ତୋ ପଇସା ପାଇବାରେ ହେଳା ହେବନି । ତୁ ଆମକୁ ଆଉ ଅଟକା ନା । ଯୁଦ୍ଧରୁ ଫେରିଲେ ପୁଣି ଦେଖାହେବ । ଏତିକି କହି ତ୍ୱରିତ ବେଗରେ ଦୁଇଭାଇ ଘୋଡା ଛଟାଇ ଚାଲିଗଲେ ।

ମାଣିକ ମୁଣ୍ଡରେ ହାତ ଦେଇ ବସିଛି । ରାଜା କେତେବେଳେ ଆସିବେ । ତା ଦହି ପଇସା ପାଇବ । ତିନିଦିନ ଯାକ ଗରାଖ ପାଇନଥିଲା । ଆଜି ଭଲରେ ଭଲରେ ସକାଳ ପାହିଥିଲା । ଭାବିଥିଲା ଭଲ ଗରାଖ ପାଇବ । କିନ୍ତୁ ଭଲ ଗରାଖ ଦିଜଣ ଜୁଟିଲେ ଯେ, ଦିହାଣ୍ଡି ଯାକ ଦହି ଖାଇଗଲେ । ଏବେ ପଇସା କଉଡି ପାଇଁ ଜଗିବସିଛି ।

ଦୂରରୁ ଗୋଟେ ଝଡତୋଫାନ ମାଡିଆସିବା ପରି ଧୂଳିଉଡି ଆସୁଛି । ଦେଖେ ତ ସତକୁ ସତ ରଜାଘର ପଲଟନ ମାଡି ଆସୁଛି । ମାଣିକ ମନରେ ପ୍ରାଣ ପଶିଲା । ରାସ୍ତା ମଝିକି ମାଡିଆସିଲା ।





ସିଧାସିଧା ରାଜାଙ୍କ ପାଖେ ଯାଇ ହାଜର । ମାଣିକର ବ୍ୟଥାତୁର ଅଭିଯୋଗ ''ରାଜା ଯୁଦ୍ଧକୁ ସଇନଗୁଡାକ ନଉଚ, ହାତରେ ପଇସା କଉଡି ଦଉନା । ତମର ଦିଜଣ କାଳିଆ ଧଳିଆ ସଇନ ମୋର ଦିହାଣ୍ଡି ଦହି ଖାଇଯାଇଛନ୍ତି, ମାଗିଲାରୁ ପଇସା କଉଡି ଦେଲେନି । କହିଲେ ରାଜା ଆସିଲେ ଦେବେ ।'' ରାଜା ବିସ୍ମୟଚକିତ ହୋଇପଡିଲେ । କାହାର ଏତେ ଆସ୍ପର୍ଦ୍ଧା । ରାଜାଙ୍କ ନାମରେ ବାକିରେ ଦହି ଖାଇଯିବ ।

ମାଣିକ ପୁଣି କହିଲା ମଣିମା ସାଆନ୍ତେ ପଇସା କଉଡି ପାଇଁ ଜିଦ୍ କରିବାରୁ ଏ ରତ୍ନ ମୁଦି ଦେଇ ଯାଇଛନ୍ତି । କହିଲେ ଏଇଟା ତୁ ବନ୍ଧା ରଖ । ରାଜାଙ୍କୁ ଦେଲେ ପଇସା ପାଇବୁ । ରାଜା ମୁଦିଟା ନେଇ ଦେଖନ୍ତି ଏ ମୁଦି ତ ଶ୍ରୀଜୀଉଙ୍କର । ବିସ୍ମୟ ବିସ୍ଫାରିତ ନେତ୍ରରେ ରାଜା ମାଣିକକୁ ଚାହିଁରହିଛନ୍ତି । ଦୁଇଭାଇଙ୍କ ଚେହେରା, ଆଲୋଚନା, ରତ୍ନମୁଦି ସବୁଥିରୁ ପ୍ରତୀୟ ଯାହା ହେଉଛି ରାଜା ବିଶ୍ୱାସ କରିପାରୁନାହାନ୍ତି । ଏତିକିବେଳେ ଶ୍ରୀକ୍ଷେତ୍ରରୁ ଭିତରଛୁ ମହାପାତ୍ର ଆସି ଗଜପତିଙ୍କୁ ତତ୍କାଳ ସମ୍ବାଦ ଦେଲେ ଯେ, ଶ୍ରୀଜଗନ୍ନାଥଙ୍କ ରତ୍ନ ମୁଦି ମିଳୁନାହିଁ । ବଡପଣ୍ଡାଙ୍କ ପକ୍ଷରୁ ଦଧିଭୋଗ ହୋଇନଥିଲେ ହେଁ ଶ୍ରୀଜୀଉଙ୍କ ନିକଟରେ ଦଧିଭୋଗ ହୋଇଥିବାର ଆଲୌକିକ ପ୍ରମାଣ ଦୃଶ୍ୟମାନ ହେଉଛି । ରାଜା ନିଶ୍ଚିତ ହୋଇଗଲେ ଯେ, ଏଇ ଦୁଇଭାଇ ହିଁ ଯଥାର୍ଥରେ ଜଗନ୍ନାଥ ବଳଭଦ୍ର । ମାଣିକର ଅପୂର୍ବ ସରଳତାରେ ଦୁଇଭାଇ ମୋହଗ୍ରସ୍ତ ହୋଇ ଏଇଠାରେ ଦଧିଲାଗି କରିଛନ୍ତି । ମାଣିକକୁ ତାର ପ୍ରାପ୍ୟ ଦେଇ ରତ୍ନମୁଦିକୁ ଭିତରଛୁ ମହାପାତ୍ରଙ୍କୁ ଦେଇ ସୁରକ୍ଷିତ ରଖିବାକୁ ନିର୍ଦ୍ଦେଶ ଦେଲେ ।

ଯୁଦ୍ଧର ଶୁଭଅନୁକୂଳ ଓ ବିଜୟର କାମନା କରି ଦଧି ଖାଇଯିବାର ଉତ୍କଳୀୟ ପରମ୍ପରା ସ୍ୱୟଂ ଶ୍ରୀଜୀଉ ରକ୍ଷା କରିଛନ୍ତି ଜାଣି ରାଜା କୃତଜ୍ଞ ନେତ୍ରରେ ଚାହିଁରହିଲେ ।

ଆଜି ସ୍ୱୟଂ ନାୟକ ଶ୍ରୀଜଗନ୍ନାଥ । ଭକ୍ତର ସମ୍ମାନ ରକ୍ଷା ପାଇଁ କାଞ୍ଚି ଅଭିଯାନରେ ଯୋଗ ଦେଇଛନ୍ତି । ଗଜପତିଙ୍କର ଆଉ ଯୁଦ୍ଧ ଜୟ ପାଇଁ ବ୍ୟାକୁଳତା ନଥିଲା ।

ରାଜା ପୁରୁଷୋତ୍ତମ ଭାବ ଗଦ୍ ଗଦ୍ କଣ୍ଠରେ ମାଣିକକୁ କହୁଥାନ୍ତି ହତଭାଗିନୀ ଏତେ ପାଖରେ କାଳିଆଧଳିଆ ଦୁଇ ଠାକୁରଙ୍କୁ ପାଇବି ଚିହ୍ନି ପାରିଲୁନି । ଦ୍ୱାପରରେ ଗୋପାଙ୍ଗନାଙ୍କର ଦହିହାଣ୍ଡିରୁ ଯେପରି କାହ୍ନା ଦହି ଖାଇ ଯାଇଥିଲେ ଆଜି ତୋରି ଦହିହାଣ୍ଡି ଉପରେ ଦୁଇଭାଇଙ୍କର ନଜର ଲାଗିଗଲା । ରାଜାଙ୍କର ଆଦେଶରେ ସେଇଦିନୁ ପାଟଣା ଗାଁ ମାଣିକ ପାଟଣା ନାମରେ ଖ୍ୟାତ ଏବଂ ସେହିଦିନୁ ମାଣିକ ଏ ଜାତିର ଇତିହାସର ଏକ ବୃହତ୍ ଅଂଶ ପାଲଟିଯାଇଛି ।

ଇତିହାସ ରଙ୍ଗସ୍ଥଳୀ ତୁ ଚିଲିକା
ତୋର ତୀରେ ପରା ଶ୍ରୀମତୀ ମାଣିକା
ହସ୍ତେ ଭୁଞ୍ଜିଥିଲେ ସାଦରେ ଲବଣୀ
ଭାବଗ୍ରାହୀ ପ୍ରଭୁ ଭକ୍ତ ଚିନ୍ତାମଣି ।

('ଚିଲିକା'-କବିବର ରାଧାନାଥ ରାୟ)

ଏନ୍ ୫/୨୮୧, ଆଇ.ଆର୍.ସି. ଭିଲେଜ୍
ଭୁବନେଶ୍ୱର - ୧୫





# ଶ୍ରୀଜଗନ୍ନାଥଙ୍କ ସଂସ୍କୃତିରେ ଶ୍ରୀଲକ୍ଷ୍ମୀ

ଡଃ ତୁଳସୀ ଓଝା



ଭାରତୀୟ ସଂସ୍କୃତିରେ ଶ୍ରୀଲକ୍ଷ୍ମୀ ଏକ ବହୁ ପରିଚିତ ନାମ । ଲକ୍ଷ୍ମୀ ଏକାଧାରରେ ସୌନ୍ଦର୍ଯ୍ୟ ବିଭବ, ପ୍ରତିଷ୍ଠା, କ୍ଷମତାର ପ୍ରତୀକ ଭାବରେ ପରିଚିତ । ତାଙ୍କର ବହୁବିଧ ନାମରୁ ଏହା ପ୍ରତିଭାତ ହୋଇଥାଏ, ଧନଲକ୍ଷ୍ମୀ, ରାଜଲକ୍ଷ୍ମୀ, ଗଜଲକ୍ଷ୍ମୀ, ଦୀପଲକ୍ଷ୍ମୀ, ମହାଲକ୍ଷ୍ମୀ, ସ୍ୱର୍ଗଲକ୍ଷ୍ମୀ, ସୌଭାଗ୍ୟଲକ୍ଷ୍ମୀ ଆଦି ଭାବରେ ସେ ପରିଚିତ । ସଂପୂର୍ଣ୍ଣ ଦଶବିଧ ଗୁଣର ସେ ଅଧିଷ୍ଠାତ୍ରୀ ଅଟନ୍ତି । ଅସାମାନ୍ୟ ଅନନ୍ତ ନୈସର୍ଗିକ ରୂପଗୁଣ ସୌନ୍ଦର୍ଯ୍ୟ, ରାଜକୀୟ ଐଶ୍ୱର୍ଯ୍ୟ, ରାଜକୀୟ କ୍ଷମତା ଅଖଣ୍ଡ ରାଜକୀୟ ଆଧିପତ୍ୟ, ସୌଭାଗ୍ୟ, ରାଜକୀୟ ପଦପଦବୀ, କ୍ଷମତା, ତଥା ଅସୀମ ଶ୍ରଦ୍ଧା, ସାରଲ୍ୟ, ଦୟା ପରାୟଣତା ସହିତ ପୃଥିବୀର ଉର୍ବରତା ଓ ଶସ୍ୟ ସଂଭାର ଉତ୍ପାଦନ କ୍ଷମତାର ସେ ଅଧିଷ୍ଠାତ୍ରୀ ଅଟନ୍ତି । ଆପାତଃ ଦୃଷ୍ଟିରୁ ବୈଦିକ କାଳରୁ ଋଗ୍ ବେଦରେ ଭାଗ୍ୟଦେବୀ ଭାବରେ ସେ ପରିଚିତ । ଶ୍ରୀସୂକ୍ତରେ ଏହାର ବହୁଳ ବର୍ଣ୍ଣନା ରହିଛି । ସେଥିରୁ ସ୍ପଷ୍ଟ ହୋଇଥାଏ ଯେ ଜୀବନ ଧାରଣ ନିମିତ୍ତ ମନୁଷ୍ୟର ଯାହା କିଛି ପ୍ରୟୋଜନ ସେ ସମସ୍ତର ଅଧିକାରିଣୀ ହେଉଛନ୍ତି ଶ୍ରୀଲକ୍ଷ୍ମୀ । ପରବର୍ତ୍ତୀ କାଳରେ ଯଦିଓ ଏହା ସାହିତ୍ୟ ସ୍ରଷ୍ଟାମାନଙ୍କ ଦୃଷ୍ଟିରେ ସେତେ ଗୌରବାବହ ହୋଇନାହିଁ, ତଥାପି ଭାରତର ବିଭିନ୍ନ ଗ୍ରାମାଞ୍ଚଳରେ ଗୋମୟ ଠାରୁ କର୍ଦ୍ଦମ ପର୍ଯ୍ୟନ୍ତ ଓ ବୀଜ ବପନ ଠାରୁ ଶସ୍ୟ ଉତ୍ପାଦନ ପର୍ଯ୍ୟନ୍ତ ସର୍ବତ୍ର ଲକ୍ଷ୍ମୀଙ୍କର ଉପସ୍ଥିତି ଓ ପୂଜନ ପ୍ରକ୍ରିୟା ସୀମିତ ହୋଇରହିଛି । ଗୋମୂତ୍ର ଓ ଗୋମୟ ଶ୍ରୀ ସୂକ୍ତର ବର୍ଣ୍ଣନା ଅନୁଯାୟୀ ଆଜି ମଧ୍ୟ ଲକ୍ଷ୍ମୀଙ୍କର ନିବାସ ଭାବରେ ପବିତ୍ରତାର ସ୍ୱାକ୍ଷର ବହନ କରିଥାଏ । ଓଦାମାଟି (କର୍ଦ୍ଦମ)ଲକ୍ଷ୍ମୀଙ୍କର ପୁତ୍ର ଓ ଗୋମୂତ୍ର ଓ ଗୋମୟ ଯାହା ସେହି ମାଟିକୁ ଉର୍ବର କରେ ତାହା ଲକ୍ଷ୍ମୀଙ୍କର ନିବାସ ଭାବରେ ଚିହ୍ନିତ ହେବା ସହିତ ଗ୍ରାମାଞ୍ଚଳର ଗୋବର ପାଣି ସିଂଚନ ତଥା ଗୋବର ଲିପା ଘରର ପବିତ୍ରତା ସ୍ୱୀକୃତ । ଏହା ବ୍ୟତୀତ ପ୍ରାଚୀନ କାଳରୁ ଶ୍ରୀଲକ୍ଷ୍ମୀ ଗଜ ଓ କମଳ ଦୁଇଟି ସହିତ ଘନିଷ୍ଠ ଭାବରେ ଜଡିତ ।

ପଦ୍ମ ସର୍ବଦା ଉର୍ବରତା ବା ପ୍ରଜନ୍ମର ପ୍ରତୀକ ଭାବରେ ବିଦିତ । ଏହାର ଚେର ସବୁବେଳେ ପାଣି ଭିତରେ ଥାଏ ଏବଂ ପଦ୍ମ ସର୍ବଦା ଜଳସ୍ତର ଉପରେ ପ୍ରସ୍ଫୁଟିତ ହୋଇଥାଏ । ଏବଂ ଶ୍ରୀଲକ୍ଷ୍ମୀଙ୍କର ପଦ୍ମ ଉପରେ ଉପବେଶନ ସୃଷ୍ଟିର ପ୍ରଜନ୍ମ ପ୍ରକ୍ରିୟାର ପ୍ରତୀକ ଅଟେ । କାରଣ ପ୍ରାଚୀନ କାଳରେ ଯେତେବେଳେ ପ୍ରଳୟ ସଂଘଟିତ ହୁଏ ପଦ୍ମନାଭ ବିଷ୍ଣୁ ତାଙ୍କର ନାଭି କମଳରୁ ପଦ୍ମ ଜାତ କରନ୍ତି ଏବଂ ତା ଉପରେ ଯୋଗ ମଗ୍ନ ବ୍ରହ୍ମା ଉପବେଶନ କରି ସୃଷ୍ଟି ପ୍ରକ୍ରିୟା ଆରମ୍ଭ କରନ୍ତି । ତନ୍ତ୍ରରେ ମଧ୍ୟ ପଦ୍ମ ମଣ୍ଡଳର ଯେଉଁ ପରିଚିତି ଅଛି ସେଥିରୁ ସୃଷ୍ଟି ପ୍ରକ୍ରିୟା ସଂପର୍କରେ ସୂଚନା ମିଳିଥାଏ । ଲକ୍ଷ୍ମୀଙ୍କର ପଦ୍ମ ଉପରେ ଉପବେଶନ ସୃଷ୍ଟି ପ୍ରକ୍ରିୟାରେ ତାଙ୍କ ଅବଦାନକୁ ସୂଚାଇଥାଏ । ପଦ୍ମର ଗଂଧ ଏବଂ ସୌନ୍ଦର୍ଯ୍ୟ ଅବର୍ଣ୍ଣନୀୟ । ପବିତ୍ରତା ଏବଂ ଆଧ୍ୟାତ୍ମିକତାର ପ୍ରତୀକ ଭାବରେ ମଧ୍ୟ ତାକୁ ଗ୍ରହଣ କରାଯାଇଥାଏ । ଏହାର ଜନ୍ମ ପଙ୍କ ବା ପାଣି ଭିତରେ ହୋଇଥିଲେ ମଧ୍ୟ ପ୍ରସ୍ଫୁଟିତ ହେଲାବେଳେ ଏଥିରେ କାଦୁଅ ପଙ୍କ ବା ପାଣି କିଛି ଲାଗି ନଥାଏ । ତେଣୁ ଆଧ୍ୟାତ୍ମିକ ଜଗତରେ ଆମେ ଦେଖିଥାଉ ଭିନ୍ନ ଭିନ୍ନ ମୂର୍ତ୍ତି ତତ୍ତ୍ୱରେ ବୌଦ୍ଧ ଏବଂ ହିନ୍ଦୁ ଦେବଦେବୀମାନେ ପଦ୍ମ ଉପରେ ପଦ୍ମାସନରେ ଆସୀନ ହୋଇଥାନ୍ତି । ପଙ୍କ ଏବଂ ପାଣି ପାର୍ଥିବ ଜଗତର ପ୍ରତୀକ ହୋଇଥିବା ବେଳେ ପଦ୍ମ ସେଥିରୁ ସଂପୂର୍ଣ୍ଣ ମୁକ୍ତ ହୋଇ ଆଧ୍ୟାତ୍ମିକ ଜଗତର ଭିତ୍ତିଭୂମି ଭାବରେ ପ୍ରକାଶିତ ହୋଇଥାଏ । ତା ଉପରେ ସମସ୍ତ ସୁଗୁଣର ଅଧିକାରିଣୀ ଲକ୍ଷ୍ମୀଙ୍କର ଉପବେଶନ ଓ ତାଙ୍କର ଅନ୍ୟନାମ ପଦ୍ମାଳୟା ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ।

ଗଜଲକ୍ଷ୍ମୀ- ଭାରତୀୟ ସଂସ୍କୃତିରେ ହସ୍ତୀ ଏକ ବିଶେଷ ଭୂମିକା ଗ୍ରହଣ କରିଥାଏ । ସ୍ୱର୍ଗ ଲୋକର ସର୍ବୋଚ୍ଚ କର୍ତ୍ତା ଇନ୍ଦ୍ରଙ୍କର ବାହନ ହସ୍ତୀ ଅଟେ । ଇନ୍ଦ୍ର ସୃଷ୍ଟି ପ୍ରକ୍ରିୟାରେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଥାନ୍ତି । କାରଣ ବରୁଣ ଜଳର ଦେବତା ହେଲେ ମଧ୍ୟ ସମଗ୍ର ସୃଷ୍ଟିକୁ ସିଞ୍ଚିତ କରିବାକୁ ସେ ଅକ୍ଷମ ଅଟନ୍ତି । କିନ୍ତୁ ଇନ୍ଦ୍ର ମେଘ ଦ୍ୱାରା ସମଗ୍ର ସୃଷ୍ଟିକୁ ସିଞ୍ଚିତ କରି ତାହାର ପ୍ରଜନନ କ୍ଷମତାକୁ ବିକଶିତ କରିଥାନ୍ତି । ହସ୍ତୀ ସହିତ ଗଜଲକ୍ଷ୍ମୀ ଯେଉଁ ମୂର୍ତ୍ତି ପରିକଳ୍ପିତ ହୋଇଛି ସେଥିରେ ଦୁଇଟି ହସ୍ତୀ ଲକ୍ଷ୍ମୀଙ୍କର ଦୁଇ ପାର୍ଶ୍ୱରେ ରହି ତାଙ୍କୁ ଜଳ ସିଞ୍ଚନ କରୁଥିବାର ଦୃଷ୍ଟିଗୋଚର ହୋଇଥାଏ । ପ୍ରାଚୀନ କାଳରେ ହସ୍ତୀମାନଙ୍କର ଡେଣାଥିବାର ଉଲ୍ଲେଖ ରହିଛି । କିନ୍ତୁ ପରବର୍ତ୍ତୀ କାଳରେ ସେଇ ଡେଣା ଅଦୃଶ୍ୟ ହୋଇ ସେ ଏକ ପାର୍ଥିବ ପ୍ରାଣୀରେ ପରିଣତ ହୋଇଛି । କିନ୍ତୁ ଐରାବତହସ୍ତୀ, ଇନ୍ଦ୍ରଙ୍କୁ ଧରି ସମଗ୍ର ପୃଥିବୀ ପରିଭ୍ରମଣ କରୁଥିଲା । ଅର୍ଥାତ ମେଘବାହନ ଇନ୍ଦ୍ରଙ୍କର ମେଘକୁ ଐରାବତ ହସ୍ତୀ ଭାବରେ ପରିକଳ୍ପନା କରାଯାଇଛି । ସୃଷ୍ଟି ପାଇଁ ଖାଦ୍ୟ ବସ୍ତ୍ର ଓ ବାସଗୃହର ସମସ୍ତ ଉପକରଣ ଯେଉଁ ବୃକ୍ଷଲତା ଆଦିରୁ ପ୍ରାପ୍ତ ହୁଏ ସେଗୁଡିକ ଇନ୍ଦ୍ରଙ୍କର ଜଳ ସିଞ୍ଚନ ହେତୁ ସଂଭବ ହୋଇଥାଏ । ତେଣୁ ଇନ୍ଦ୍ର, ଲକ୍ଷ୍ମୀ ଓ ଗଜ ଏହି ତିନୋଟିର ସଂଗମ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଦୁଇ ପାର୍ଶ୍ୱରେ ଗଜ ଦୁଇଟି ରହି ଲକ୍ଷ୍ମୀଙ୍କୁ ଜଳ ସିଞ୍ଚନ କରୁଥିବାର ମୁଖ୍ୟ ତାତ୍ପର୍ଯ୍ୟ ଜଳ ସଂଚିତ ଲକ୍ଷ୍ମୀ ପୃଥିବୀକୁ ଉର୍ବର କରି ସେଥିରୁ ଶସ୍ୟ ଉତ୍ପାଦନ କରି ଜୀବ ଜଗତର ପୋଷଣ କରିବେ । ଏପରି ମଧ୍ୟ କୁହାଯାଏ ଏହି ଗଜ ଗୁଡିକ ଶକ୍ତିର ପ୍ରତୀକ ଅଟନ୍ତି । ପ୍ରାଚୀନ କାଳରେ ରାଜାମାନଙ୍କର ଅଭିଷେକ ମଧ୍ୟ ହସ୍ତୀଦ୍ୱାରା ଜଳ ସିଞ୍ଚିତ ହୋଇ କରାଯାଉଥିଲା । ତେଣୁ ଧନ ଜନ ଗୋପ ଲକ୍ଷ୍ମୀରେ ପରିପୂର୍ଣ୍ଣ ହୋଇଥିବା ରାଜା ହିଁ ଶାସନ କରିବା ପାଇଁ ସମର୍ଥ ଥିଲେ । ପୂର୍ବ କାଳରେ ରାଜାମାନଙ୍କର ମୁଖ୍ୟ ସେନାନୀ ଆପାତତଃ ହସ୍ତୀମାନଙ୍କ ଦ୍ୱାରା ନିମନ୍ତ୍ରିତ ହେଉଥିଲା । ସେ ଦୃଷ୍ଟିରୁ ସାମର୍ଥ୍ୟର ପ୍ରତୀକ ଭାବରେ ସେଠାରେ ଲକ୍ଷ୍ମୀଙ୍କର ଅବସ୍ଥାନ ନିହାତି ଆବଶ୍ୟକ । ରାଜା ଲକ୍ଷ୍ମୀବନ୍ତ ନହେଲେ ରାଜ୍ୟର ଅଭିବୃଦ୍ଧି ହୁଏ ନାହିଁ । ଶସ୍ୟ ବହୁତ ପରିମାଣରେ ଉତ୍ପନ୍ନ ନହେଲେ ପ୍ରଜାମାନଙ୍କର ମୌଳିକ ଆବଶ୍ୟକତା ପୂରଣ ହୋଇପାରିବ ନାହିଁ, ରାଜ୍ୟରେ ଶ୍ରୀବୃଦ୍ଧି ହେବ ନାହିଁ । କାରଣ ପ୍ରାଚୀନ କାଳରେ କୃଷି ଓ ପଶୁପାଳନ ହିଁ ମନୁଷ୍ୟ ସଭ୍ୟତାର ଶ୍ରୀସଂପଦର ମୁଖ୍ୟ ଆଧାର ଥିଲା । ଏହି ଦୃଷ୍ଟିରୁ ଶ୍ରୀଲକ୍ଷ୍ମୀ ରାଜକୀୟ ଐଶ୍ୱର୍ଯ୍ୟର ପ୍ରତୀକ ଭାବରେ ବିଦ୍ୟମାନ । ପୁରାଣ ମଧ୍ୟ ଏହାର ପୁଷ୍ଟିକରଣ କରିଛି । ଇନ୍ଦ୍ରଙ୍କ ଦ୍ୱାରା ପାର୍ଥିତ ହୋଇ କ୍ଷୀର ସମୁଦ୍ର ମଧ୍ୟରୁ ଯେତେବେଳେ ଶ୍ରୀଲକ୍ଷ୍ମୀ ଆବିର୍ଭୂତ ହେଲେ ଦିଗ୍ ଗଜଗଣ କଳସଯୁକ୍ତ ହୋଇ ନିର୍ମଳ ଜଳରେ ଶ୍ରୀଲକ୍ଷ୍ମୀଙ୍କୁ ସ୍ନାନ କରାଇଥିଲେ ।

''ଦିଗ୍ ଗଜଗଣ ଯେ ସେହି ବାରିକୁମ୍ଭ ନେଲେ
କମଳାଙ୍କୁ ଭକ୍ତିଭରେ ସ୍ନାନ କରାଇଲେ ।'' ବିଷ୍ଣୁ ପୁରାଣ
ତାଙ୍କର ସ୍ତୁତିରେ ମଧ୍ୟ ପ୍ରତିଧ୍ୱନିତ-
କାନ୍ତ୍ୟା କାଂଚନ ସନ୍ନିଭାଂ ହିମଗିରି
ପ୍ରଖ୍ୟୈର୍ଗଜୈର୍ହ ସ୍ତୋତ୍ କ୍ଷିପ୍ତ
ହିରଣ୍ମାୟମୃତ ଘଟେର୍ରାସିଚ୍ୟମାନା । ଶ୍ରୀୟମଂ ।

ପରବର୍ତ୍ତୀ ସମୟରେ ଇନ୍ଦ୍ରଙ୍କ ଅତୀତ ସୋମ ଏବଂ ଧର୍ମ ଲକ୍ଷ୍ମୀଙ୍କ ସହିତ ଗଭୀର ଭାବରେ ଜଡିତ ହୋଇଛନ୍ତି । ଶାପଗ୍ରସ୍ତ ଇନ୍ଦ୍ରଙ୍କ ଦ୍ୱାରା ଅସନ୍ତୁଷ୍ଟ ହୋଇ ଯେତେବେଳେ ସ୍ୱର୍ଗ ଲକ୍ଷ୍ମୀ ଇନ୍ଦ୍ରଙ୍କୁ ପରିତ୍ୟାଗ କରିଛନ୍ତି ସେତେବେଳେ ଇନ୍ଦ୍ର ପଦଚ୍ୟୁତ ହୋଇଛନ୍ତି ଏବଂ ତାଙ୍କର ସମସ୍ତ ଗାରିମା ନଷ୍ଟ ହୋଇଛି । ସେହି ପରି ଭାବରେ ଯେତେବେଳେ କୌଣସି ବ୍ୟକ୍ତି ଧର୍ମହୀନ ହୋଇଛି, ସେତେବେଳେ ମଧ୍ୟ ସେ ଲକ୍ଷ୍ମୀଛଡା ହୋଇଛନ୍ତି ।

ଆପାତତଃ ଧର୍ମ କହିଲେ ସାଧାରଣତଃ ସତ୍ୟବଚନ, ସତ୍‌କର୍ମ, ସତ୍‌ସେବା, ଆଦି ମହତ୍ତ୍ୱପୂର୍ଣ୍ଣ ଗୁଣକୁ ବୁଝାଇଥାଏ । ତେଣୁ ଧର୍ମର ଶକ୍ତି ଯେଉଁଠିଥାଏ ଲକ୍ଷ୍ମୀ ସେଇଠାରେ ଥାନ୍ତି । ସୋମ ହେଉଛନ୍ତି ବନସ୍ପତିର ଅଧିକାରୀ । ତେଣୁ ସୋମ ହିଁ ବନସ୍ପତିର ଦେବତା ଓ ଲକ୍ଷ୍ମୀଙ୍କ ବିନା ବନସ୍ପତି ବୃଦ୍ଧି ସଂଭବ ନୁହେଁ । ସେହିପରି ଲକ୍ଷ୍ମୀଙ୍କର ଅନ୍ୟ ଏକ ପ୍ରତିକୃତି ସେ ଦୀପ ଲକ୍ଷ୍ମୀ-ଅନ୍ଧକାରକୁ ଦୂରୀଭୂତ କରି ଜ୍ଞାନ ଓ ପ୍ରେମର ସଂଚାରିକା ଭାବରେ ଦୀପଲକ୍ଷ୍ମୀଙ୍କର ପରିକଳ୍ପନା । ରାଜ ଐଶ୍ୱର୍ଯ୍ୟର ପ୍ରତୀକ ଭାବରେ ସେ ଐଶ୍ୱର୍ଯ୍ୟବନ୍ତ ରାଜାଙ୍କ ସ୍କନ୍ଦରେ ବିଜେ କରି ରାଜଲକ୍ଷ୍ମୀ ହୁଅନ୍ତି । ବୈଜ୍ଞାନିକ ଦୃଷ୍ଟିକୋଣରୁ ସମଗ୍ର ପୃଥିବୀର ଜନ୍ମଦାତ୍ରୀ ଭାବରେ ସେ ମହାଲକ୍ଷ୍ମୀ ଭାବରେ ପରିକଳ୍ପିତା । ଏହା ବ୍ୟତୀତ ପ୍ରତ୍ୟେକ ଗୃହରେ ଜାୟା ଭାବରେ ତାଙ୍କର ଆର୍ଶୀବାଦ ପ୍ରାପ୍ତ ନାରୀ ଗୃହଲକ୍ଷ୍ମୀ ଭାବରେ ପରିଚିତା । ଯେ ସମଗ୍ର ଗୃହର ସର୍ବମୟୀ କର୍ତ୍ତୀ ଅଟନ୍ତି ।

କ୍ଷୀର ସମୁଦ୍ର ମନ୍ଥନରୁ ଲକ୍ଷ୍ମୀଙ୍କର ଆବିର୍ଭାବ, ଏହା ଏକ ସାଂକେତିକ ଅର୍ଥ ପ୍ରତିପାଦନ କରେ । ସମୁଦ୍ର ମନ୍ଥନ-ସମୁଦ୍ରର ଜଳର ମନ୍ଥନ ଓ ସେଥିରୁ ଅମୃତ, ସୁରା, ଧନ୍ୱନ୍ତରୀ, ଉଚ୍ଚୈଃଶ୍ରବା ଅଶ୍ୱ, ଐରାବତ ହସ୍ତୀ, ସୁଦର୍ଶନ ଚକ୍ର ଓ ଲକ୍ଷ୍ମୀଙ୍କ ଉଦ୍ଭବ, ଦୁଗ୍ଧର ମନ୍ଥନରୁ ଯେପରି ଲହୁଣୀର ଆବିର୍ଭାବ, ଠିକ୍ ସେହିପରି ଏ



ପ୍ରତ୍ୟେକଟି ପଦାର୍ଥ ସୃଷ୍ଟି ପ୍ରକ୍ରିୟାର ଅୟମାରମ୍ଭର ଏକଏକ ଅଂଶ, ଜୀବଜନ୍ତୁ, ବୃକ୍ଷଲତା ଇତ୍ୟାଦିର ସୃଷ୍ଟି ଓ ହଜାର ହଜାର ବର୍ଷଧରି ତାର ଜୀବନ ସ୍ରୋତର ପ୍ରବାହ ଏହାହିଁ ସମୁଦ୍ର ମନ୍ଥନର ସର୍ବଶ୍ରେଷ୍ଠ ଐଶ୍ୱର୍ଯ୍ୟ । ଅମୃତ ଓ ଲକ୍ଷ୍ମୀ । ବିଷ୍ଣୁଙ୍କର ପତ୍ନୀ, ସୃଷ୍ଟିର ଆଦି ଜନ୍ମଦାତାଙ୍କର ସେବା କାରିଣୀ-ଏହିପରି ଭାବରେ ଭାରତୀୟ ସଂସ୍କୃତିରେ ଲକ୍ଷ୍ମୀଙ୍କର ଆବିର୍ଭାବ ହୋଇଛି । ବିଷ୍ଣୁ ସମଗ୍ର ସୃଷ୍ଟିର ସର୍ବ ଶକ୍ତିମାନ ସ୍ରଷ୍ଟା-ବୈକୁଣ୍ଠର ଅଧିକାରୀ କିନ୍ତୁ ଆବଶ୍ୟକ ସ୍ଥଳେ ଯାହାଙ୍କର ଅବତାର ଲୀଳା ମଧରେ ସଂପୂର୍ଣ୍ଣ ଜୀବ ଜଗତର ବିବର୍ତ୍ତନ ଧାରା ପରିବେଶିତ । କିନ୍ତୁ ଲକ୍ଷ୍ମୀଙ୍କର ସହାୟତା ବିନା ତାହା ସଂଭବ ହୋଇପାରିନଥାନ୍ତା- ସୀତା ରୂପରେ, ରକ୍ମିଣୀ ରୂପରେ ସେ ମହାବିଷ୍ଣୁଙ୍କର ମର୍ତ୍ତ୍ୟ ଲୀଳାର ସହାୟକ । ବ୍ରହ୍ମ ବୈବର୍ତ୍ତ ପୁରାଣରେ ଚତୁର୍ଭୁଜା ଲକ୍ଷ୍ମୀଙ୍କର ଆବିର୍ଭାବ ମଧ୍ୟ ଅତି ସୁନ୍ଦର ଭାବରେ ବର୍ଣ୍ଣିତ । ଏକଦା ଏକ ଦିବ୍ୟ ସୁନ୍ଦର ସାୟଂକାଳରେ ଗୋଲକରେ ଦିବ୍ୟରମଣ ବାସନା ପୋଷଣ କରି ପରମପୁରୁଷ ଶ୍ରୀ କୃଷ୍ଣ ନିଜ ଅଂଗକୁ ଦୁଇଭାଗ କରି ବାମ ଅଂଗରୁ ଗୋଲକ ବାସିନୀ ଶ୍ରୀରାଧାଙ୍କୁ ସୃଷ୍ଟିକଲେ ଏବଂ ଏହାପରେ-

ଶ୍ରୀ କୃଷ୍ଣଙ୍କ ଲୋମ ମୂଳୁଁ ସମସ୍ତ ଗୋପାଳ
ଜନମି ଗୋଲକ ପୂର୍ଣ୍ଣ କଲେ ତତ୍‌କାଳ
ସେ ଅନ୍ତରେ ରାଧାଙ୍କର ବାମ ପାରୁଶରୁ
ଜନମ ହୋଇଲେ ମହାଲକ୍ଷ୍ମୀ ଚାରୁଭୁରୁ
ବୈକୁଣ୍ଠ ଭୁବନରେ ନାରାୟଣଙ୍କର
ପ୍ରିୟପତ୍ନୀ ହୋଇ ରହିଲେ ସେ ରାମାବର
ତାହାଙ୍କ ଅଂଶରେ ରାଜଲକ୍ଷ୍ମୀ ଜାତ ହୋଇ
ରାଜ ଭବନରେ ବାସ କଲେ ତହୁଁ ଯାଇ
ପୁଣି ଆଉ ଏକ ଅଂଶେ ମର୍ତ୍ତ ଲକ୍ଷ୍ମୀ ଜାତ
ହେଲେ ସେ ଗୃହୀଙ୍କ ଗୃହେ ସଦା ଉପସ୍ଥିତ
ସେହିଟି ଅତ୍ୟନ୍ତ ଶସ୍ୟ ରକ୍ଷଣ କାରିଣୀ
ଗୃହ ଦେବତା ବୋଲନ୍ତି ତାଙ୍କୁ ସର୍ବପ୍ରାଣୀ ।

ଏହି ମହାଲକ୍ଷ୍ମୀଙ୍କର ମହାପ୍ରଭୁ ଶ୍ରୀଜଗନ୍ନାଥ ଶ୍ରୀମନ୍ଦିର ମଧରେ ଉପସ୍ଥିତି ସେହି ଦୃଷ୍ଟିରୁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଯେତେବେଳେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ମହାବିଷ୍ଣୁ ଭାବରେ ଶ୍ରୀକ୍ଷେତ୍ରରେ ଆବିର୍ଭୁତ ହେଲେ ଶ୍ରୀମନ୍ଦିର ମଧରେ ସେତେବେଳେ ଲକ୍ଷ୍ମୀଙ୍କର ଉପସ୍ଥିତି ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ହୋଇପଡିଲା । କାରଣ ଏହି ମହାଲକ୍ଷ୍ମୀ ହିଁ ଶ୍ରୀକ୍ଷେତ୍ର ଓ ଜଗନ୍ନାଥଙ୍କର ମହତ୍ତ୍ୱ ପ୍ରତିପାଦନର ପ୍ରଥମ ପ୍ରବକ୍ତା ।

ସ୍କନ୍ଦପୁରାଣରେ ଉଲ୍ଲେଖ ରହିଛି ପୂର୍ବକାଳରେ ବରାହରୂପୀ ଭଗବାନ ବିଷ୍ଣୁ ଏହି ପୃଥିବୀକୁ ସମୁଦ୍ର ଜଳରୁ ବାହାର କରି ଚର୍ତୁଦିଗରୁ ସୁରକ୍ଷିତ କରି ସ୍ଥାପିତ କରି ପର୍ବତ ଦ୍ୱାରା ସୁସ୍ଥିର କରିଦେଲେ । ସୃଷ୍ଟିକର୍ତ୍ତା ବ୍ରହ୍ମା ପାରମ୍ପରିକ ରୀତିରେ ସମସ୍ତ ଜଗତକୁ ସୃଷ୍ଟିକରି ତୀର୍ଥ, ସରିତା, ନଦୀ ଏବଂ କ୍ଷେତ୍ରମାନଙ୍କୁ ଯଥାଯଥ ଭାବରେ ପ୍ରତିଷ୍ଠା କଲାପରେ ସୃଷ୍ଟିଭାରରେ ପୀଡିତ ହୋଇ ଚିନ୍ତା କଲେ ଆଧାତ୍ମିକ, ଆଧି ଦୈବିକ ଓ ଆଧିଭୌତିକ ଏହି ତିନି ପ୍ରକାର ତାପରେ ପୀଡିତ ସଂସାରର ଜୀବମାନେ କିପରି ମୁକ୍ତି ପାଇବେ? ଦୁଃଖିତ ବ୍ରହ୍ମା ସମଗ୍ର ସୃଷ୍ଟିର କାରଣ ଶ୍ରୀବିଷ୍ଣୁଙ୍କୁ ସ୍ମରଣ କଲେ- ଶ୍ରୀବିଷ୍ଣୁ ପ୍ରକଟ ହୋଇ ବ୍ରହ୍ମାଙ୍କୁ ଆଶ୍ୱାସନା ଦେଇ କହିଲେ- ହେ ପରମବ୍ରହ୍ମ ହେ ସୃଷ୍ଟିକର୍ତ୍ତା ତୁମେ ପ୍ରାଣୀମାନଙ୍କର କଲ୍ୟାଣ ପାଇଁ ଯେଉଁ ଇଚ୍ଛା ପୋଷଣ କରୁଛ, ତାହା ଅତ୍ୟନ୍ତ ଦୁର୍ଲଭ- ତଥାପି ଯାହା ତୁମର ଇଚ୍ଛା ତାହା ମୋର ଇଚ୍ଛା । ତେଣୁ ମୁଁ ତୁମକୁ ମୁକ୍ତି ସଂପର୍କିତ ଏକ ମହାତଥ୍ୟ ପ୍ରଦାନ କରୁଛି । ଏପର୍ଯ୍ୟନ୍ତ ବେଦ, ସ୍ମୃତି, ଓ ଶ୍ରୁତିକୁ ମଧ୍ୟ ଅଗୋଚର, ମୋର ମାୟା ଦ୍ୱାରା,ଏହା ଏବେବି ପୃଥିବୀରେ ରହି ମଧ୍ୟ ଗୁପ୍ତ ରହିଛି । ସମୟ ଆସିଲେ ତାହା ପ୍ରକାଶିତ ହେବ । ଚକ୍ରାଦି ଚିହ୍ନରେ ଯୁକ୍ତ ଯେଉଁ ସ୍ୱରୂପ ତୁମେ ମୋର ଏଠାରେ ଦେଖୁଛ ଠିକ୍ ସେହି ସ୍ୱରୂପରେ ମୁଁ ସେହି କ୍ଷେତ୍ରରେ ନିବାସ କରେ । ତାହା ମୋର ନିତ୍ୟଧାମ । ତୁମେ ସେହିଠାରେ ମୋତେ ଦର୍ଶନ କରିବ ଓ ପ୍ରାଣୀମାନଙ୍କର ଅଶେଷ କଲ୍ୟାଣରେ ସାଯୁଜ୍ୟ ମୁକ୍ତିଦାତ୍ରୀ କ୍ଷେତ୍ରର ସଂଧାନ ପାଇବ । ଏହା ନୀଳାଚଳଧାମ । ଭଗବାନ ବିଷ୍ଣୁଙ୍କର ଏହି କଥା ଶ୍ରବଣ କରି ନୀଳାଚଳକୁ ଯାଇ ସେଠାରେ ବ୍ରହ୍ମା ଧ୍ୟାନମଗ୍ନ ହେବାକୁ ଇଚ୍ଛାକଲେ । ମୃତ୍ୟୁ ଲୋକର ସ୍ୱାମୀ ଯମରାଜ ନିଜ ଅଧିକାର ସଂକୁଚିତ ହୋଇଯିବା ଦେଖି ଅତ୍ୟନ୍ତ ବ୍ୟାକୁଳ ହୋଇ ପଡିଲେ ଓ ଭଗବାନ ବିଷ୍ଣୁଙ୍କୁ ଓ ତାଙ୍କ ସହିତ ଉପବିଷ୍ଟା ମହାଲକ୍ଷ୍ମୀଙ୍କ ଦର୍ଶନ କରି ସ୍ତୁତି ପୂର୍ବକ ନିଜର ମନୋଭାବ ଜଣାଇଲେ । ଏହା ଶ୍ରବଣ କରି ଭଗବାନ ବିଷ୍ଣୁ ନିଜର ବାମପାର୍ଶ୍ୱରେ ଉପବେଶନ କରିଥିବା ଲକ୍ଷ୍ମୀଙ୍କୁ କିଛି କହିବା ପାଇଁ ନିର୍ଦ୍ଦେଶ ଦେଲେ । ଏହା ଶୁଣି ଲକ୍ଷ୍ମୀ କହିଲେ- ସୂର୍ଯ୍ୟ ନନ୍ଦନ ତୁମେ ଯେଉଁ ଉଦ୍ଦେଶ୍ୟରେ ଆମ ଦୁଇଜଣଙ୍କର ସ୍ତୁତି କରୁଛ ତାହା ଏହି କ୍ଷେତ୍ରରେ ସଂଭବ ନୁହେଁ । କାରଣ ଏହି କ୍ଷେତ୍ର ଏକ ଦୁର୍ଲଭ କ୍ଷେତ୍ର ଏବଂ ଏହି କ୍ଷେତ୍ର ପରିତ୍ୟାଗ କରିବା ଆମ ପକ୍ଷରେ ଅସଂଭବ । ଏଠାରେ ବସବାସ କରୁଥିବା ମନୁଷ୍ୟ ଓ ପଶୁପକ୍ଷୀଙ୍କର ସମସ୍ତ ପାପ ଏଠାରେ ଭସ୍ମ ହୋଇଯାଏ । ଏହି କ୍ଷେତ୍ରରେ ସ୍ଥିତ ଇନ୍ଦ୍ର ନୀଳମଣି ସଦୃଶ ମନୋହର ଶ୍ୟାମ ବିଗ୍ରହ




ଧାରୀ ସାକ୍ଷାତ ନାରାୟଣଙ୍କର ଦର୍ଶନ କରି ମନୁଷ୍ୟ ସମସ୍ତ କର୍ମ ବନ୍ଧନରୁ ମୁକ୍ତ ହୋଇଯାଇଥାଏ । ଏହି କ୍ଷେତ୍ରର ମହତ୍ତ୍ୱ ଉପଲବଧି କରି ତୁମର ପ୍ରପିତାମହ ପରମପିତା ବ୍ରହ୍ମା ଆସି ଗଦାଧର ବିଷ୍ଣୁଙ୍କ ସ୍ତୁତି କରିଥାନ୍ତି । ତେଣୁ ଏହି କ୍ଷେତ୍ର ବ୍ୟତୀତ ଅନ୍ୟ ସମସ୍ତ କ୍ଷେତ୍ର ତୁମର କର୍ମଭୂମି ଓ ସେଠାରେ ତୁମର ଅଧିକାର ରହିବ । ଏଠାରେ ତୁମର କୌଣସି କର୍ତ୍ତୃତ୍ୱ ରହିବ ନାହିଁ । ଏଠାରେ କେବଳ ଜୀବନ୍ମୁକ୍ତ ପୁରୁଷ ବାସ କରୁଛନ୍ତି । ଲକ୍ଷ୍ମୀଙ୍କର ଏହିପରି ଉପଦେଶ ଶୁଣି ଲଜ୍ଜିତ ଧର୍ମରାଜ ମହାଲକ୍ଷ୍ମୀଙ୍କର ସ୍ତୁତି କରି କହିଲେ-ମହାମାୟା ଏହି କ୍ଷେତ୍ର ଭଗବାନ ବିଷ୍ଣୁଙ୍କର ସାନ୍ନିଧ ହେତୁ ସର୍ବପ୍ରାଣୀଙ୍କୁ ଯଦି ମୁକ୍ତି ପ୍ରଦାନ କରିବାକୁ ସମର୍ଥ ଏଥିରେ ମୋର କିଛି କହିବାର ନାହିଁ । ଇଶ୍ୱରଙ୍କ ଇଚ୍ଛା ନିରଂକୁଶ ଅଟେ । ସେ କେଉଁଠାରେ କାହାକୁ ବନ୍ଧନ ଦେଉଛନ୍ତି ଏବଂ ସେଠାରେ ସମସ୍ତଙ୍କୁ ମୁକ୍ତି ପ୍ରଦାନ କରୁଛନ୍ତି । ମାତ୍ର ସେ ମୋର ଏବଂ ସ୍ୱର୍ଗ ନର୍କର ମଧ୍ୟ ସ୍ରଷ୍ଟା ସେ । ତେଣୁ ଯଦି ତାଙ୍କର ଇଚ୍ଛାରେ ଏଠାରେ ମୃତ୍ୟୁ ବରଣ କରୁଥିବା ଲୋକଙ୍କର ମୋକ୍ଷ ପ୍ରାପ୍ତ ହେଉଛି ଏକ୍ଷେତ୍ରକୁ ମୋର ମଧ୍ୟ ପ୍ରଣାମ । କିନ୍ତୁ ମାତ୍ର ଯଦି ଆପଣ କୃପାକରି ଏହି କ୍ଷେତ୍ରର ବିଶଦ ବିବରଣୀ ମତେ ପ୍ରଦାନ କରନ୍ତି ମୁଁ କୃତାର୍ଥ ହେବି ।

ଏହା ଶୁଣି କରୁଣାମୟୀ ମହାଲକ୍ଷ୍ମୀ ବିସ୍ତାର ଭାବରେ ତାଙ୍କ ସମ୍ମୁଖରେ ଏହି କ୍ଷେତ୍ରର ମହିମା ପ୍ରଦାନ କରିଛନ୍ତି । ଯେତେବେଳେ ସମଗ୍ର ଚରାଚର ବିଶ୍ୱପ୍ରଳୟ ଜଳରେ ନିମଗ୍ନ ହୋଇଯାଉଥିଲା ସପ୍ତ କଳ୍ପାନ୍ତ ପର୍ଯ୍ୟନ୍ତ ଜୀବିତ ରହିବାକୁ ଆଶୀର୍ବାଦ ପାପ୍ତ କରିଥିବା ମହାମୁନି ମାର୍କଣ୍ଡେୟ ଏହି ସ୍ଥାନରେ ଆଶ୍ରୟ ଗ୍ରହଣ ପୂର୍ବକ ସାକ୍ଷାତ ଭଗବାନ ବିଷ୍ଣୁଙ୍କ କରୁଣାରୁ ସମଗ୍ର ବିଶ୍ୱ ବ୍ରହ୍ମାଣ୍ଡ-ଦର୍ଶନ କରିଥିଲେ । ସେଠାରେ ତାଙ୍କୁ ଭଗବାନ ମଧ୍ୟ କହିଥିଲେ, ଏହି ସ୍ଥାନ ମୋର ସନାତନ ଧାମ ଅଟେ । ଏଠି ନା ସୃଷ୍ଟି ନା ପ୍ରଳୟ ନା ସଂସାର ବଂଧନ ରହିଛି । ସଦା ଏକ ରୂପରେ ଏଠାରେ ବିଦ୍ୟମାନ ମୋକ୍ଷ ପ୍ରଦାୟକ ପୁରୁଷୋତ୍ତମଙ୍କର ବିଦ୍ୟମାନ । ତାକୁ ଜାଣି ଏହି କ୍ଷେତ୍ରରେ ପ୍ରବେଶ  କରୁଥିବା ପୁରୁଷ ଧନାନନ୍ଦ ସ୍ୱରୂପ ହୋଇ ପୁନଶ୍ଚ ଗର୍ଭ ମଧ୍ୟରେ ପ୍ରବେଶ କରେ ନାହିଁ । ଏହି କ୍ଷେତ୍ରର ଆକାର ଶଙ୍ଖ ସ୍ୱରୂପ ଅଟେ । ଏହି ଶଙ୍ଖର ମସ୍ତକ ଉପରେ ପଶ୍ଚିମ ସୀମାରେ ସବୁ କାମନାକୁ ତୃପ୍ତି କରିପାରୁଥିବା ଭଗବାନ ଶଙ୍କର ବିରାଜମାନ ଅଟନ୍ତି । ଏହି ଶଙ୍ଖର ଅଗ୍ର ଭାଗରେ ଅର୍ଥାତ୍ ପୂର୍ବ ସୀମାରେ ଭଗବାନ ନୀଳକଣ୍ଠ ବିରାଜମାନ, ଏହି ଦୁଇ ଜଣଙ୍କ ମଧ୍ୟଭାଗ ଏକ କୋଶ ଅଟେ । ଶଙ୍ଖାକାର ଏହି କ୍ଷେତ୍ରର ଅନ୍ୟ ଆବର୍ତ୍ତନରେ କପାଳମୋଚନ ଲିଙ୍ଗ ସ୍ଥିତ । ଏହାକୁ ଦର୍ଶନ ଓ ପୂଜନ କଲେ ମନୁଷ୍ୟଙ୍କୁ ବ୍ରହ୍ମ ହତ୍ୟା ପାପରୁ ମଧ୍ୟ ମୁକ୍ତି ମିଳେ । ଧର୍ମରାଜ ଶଙ୍ଖର ତୃତୀୟ ଆବର୍ତ୍ତନରେ ମୋର ଆଦ୍ୟାଶକ୍ତି ବିମଳା ସ୍ଥିତ । ସେ ଭୋଗ ଏବଂ ମୋକ୍ଷ ପ୍ରଦାନ କାରୀ ଅଟନ୍ତି । ଏହାଙ୍କୁ ପ୍ରାର୍ଥନା କଲେ ସମସ୍ତ କାମନାପୂର୍ଣ୍ଣ ହେବା ସହିତ ଅନ୍ତରରେ ମୁକ୍ତି ମିଳିଥାଏ । ଏହି ଶଙ୍ଖର ନାଭି ସ୍ଥଳରେ କୁଣ୍ଡ, ବଟ ଓ ଭଗବାନ ପୁରୁଷୋତ୍ତମ ଏହି ତିନି ଜଣଙ୍କର ସ୍ଥିତି ଅଟେ । କପାଳ ମୋଚନଙ୍କ ଠାରୁ ଅର୍ଦ୍ଧାସୀନୀଙ୍କ ପର୍ଯ୍ୟନ୍ତ ଏହି ଶଙ୍ଖର ମଧ୍ୟ ଭାଗ ଭାବରେ ପରିଗଣିତ । ଏହି ଅର୍ଦ୍ଧାସୀନୀଙ୍କ ଦର୍ଶନ ଓ ପୂଜନରେ ମନୁଷ୍ୟକୁ ଅକ୍ଷୟ ଭୋଗ ମିଳିଥାଏ । ଏହି କ୍ଷେତ୍ର ତିନି ଲୋକରେ ସ୍ୱର୍ଗ ଏବଂ ମୋକ୍ଷ ପ୍ରଦାନକାରୀ ହେତୁ ପୁରୁଷୋତ୍ତମ କ୍ଷେତ୍ରକୁ ତୀର୍ଥରାଜ ମଧ୍ୟ କୁହନ୍ତି । ଏଠାରେ ରୋହିଣୀ ନାମକ ଏକ କୁଣ୍ଡ ରହିଛି ଯାହା ଭଗବାନଙ୍କ କରୁଣା ଜଳରେ ପରିପୂର୍ଣ୍ଣ । ପ୍ରଳୟ କାଳରେ ଏହି ଜଳ ବଢେ ଓ ପୁଣି ଶେଷରେ ଏହି କୁଣ୍ଡରେ ବିଲୀନ ହୋଇଯାଏ । ଏହା ପରମପାବନ ଅଟେ । ଏହାର ସ୍ପର୍ଶରେ ମନୁଷ୍ୟକୁ ବହୁ ମୁକ୍ତି ମିଳିଥାଏ । ଧର୍ମରାଜ ଏହି କ୍ଷେତ୍ରରେ ନିବାସ କରୁଥିବା ବ୍ୟକ୍ତି ମୋକ୍ଷର ଅଧିକାରୀ ଅଟନ୍ତି । ତେଣୁ ଏହି କ୍ଷେତ୍ର ତୁମର ଶାସନରୁ ମୁକ୍ତି ଅଟେ । ଏହା ଭଗବାନ ନୃସିଂହଙ୍କର ମଧ୍ୟ ଆବାସସ୍ଥଳ । ଅବିମୁକ୍ତ କ୍ଷେତ୍ର କାଶୀରେ ମୃତ୍ୟୁ ବରଣକରୁଥିବା ବ୍ୟକ୍ତିର କାନରେ ଭଗବାନ ମହେଶ୍ୱର ବ୍ରହ୍ମଜ୍ଞାନ ପ୍ରଦାନ କରିଥାନ୍ତି । ନିଜର ବୁଦ୍ଧିରେ ବ୍ୟକ୍ତି ଏହା  ଅଭ୍ୟାସ କରି କ୍ରମଶଃ ମୋକ୍ଷ ପ୍ରାପ୍ତ କରିଥାଏ । ଯେଉଁ ବ୍ୟକ୍ତି ଏହି ପୁରୁଷୋତ୍ତମ କ୍ଷେତ୍ରରେ ପ୍ରାଣ ତ୍ୟାଗକରେ ସେ ତତ୍‌କାଳ ହିଁ ମୁକ୍ତିଲାଭ କରିଥାଏ । ଏଠାରେ ଥିବା ଦକ୍ଷିଣ ସମୁଦ୍ରରେ ସ୍ନାନ କରି ଭଗବାନ ପୁରୁଷୋତ୍ତମ ଦର୍ଶନ କରି କଳ୍ପବୃକ୍ଷ ଛାୟାରେ କାଳାତିପାତ କରେ । ମନୁଷ୍ୟ ଜୀବନ୍ମୁକ୍ତ ହୋଇଥାଏ ଏପରି ତୀର୍ଥ କେଉଁଠାରେ ନାହିଁ । ଏହି କ୍ଷେତ୍ରରେ ଅନ୍ତର୍ବେଦୀକୁ ରକ୍ଷା କରିବା ପାଇଁ ଅଷ୍ଟ ଶକ୍ତି ରହିଛନ୍ତି । ବୃକ୍ଷ ମୂଳରେ ମଙ୍ଗଳା ପଶ୍ଚିମରେ ବିମଳା, ପୃଷ୍ଠ ଭାଗରେ ସର୍ବମଙ୍ଗଳା, ଉତ୍ତର ଦିଗରେ ଅର୍ଦ୍ଧାଶିନୀ, ଦକ୍ଷିଣରେ କାଳରାତ୍ରି, ପୂର୍ବରେ ମରୀଚିକା ତଥା କାଳରାତ୍ରୀଙ୍କ ପଛରେ ଚଣ୍ଡରୂପା ଶକ୍ତି  ସ୍ଥିତ ଏହି ପ୍ରକାର ଏହି ଅଷ୍ଟଉଗ୍ରରୂପା ଶକ୍ତିମାନଙ୍କ ଦ୍ୱାରା ଏହି କ୍ଷେତ୍ର ସବୁଦିଗରୁ ସୁରକ୍ଷିତ ଅଟେ । ଏହି ଅଷ୍ଟ ଶକ୍ତିଙ୍କର ଦର୍ଶନ କୀର୍ତ୍ତନରେ ସମସ୍ତ ପାପ ନଷ୍ଟ ହୋଇଥାଏ । ରୁଦ୍ରାଣୀଙ୍କର ସେହି ଅଷ୍ଟରୂପ ଦେଖି ଭଗବାନ ଶଙ୍କର ମଧ୍ୟ ନିଜକୁ ଅଷ୍ଟ ସ୍ୱରୂପରେ ବ୍ୟକ୍ତକରି ଶ୍ରୀହରିଙ୍କ ଉପାସନା କରୁଛନ୍ତି । କପାଳମୋଚନ କ୍ଷେତ୍ରପାଳ, ଯମେଶ୍ୱର, ମାର୍କଣ୍ଡେଶ୍ୱର, ବିଲେଶ୍ୱର, ନୀଳକଣ୍ଠ ଏବଂ କଳ୍ପବଟ ବୃକ୍ଷ ମୂଳରେ ବଟେଶ୍ୱର ଆଦି ଭାବରେ



ଅଭିବ୍ୟକ୍ତ । ଏହି ଅଷ୍ଟଲିଙ୍ଗଙ୍କ ଦର୍ଶନ, ପୂଜନ ଓ ସ୍ପର୍ଶରେ ହିଁ ମନୁଷ୍ୟ ମୁକ୍ତି ପାଇ ଯାଇଥାଏ । ଅତଏବ ଏହି କ୍ଷେତ୍ରରେ ମୃତ୍ୟୁବରଣ କରିବା ବ୍ୟକ୍ତିର ସ୍ୱାମୀ ଆପଣ ନୁହନ୍ତି । ତଥାପି ଭକ୍ତର ଶରଣଗତି ଦୁଃଖ ଭଂଜନ ଜଗନ୍ନାଥ ତୁମ ଭକ୍ତିରେ ସନ୍ତୁଷ୍ଟ ତେଣୁ ଆମେ ଅର୍ଥାତ ମୁଁ ସୁଦର୍ଶନ ଓ ଶ୍ରୀ ଜଗନ୍ନାଥ ସେଠାରେ ଏବେ ଗୁପ୍ତ ଭାବରେ ସ୍ୱର୍ଣ୍ଣ ବାଲୁକା ମଧ୍ୟରେ ଆବଦ୍ଧ ହୋଇ ରହିବୁ । ଏକଥା ଯମରାଜାଙ୍କୁ କହିବା ସହିତ ବ୍ରହ୍ମାଙ୍କୁ ଉଦ୍ଦେଶ୍ୟ କରି ମହାଲକ୍ଷ୍ମୀ କହିଲେ ହେ ପ୍ରଭୁ ପ୍ରଜାନାଥ ସତ୍ୟ ଯୁଗରେ ରାଜା ଇନ୍ଦ୍ରଦ୍ୟୁମ୍ନ ଜନ୍ମ ନେବେ । ସେ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କର ପରମ ଭକ୍ତ ଅଟନ୍ତି । ସେହି ରାଜାଙ୍କ ଉପରେ ଅନୁଗ୍ରହ କରିବା ନିମିତ୍ତ ଭଗବାନ ଏକ କାଷ୍ଠରୁ ଉତ୍ପନ୍ନ ହୋଇ ଚାରିଟି ପ୍ରତିମା ରୂପରେ ଅଭିବ୍ୟକ୍ତ ହେବେ କାଷ୍ଠର ସେହି ପ୍ରତିମାକୁ ସ୍ୱୟଂ ବିଶ୍ୱକର୍ମା ନିର୍ମାଣ କରିବେ ଏବଂ ଆପଣ ଇନ୍ଦ୍ରଦ୍ୟୁମ୍ନ ଉପରେ ପ୍ରସନ୍ନ ହୋଇ ସେ ପ୍ରତିମାମାନଙ୍କର ସ୍ଥାପନା କରିବେ । ଏହା ଶ୍ରବଣ କରି ବ୍ରହ୍ମା ଏବଂ ଯମରାଜା ଦୁହେଁ ଅତ୍ୟନ୍ତ ଆନନ୍ଦିତ ହୋଇଥିଲେ । ସଂପ୍ରତି ଏହି ନୀଳାଚଳରେ ଶ୍ୟାମ ସୁନ୍ଦର ଶଙ୍ଖ ଚକ୍ରଧାରୀ ବିଷ୍ଣୁ କାଷ୍ଠ ନିର୍ମିତ ବଳଭଦ୍ର, ସୁଭଦ୍ରା, ସୁଦର୍ଶନ ସହିତ ସ୍ୱୟଂ ଦାରୁମୟ ବିଗ୍ରହ ଧାରଣ କରି ଶରଣାଗତର ପାପନାଶନ କରୁଛନ୍ତି । ଏହି ଅଲୌକିକ ପ୍ରତିମା ଲୌକିକ ରୂପରେ ଅତ୍ୟନ୍ତ ଗୁପ୍ତ ଭାବରେ ପ୍ରକାଶିତ । ଅତଏବ ଶ୍ରୀକ୍ଷେତ୍ର ସଂପର୍କିତ ସମସ୍ତ ତଥ୍ୟ ବହୁ ପୂର୍ବରୁ ମହାଲକ୍ଷ୍ମୀ ହିଁ ପ୍ରକାଶ କରିଥିଲେ । ଏଣୁ ଜଗନ୍ନାଥଙ୍କ ସଂସ୍କୃତିରେ ମହିମାମୟୀ ମହାଲକ୍ଷ୍ମୀଙ୍କର ଏକ ବିଶେଷ ଭୂମିକା ରହିଛି । ଯେପରି ସେ ନୀଳାଚଳ ଧାମ ଉନ୍ମୋଚିତ ହେବାର ବହୁ ପୂର୍ବରୁ ଏହି କ୍ଷେତ୍ର ସଂପର୍କରେ ଭବିଷ୍ୟବାଣୀ କହିଥିଲେ । ଠିକ୍ ସେହିପରି ଜଗନ୍ନାଥଙ୍କ ସଂସ୍କୃତିରେ ମହନୀୟତା ପ୍ରଦର୍ଶନରେ ମଧ୍ୟ ଏକ ଗୌରବବହ ଭୂମିକା ଗ୍ରହଣ କରିଥାନ୍ତି ।

ମହାପ୍ରଭୁ ଶ୍ରୀଜଗନ୍ନାଥ ବିଜେ କରିଥିବା ପବିତ୍ରତମ କ୍ଷେତ୍ରର ଯେଉଁ କେତୋଟି ନାମ ଅଛି ପୁରୁଷୋତ୍ତମ, ନୀଳାଚଳ, ଶ୍ରୀକ୍ଷେତ୍ର, ଶଙ୍ଖକ୍ଷେତ୍ର ଓ ମର୍ତ୍ତ୍ୟ ବୈକୁଣ୍ଠ, ଏହିନାମରେ ପୁଷ୍ଟିକରଣ କରି ସ୍କନ୍ଦପୁରାଣରେ ଉଲ୍ଲେଖ ରହିଛି ।

ଅତ୍ର ସାକ୍ଷାନ୍ନିବସତି ଯଥା ବୈକୁଣ୍ଠ ବେଶ୍ମନି
ଦ୍ୱାଦଶେଷ୍ୱପି ମାସେସୁ ଭଗବାନତ୍ର ମୂର୍ତ୍ତିମାନ
(୪୯ ଅଧ୍ୟାୟ-୧୦ମ ଶ୍ଳୋକ)

ଅର୍ଥାତ୍ ବୈକୁଣ୍ଠରେ ଶ୍ରୀବିଷ୍ଣୁ ଯେପରି ସାକ୍ଷାତ ବାସ କରନ୍ତି ସେହିପରି ଏହି କ୍ଷେତ୍ରରେ ମଧ୍ୟ ବାରମାସ ବିରାଜମାନ କରନ୍ତି ଏବଂ ଯେଉଁଠାରେ ନାରାୟଣ ସେହିଠାରେ ଲକ୍ଷ୍ମୀ ବାସ କରିଥାନ୍ତି । ଯେତେବେଳେ ଭଗବାନ ନାରାୟଣ ଧରାପୃଷ୍ଠକୁ ଆସିଛନ୍ତି ତାଙ୍କ ସହିତ ଲକ୍ଷ୍ମୀ ନିଶ୍ଚୟ ଆସନ୍ତି ।

ପୁଂ ନାମ୍ନା ଭଗବାନ ବିଷ୍ଣୁଃ ସ୍ତ୍ରୀନାମ୍ନା କମଳାଳୟୀ
ଦେବତିର୍ଯ୍ୟତଂ ମନୁଷ୍ୟାଦୌ ବିନ୍ୟତେ ନ ତୟୋଃପରମ୍ (ସ୍କ.ପୁ-୧୯ଅ-୧୫ ଶ୍ଳୋକ)

କାରଣ ସୃଷ୍ଟିର ପରିପାଳନରେ ଲକ୍ଷ୍ମୀଙ୍କ ବିନା ବିଷ୍ଣୁ ଅସମର୍ଥ । କାରଣ ସ୍ୱୟଂ ସୃଷ୍ଟିକର୍ତ୍ତାଙ୍କର ମଧ୍ୟ ସମସ୍ତ ଭାର ମହାଲକ୍ଷ୍ମୀ ବହନ କରିଥାନ୍ତି । ଏହି ସମସ୍ତ ଦୃଷ୍ଟିରୁ ଶ୍ରୀମନ୍ଦିର ସର୍ବମୟୀ କର୍ତ୍ତ୍ରୀ ଭାବରେ ଲକ୍ଷ୍ମୀଙ୍କର ଉପସ୍ଥିତି ।

କୌଣସି ବାସସ୍ଥାନ ସେ ପର୍ଯ୍ୟନ୍ତ ଗୃହ ହୁଏ ନାହିଁ ଯେଉଁଠାରେ ଗୃହିଣୀ ଉପସ୍ଥିତ ରହି ଧର୍ମ କାମ ମୋକ୍ଷ ରୂପକ ସୁଖଭୋଗ ନକରାନ୍ତି । ଏହି ସମସ୍ତ ଧର୍ମପାଳନ ନିମିତ୍ତ ଶ୍ରୀମନ୍ଦିରରେ ମହାଲକ୍ଷ୍ମୀଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ । ସେ ଏକାଧାରରେ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ରୋଷଶାଳାର ଦାୟିତ୍ୱ ନେଇଥାନ୍ତି ଏବଂ ତାଙ୍କର ଆଶୀର୍ବାଦରେ ଆଚଣ୍ଡାଳ ବ୍ରାହ୍ମଣ ସ୍ୱକୀୟ ଅଭିମାନ ଭୁଲି ଏକତ୍ର ହୋଇ ମହାପ୍ରଭୁଙ୍କର ଅଭଡାନ୍ନ ଗ୍ରହଣ କରିଥାନ୍ତି । ଲକ୍ଷ୍ମୀ ପୁରାଣରେ ଏହାର ବିସ୍ତୃତ ବର୍ଣ୍ଣନା ରହିଛି । ମହାଲକ୍ଷ୍ମୀ ହିଁ ଏହି ଅନନ୍ୟ ସଂସ୍କୃତିର ପ୍ରେରଣା ଦାତ୍ରୀ ଅଟନ୍ତି । ଶ୍ରୀଜଗ୍ନନାଥ ସଂସ୍କୃତିରେ ଯାହା କିଛି ଅନନ୍ୟ ଓ ଅନୁକରଣୀୟ ତାହା ଆପାତତଃ ମହାଲକ୍ଷ୍ମୀଙ୍କ ଯୋଗୁ ସଂଭବ । ସେ ମହାପ୍ରସାଦର ମହତ୍ତ୍ୱଠାରୁ ଆରମ୍ଭ କରି ସାଧାରଣ ଗୃହିଣୀର ସାଧାରଣ କୁଳାଚାର ପର୍ଯ୍ୟନ୍ତ ଲକ୍ଷ୍ମୀଙ୍କୁ କେନ୍ଦ୍ରକରି ଶ୍ରୀମନ୍ଦିର ଓ ଶ୍ରୀଜଗନ୍ନାଥ ସଂସ୍କୃତିରେ ପରିବ୍ୟାପ୍ତ । ଅତିଥି ପରାୟଣତା, ବ୍ରତ ଉପବାସ ସହିତ, ପତ୍ନୀର ମାନ ଅଭିମାନ, ଅଂହକାର ଆଦି ସମସ୍ତ ପତ୍ନୀ ଧର୍ମରେ ସେ ଲୀଳାୟିତ । ଶ୍ରୀ ମନ୍ଦିର ମଧ୍ୟରେ ଲକ୍ଷ୍ମୀଙ୍କର ଅନେକ ଲୌକିକ ଲୀଳା ଅନୁଷ୍ଠିତ ହୋଇଥାଏ ତାହା ଯେପରି ଚିତ୍ତାକର୍ଷକ ସେହିପରି ମନୋ ମୁଗ୍ଧକର ମଧ୍ୟ । ଜ୍ୟେଷ୍ଠମାସ ଶୁକ୍ଳପକ୍ଷ ଅଷ୍ଟମୀ ତିଥିରେ ଶିବ ପାର୍ବତୀଙ୍କର ବିବାହ ଅନୁଷ୍ଠିତ ହୁଏ । ଏହି ବିବାହ ଅନୁଷ୍ଠିତ ହେବା ପରେ ଶ୍ରୀକ୍ଷେତ୍ରର ପଂଚ ମହାଦେବ ନିଜ ନିଜର ନବବିବାହିତା ପତ୍ନୀଙ୍କ ସହିତ ଲକ୍ଷ୍ମୀ ମନ୍ଦିରରେ ବିଜେ କରିଥାନ୍ତି ଏବଂ ମହାଲକ୍ଷ୍ମୀ ସମସ୍ତଙ୍କୁ ନୈବେଦ୍ୟ ଅର୍ପଣ କରି ଆତିଥ୍ୟ ସତ୍କାର କରିଥାନ୍ତି । ଏହା ବ୍ୟତୀତ ମହାଲକ୍ଷ୍ମୀଙ୍କର ସ୍ୱତନ୍ତ୍ର ବିଜେ ପ୍ରତିମା ବିଭିନ୍ନ ପର୍ବପର୍ବାଣୀରେ ପୂଜିତ ହୋଇଥାନ୍ତି । ପୁଷ୍ୟାଭିଷେକରେ ଶ୍ରୀଜଗନ୍ନାଥଙ୍କ ସହିତ

ଲକ୍ଷ୍ମୀଙ୍କର ଅଭିଷେକ ହୁଏ । ଦୋଳଯାତ୍ରାରେ ଦୋଳଗୋବିନ୍ଦଙ୍କ ସହିତ ଲକ୍ଷ୍ମୀ ଦୋଳ ବେଦୀକୁ ବିଜେ କରନ୍ତି । ଚନ୍ଦନଯାତ୍ରାରେ ମଦନ ମୋହନଙ୍କ ସହିତ ଲକ୍ଷ୍ମୀ ଜଳକ୍ରୀଡ଼ା କରିଥାନ୍ତି । କାର୍ତ୍ତିକ ଶୁକ୍ଳ ଏକାଦଶୀରେ ଶ୍ରୀଜଗନ୍ନାଥଙ୍କ ଲକ୍ଷ୍ମୀନାରାୟଣ ବେଶ ଅନୁଷ୍ଠିତ ହୋଇଥାଏ । କୌଣସି ଗୁରୁବାର ଏକାଦଶୀ ପଡିଲେ ତାହା ଲକ୍ଷ୍ମୀ ନାରାୟଣ ଏକାଦଶୀ ଭାବରେ ନାମିତ ହୋଇଥାଏ । ସେହିପରି ଶୁକ୍ଳ ଦଶମୀ ତିଥି ଗୁରୁବାରରେ ପଡିଲେ ତାହା ମହାଲକ୍ଷ୍ମୀଙ୍କ ସୁଦଶାବ୍ରତ ହୋଇଥାଏ । ଏହି ବ୍ରତ ପ୍ରତ୍ୟେକ ଗୃହିଣୀ କରିଥାନ୍ତି । ଏହା ବ୍ୟତୀତ ମାର୍ଗଶିର ମାସର ପ୍ରତ୍ୟେକ ଗୁରୁବାର ଦିନ ଲକ୍ଷ୍ମୀ ପୂଜା ଓଡିଶାର ଘରେ ଘରେ ଅନୁଷ୍ଠିତ ହୋଇ ମହାଲକ୍ଷ୍ମୀଙ୍କର ମହତ୍ତ୍ୱ ପ୍ରତିପାଦିତ ହୋଇଥାଏ । ଶ୍ରୀଜଗନ୍ନାଥ ଓଡିଶାର ଜନସାଧାରଣଙ୍କୁ ଏକ ସୂତ୍ରରେ ବାନ୍ଧି ରଖି ଆଧ୍ୟାତ୍ମିକ ଚିନ୍ତା ଓ ଚେତନାର ପ୍ଲାବନ ଆଣିବାରେ ମହାଲକ୍ଷ୍ମୀ ଏକ ଗୁରୁତ୍ୱପର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । ଏପରିକି ସ୍ୱୟଂ ମହାଲକ୍ଷ୍ମୀ ଭାଦ୍ରବ ଶୁକ୍ଳପକ୍ଷ ପଂଚମୀ (ଋଷି ପଂଚମୀ) ଦିନ ରମଣୀମାନଙ୍କ ଗହଣରେ ବ୍ରତ କରି ପୁରାଣ ଶ୍ରବଣ କରି ସେଠାରୁ ମାର୍କଣ୍ଡ ପୁଷ୍କରିଣୀକୁ ଆସି ସ୍ନାନ କରିଥାନ୍ତି । ଏହିପରି ଭାବରେ ଅଂସଖ୍ୟ ପୂଜା ବିଧି ସାଧାରଣ ଗୃହିଣୀଟିଏ ପରି ମହାଲକ୍ଷ୍ମୀ ଶ୍ରୀମନ୍ଦିର ମଧରେ ପାଳନ କରିଥାନ୍ତି ସାଧାରଣ ଗୃହବଧୂଟିଏ ପରି । ସେ ପ୍ରତିବର୍ଷ ନିଜ ପିତ୍ରାଳୟକୁ ଗମନ କରିଥାନ୍ତି ଏବଂ ସେଠାରେ ଏକମାସ ଅବସ୍ଥାନ କରି ପ୍ରତ୍ୟାବର୍ତ୍ତନ କରିବା ସମୟରେ ସାଧାରଣ ଝିଅଟିଏ ପରି ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ପାଇଁ ବହୁ ଉପହାର ସାମଗ୍ରୀ ନେଇକରି ଆସିଥାନ୍ତି ।

ସବୁଠାରୁ ବଡ ମାନବୀୟ ଲୀଳା ମହାଲକ୍ଷ୍ମୀଙ୍କର ଅନୁଷ୍ଠିତ ହୋଇଥାଏ ଜ୍ୟେଷ୍ଠ ଶୁକ୍ଳପକ୍ଷ ଏକାଦଶୀ ଠାରୁ ଆଷାଢ ଶୁକ୍ଳ ଦ୍ୱାଦଶୀ ପର୍ଯ୍ୟନ୍ତ । ଜ୍ୟୋଷ୍ଠ ଶୁକ୍ଳ ଏକାଦଶୀ ଦିନ ଶ୍ରୀ ଜଗନ୍ନାଥଙ୍କ ଲକ୍ଷ୍ମୀରୂପୀ ରୁକ୍ମିଣୀଙ୍କସହିତ ବିବାହ ଅନୁଷ୍ଠିତ ହୋଇଥାଏ ଏବଂ ଶୁକ୍ଳ ଚତୁର୍ଦ୍ଦଶୀ ରାତ୍ରରେ ତାଙ୍କର ଚତୁର୍ଥୀ ହୋମ ହୋଇଥାଏ । ଏହାପରେ ମହାପ୍ରଭୁଙ୍କ ସହିତ ଆଉ ମହାଲକ୍ଷ୍ମୀଙ୍କର ସାକ୍ଷାତ ହୁଏ ନାହିଁ । ପୂର୍ଣ୍ଣିମା ଦିନ ସ୍ନାନାନ୍ତରେ ମହାପ୍ରଭୁ ଜରାଗ୍ରସ୍ତ ହୁଅନ୍ତି ଏବଂ ନବଯୌବନ ବେଶ ଦର୍ଶନ ପରେ ସେ ବଳଭଦ୍ର ଓ ସୁଭଦ୍ରାଙ୍କ ସହିତ ରଥରେ ଚଢି ଗୁଣ୍ଡିଚା ଘରକୁ ଯାତ୍ରା କରିଥାନ୍ତି । ଏହା ଲକ୍ଷ୍ମୀଙ୍କୁ ଯେତିକି କ୍ରୋଧିତ କରେ ସେତିକି ବ୍ୟଥିତ କରେ । ଏହାର ଚମତ୍କାର ଚିତ୍ରଣ ମହାପ୍ରଭୁଙ୍କର ଲୌକିକ ସଂସ୍କୃତିରେ ଦୃଷ୍ଟି ଗୋଚର ହୁଏ । ସାଧାରଣ ନାରୀଟିଏ ପରି ନିଜର ମନୋଭାବ ସେ ବଖାଣି ବସନ୍ତି ଭଗ୍ନୀ ସମ ବିମଳାଙ୍କ ନିକଟରେ ପତିଙ୍କର ଏ ଅସହ୍ୟ ଅବମାନନା ଶଯ୍ୟ କରି ପାରନ୍ତି ନାହିଁ । ବିମଳାଙ୍କ ପରାମର୍ଶ କ୍ରମେ ମୋହଚୂର୍ଣ୍ଣ ନେଇ ଯାତ୍ରା କରିଛନ୍ତି ଆଡପମଣ୍ଡପ । ଚୈତନ୍ୟ ଚରିତା ମୃତରେ ମହାଲକ୍ଷ୍ମୀଙ୍କର ଏହି ମାନବୀୟ ଲୀଳାର ଅତି ଚମତ୍କାର ବର୍ଣ୍ଣନା ରହିଛି ।

''ହେନା କଲେ ଖଚିତ ଯାହେ ବିବିଧ ରତନ
ସୁବର୍ଣ୍ଣର ଚୌଦୋଲାତେ କରି ଆହୋରଣ
ଛତ୍ର ଚାମର ଧ୍ୱଜା ପତାକା ତୋରଣ
ନାନା ବାଦ୍ୟ ଆଗେ ନାଚେ ଦେବଦାସୀଗଣ
ତାମ୍ବୁଳ ସମ୍ପୁଟି ଝାରି ବ୍ୟଜନ ଚାମର
ସାଥେ ଯାୟ ଦାସୀ ଶତ ଦିବ୍ୟ ଭୂଷାମ୍ବର
ଅନେକ ଐଶ୍ୱର୍ଯ୍ୟ ସଂଗେ ବହୁପରିବାର
କ୍ରୁଦ୍ଧ ହୟେଁ ଲକ୍ଷ୍ମୀ ଦେବୀ ଦେବୀ ଅଇଲା ସିଂହଦ୍ୱାର ।

ମହାଲକ୍ଷ୍ମୀଙ୍କର ଏ କ୍ରୁଦ୍ଧ ଅଭିମାନ ଦେଖି ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କର ଦଇତା ସେବକ ଗଣ ଗୁଣ୍ଡିଚା ମନ୍ଦିରର ମୁଖ୍ୟ ଦ୍ୱାର ଅବରୋଧ କରିଦିଅନ୍ତି । ମାତ୍ର ବିଦ୍ୟାପତି ବଂଶଜ ପତି ମହାପାତ୍ରମାନେ ଯଥାବିଧି ମା ଲକ୍ଷ୍ମୀଙ୍କ ସେବା ବଢାଇ ନାକଚଣା ଦ୍ୱାର ବାଟେ ମହାଲକ୍ଷ୍ମୀଙ୍କୁ ଆଡପ ମଣ୍ଡପରେ ପ୍ରବେଶ କରାନ୍ତି ।

ଲକ୍ଷ୍ମୀଙ୍କ ସହିତ ଯାଇଥିବା ପଂଚୁପାଣ୍ଡବ ମହାଲକ୍ଷ୍ମୀଙ୍କର ମଧ୍ୟସ୍ଥି ଭାବରେ କାର୍ଯ୍ୟ କରନ୍ତି । ଲକ୍ଷ୍ମୀଙ୍କ ରୋଷ ଶାନ୍ତ କରିବା ନିମନ୍ତେ ମହାପ୍ରଭୁ ଦୁଇଦିନ ପରେ ଫେରିଯିବାର କଣ୍ଟ ଦେଇ ରଥ ଦକ୍ଷିଣ ମୋଡ କରିବା ପାଇଁ ଆଦେଶ ଦିଅନ୍ତି । ତଥାପି ମହାଲକ୍ଷ୍ମୀଙ୍କର କ୍ରୋଧ ଶାନ୍ତ ହୁଏ ନାହିଁ । ସିଂହ ଦ୍ୱାର ବନ୍ଦ କରିଥିବା ଅପରାଧରେ ମହାପ୍ରଭୁଙ୍କର ରଥର ଖଣ୍ଡେ ଅଖ ଭାଂଗି ଦିଅନ୍ତି- ଏବଂ ପାଳିଆ ସେବକମାନଙ୍କର ଯେଉଁ ଦୂରାବସ୍ଥା କରନ୍ତି ମାନବୀୟ ଲୀଳାର ଏହି ଚରମ ଦୃଶ୍ୟ ଯେପରି କୌତୁକପ୍ରଦ ସେହିପରି ଉପଭୋଗ୍ୟ ।

ତଥାପି ମାଧୁର୍ଯ୍ୟ ଲୀଳାରେ ରତ ମହାପ୍ରଭୁ ନିଜର ପ୍ରତିଶ୍ରୁତି ରଖି ପାରନ୍ତି ନାହିଁ । ଆଡପମଣ୍ଡପରେ ନଅଦିନ ରହିବା ପରେ ଦଶମୀ ଦିନ ବାହୁଡା ଯାତ୍ରାରେ ବାହାରନ୍ତି । ଦଶମୀ ଦିନ ମହାପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ରଥ ରାଜନଅର ପାଖରେ ପହଞ୍ଚିଲା



ବେଳେ ମହାଲକ୍ଷ୍ମୀ ଖବର ପାଇ ସାତପାହାଚ ତଳେ ଥିବା ପାଲିଙ୍କିରେ ବସି ଦେବଦାସୀ ସେବକମାନଙ୍କ ଗହଣରେ ଆସି ସିଂହଦ୍ୱାରରେ ଦକ୍ଷିଣରେ ଅବସ୍ଥିତ ଥିବା ଚାହାଣି ମଣ୍ଡପରୁ ନନ୍ଦିଘୋଷ ରଥରେ ମହାପ୍ରଭୁଙ୍କୁ ଦର୍ଶନ କରନ୍ତି । ଏହାପରେ ବିମାନରେ ଆସି ରଥ ପ୍ରଦକ୍ଷଣ କରି ମନ୍ଦିର ବିଜେ କରିଥାନ୍ତି। ପୁନଶ୍ଚ ଭକ୍ତମାନଙ୍କ ମନସ୍କାମନା ପୂର୍ଣ୍ଣ କରିବା ନିମିତ୍ତ ପ୍ରଭୁ ଏକାଦଶୀ ଦିନ ବଡ ଦାଣ୍ଡରେ ଅଟକି ଯାଆନ୍ତି। ଦ୍ୱାଦଶୀ ଦିନ ରଥରୁ ରତ୍ନ ସିଂହାସନକୁ ବିଜେ କଲାବେଳକୁ ଅନ୍ୟ ଏକ ମହା ନାଟକ ଅଭିନୀତ ହୁଏ । ସଂଧ୍ୟା ଧୂପ ସରି ବିଜେ କାହାଳୀ ବାଜି ପହଣ୍ଡି ଆରମ୍ଭ ହୁଏ । ମହାପ୍ରଭୁ ବଳରାମ ବିଜେ କରନ୍ତି ରତ୍ନସିଂହାସନ ଉପରେ, ଭଦ୍ରକାଳୀ ସୁଭଦ୍ରାଙ୍କର ମଧ୍ୟ ମନ୍ଦିର ପ୍ରବେଶର କିଛି ବାଧା ଉପୁଜେନାହିଁ । ମହାଲକ୍ଷ୍ମୀ ଭେଟ ମଣ୍ଡପରେ ଡମ୍ବରୁ ଉପରେ ବିଜେ କରିଥାନ୍ତି । ମହାପ୍ରଭୁଙ୍କର ବନ୍ଦାପନା ପରେ ମହାଲକ୍ଷ୍ମୀ ଭଣ୍ଡାର ଘରକୁ ବିଜେ କରନ୍ତି ଏବଂ ସେବିକାମାନଙ୍କୁ ନିର୍ଦ୍ଦେଶ ଦେଇ ଦିଅନ୍ତି ସିଂହଦ୍ୱାର ବନ୍ଦ କରିଦିଅନ୍ତି । ମହାପ୍ରଭୁ ବଡଦାଣ୍ଡ ଉପରେ କାକୁସ୍ଥ ହୋଇ ଠିଆହୋଇ ରହିଥାନ୍ତି । ମହାପ୍ରଭୁଙ୍କୁ ଶାସ୍ତି ଦେବାପାଇଁ ଇନ୍ଦ୍ରଙ୍କୁ ପ୍ରାର୍ଥନା କରନ୍ତିବର୍ଷା ହେବାପାଇଁ ପ୍ରବଳ ବର୍ଷା ହୁଏ । ତିନ୍ତି ତିନ୍ତି ଥରି ଥରି ଦାସୀମାନଙ୍କୁ ଅନୁରୋଧ କରନ୍ତି–ଠାକୁରାଣୀଙ୍କୁ କହ ମୋର ଦୋଷ ହେଇଛି । ଆଉ କେବେ ହେଲେ ମୁଁ ତାଙ୍କୁ ଏକୁଟିଆ ଛାଡିଯିବି ନାହିଁ । ସିଂହ ଦ୍ୱାର ଖୋଲିଯାଏ । ପ୍ରଭୁ ମନ୍ଦିର ମଧ୍ୟରେ ପ୍ରବେଶ କରନ୍ତି । ହେଲେ ଅଭିମାନିନୀଙ୍କ ଅଭିମାନ ତଥାପି ସରେ ନାହିଁ। ଜୟ ବିଜୟର ଦ୍ୱାର ବନ୍ଦ ହୁଏ । ଆରମ୍ଭ ହୁଏ ଲକ୍ଷ୍ମୀଙ୍କ ଦେବଦାସୀ ଓ ମହାପ୍ରଭୁଙ୍କ ସେବକମାନଙ୍କ ମଧ୍ୟରେ ବଚନିକା । ମହାଲକ୍ଷ୍ମୀ ଦ୍ୱାର ବନ୍ଦ କରି ଦେଇଥିବାରୁ ପ୍ରଭୁ ଚାଟୁ ବାକ୍ୟରେ ମହାଲକ୍ଷ୍ମୀଙ୍କ ମନ ମୋହିବାକୁ ବିନମ୍ରତାର ଦ୍ୱାର ଖୋଲି ଦେଇଛନ୍ତି ।

''ନବ ଦିନ ମୋତେ ନବଯୁଗ ହେଲା ଶ୍ରୀମୁଖ ନ ଦେଖିତୋର
ଝୁରି ଝୁରି ଦେହ ଦୁର୍ବଳ ହେଲାଣି ପାଦ ନ ଚଳଇ ମୋର
ନାହିଁ ମୋର ଦୋଷ କାହିଁ ପାଇଁ ରୋଷ କରୁଛ ନୃପତି ଜେମା
ହେଲେ ଅପରାଧ ତୁ କୃପା ବାରିଧି ସକଳ କରିବୁ କ୍ଷମା ।''

ମହାଲକ୍ଷ୍ମୀ ସ୍ତ୍ରୀ ସୁଲଭ ଈର୍ଷାଭାବର ଉର୍ଦ୍ଧ୍ୱକୁ ଯାଇ ପାରିନାହାନ୍ତି । ନିଜର ଅଲିଅଳି ନଣନ୍ଦ ସୁଭଦ୍ରାଙ୍କ ପ୍ରତି ଆକ୍ଷେପ ପ୍ରଦର୍ଶନ କରିବାକୁ ପଛେଇ ନାହାନ୍ତି । ଭାଇଭଉଣୀ କେହି କାହାକୁ କମ୍ ନୁହନ୍ତି ବୋଲି ଆକ୍ଷେପ କରିଛନ୍ତି –

''ଯାଅ ଯାଅ ଫେରି ନୀଳାଦ୍ରି ବିହାରୀ ଭଉଣୀଙ୍କୁ ସଙ୍ଗେ ନିଅ
ଛାଡିକରି ଗଲେ ଦୁଃଖ କରିବଟି ନନ୍ଦ ରାଜାଙ୍କର ଝିଅ ।''

ଜ୍ୟୋଷ୍ଠ ଭ୍ରାତାଙ୍କର ଉପସ୍ଥିତି ଦର୍ଶାଇ ପୁନଶ୍ଚ ମହାପ୍ରଭୁ ଶ୍ରୀଜଗନ୍ନାଥ ଲକ୍ଷ୍ମୀଙ୍କୁ ବୁଝାଇବାକୁ ଚେଷ୍ଟା କରିଛନ୍ତି– ତତ୍ ପରେ କ୍ରୋଧାନ୍ୱିତା ଲକ୍ଷ୍ମୀଙ୍କୁ ଶାନ୍ତ କରିବା ପାଇଁ ସାଙ୍ଗରେ ଆଣିଥିବା ଉପହାର ଦୁଦୁରା, ତଡକୀ, ନାକଦଣ୍ଡୀ, ବାଙ୍କ ଡେଉଁରିଆ ଆଦି ରତ୍ନଭୂଷଣଗୁଡିକୁ ଦେଖାଇବାର ପ୍ରଚେଷ୍ଟା କରିଛନ୍ତି । ଏଥିରେ ମଧ୍ୟ ସେ ସଫଳ ହୋଇପାରୁନାହାନ୍ତି । ଏଥିରେ ବରଂ ଲକ୍ଷ୍ମୀଙ୍କର ଅଭିମାନ ଆହୁରି ବଢି ଯାଇଛି, ଗୋପୀନାଥଙ୍କୁ ଛଳେଇ କହିଛନ୍ତି–

''ଅଳଂକାର ଦେଖି ଚାରୁଚନ୍ଦ୍ର ମୁଖୀ ଅନେକ କରିବେ ସ୍ନେହ
ପ୍ରେମର ସେ କୋଳ କରି ହେବେ ଭୋଳ ସମର୍ପିବେ ନିଜ ଦେହ
ତୁମ୍ଭେ ପରା ତାଙ୍କ ନାଟୁଆ ପୁରୁଷ ଗୋପୀମାନେ ତୁମ୍ଭ ଗୁରୁ
ନାସିକା ଫୁଲାଇ ଗୁଣା ଦୋହଲାଇ ଆଖିଠାରୁ ଥିବେ ଦୂରୁ ।''

ଏହିପରି କେତେ ଉଲୁଗୁଣା ଲକ୍ଷ୍ମୀ ଦେବାରେ ଲାଗି ଯାଆନ୍ତି । ଶେଷରେ ଲକ୍ଷ୍ମୀଙ୍କୁ ସପକ୍ଷ କରି ସାନଭାଇଙ୍କୁ ବଳଭଦ୍ର ଆକଟ କରିବାରୁ ଏ ମହାନାଟକ ଶେଷ ହୋଇଛି ଓ ଲକ୍ଷ୍ମୀ ଆନନ୍ଦିତ ହୋଇ ଦ୍ୱାରା ଖୋଲିଛନ୍ତି ।

ବିସ୍ମିତ ଚୈତନ୍ୟ ସ୍ୱରୂପଙ୍କୁ ଏହି ଲୀଳାର ଧର୍ମ ପଚାରନ୍ତେ ସ୍ୱରୂପ କହନ୍ତି–

''ସ୍ୱରୂପ କହେ ଶୁନ ପ୍ରଭୁ କାରଣ ଏହାର
ବୃନ୍ଦାବନ କ୍ରୀଡାୟେ ଲକ୍ଷ୍ମୀର ନାହିଁ ଅଧିକାର
ବୃନ୍ଦାବନ କ୍ରୀଡାର ସହାୟ ଗୋପୀଗଣ
ଗୋପୀବିନେ ଅନ୍ୟ କୃଷ୍ଣେର ହରିତେନାରେ ମନ ।''

ଅଥଚ ପରମ କାରୁଣିକ ଜଗତର ନାଥ ମୁହୂର୍ତ୍ତକ ପାଇଁ ହେଲେ ମଧ୍ୟ ମହାଲକ୍ଷ୍ମୀଙ୍କର ଐଶ୍ୱର୍ଯ୍ୟ ମଣ୍ଡିତ ଶ୍ରୀମନ୍ଦିର ମଧ୍ୟରେ ରାଧାରସର ସେଇ ମାନ ଅଭିମାନ ପର୍ବର ଅବତାରଣା କରାଇ ପରମପ୍ରିୟା ମହାଲକ୍ଷ୍ମୀଙ୍କୁ ମାଧୁର୍ଯ୍ୟପୂର୍ଣ୍ଣ ରାଧାରସର ଆସ୍ୱାଦନ କରାଇଛନ୍ତି । ଶ୍ରୀଜଗନ୍ନାଥଙ୍କ ଅନବଦ୍ୟ ସଂସ୍କୃତିରେ ଏ ହେଉଛି ମାଧୁର୍ଯ୍ୟ ଓ ଐଶ୍ୱର୍ଯ୍ୟର ସମ୍ମିଳିତ ରୂପ ।

ଏହିପରି ଭାବରେ ଶ୍ରୀଜଗନ୍ନାଥଙ୍କ ସଂସ୍କୃତିରେ ମହାଲକ୍ଷ୍ମୀ ଐଶ୍ୱର୍ଯ୍ୟ ଲୀଳା, ମାଧୁର୍ଯ୍ୟଲୀଳା, ଦୈବୀଲୀଳା ସହିତ ମାନବୀୟ ଲୀଳା ପ୍ରକାଶିତ । ଏହି ଲୀଳାକୁ ଅନୁଧ୍ୟାନ କଲେ ମହାଲକ୍ଷ୍ମୀ ଯେଉଁ ଦଶବିଧ ଐଶ୍ୱର୍ଯ୍ୟର ଅଧିକାରିଣୀ, ତାହା ଆଦୌ କାଳ୍ପନିକ ନୁହେଁ ବରଂ ବାସ୍ତବ ଜଗତର ଜୀବନ୍ତ ପ୍ରତିନିଧି ଏହା ପ୍ରମାଣିତ ହୁଏ ।

ନରେନ୍ଦ୍ର କୋଣ
ବାୟାବାବା ମଠଲେନ୍, ପୁରୀ





# କ୍ଷେତ୍ର ଶ୍ରୀପୁରୁଷୋତ୍ତମ

ପ୍ରମୋଦ କୁମାର ନାୟକ

ସ୍ମରଣାତୀତ କାଳରୁ ସର୍ବଭାରତୀୟ ଧର୍ମଧାରାର ବ୍ୟାଖ୍ୟାନ ସ୍ଥଳ ଥିଲା ନୈମିଷାରଣ୍ୟ । ପୁରାଣଶାସ୍ତ୍ର ସିଦ୍ଧାନ୍ତାନୁସାରେ ମୁନିଗୌରମୁଖ, ନିମିଷକ ମଧ୍ୟରେ ଏହି ପୁଣ୍ୟାରଣ୍ୟରେ ସମସ୍ତ ଅସୁରସେନାମାନଙ୍କୁ ଧ୍ୱଂସ କରିଦେଇଥିଲେ । ତଦନୁଯାୟୀ ଏହି ଅରଣ୍ୟର ନାମ ହୋଇଛି ନୈମିଷାରଣ୍ୟ । ନୈମିଷାରଣ୍ୟ ହେଉଛି, ଶୁଦ୍ଧପୂତ ଆଶ୍ରମ ମଣ୍ଡଳ ତପସ୍ୱୀମାନଙ୍କର । ଭୃଗୁବଂଶ ସମ୍ଭୁତ ମହର୍ଷି ଶୌନକ ହେଉଛନ୍ତି, ନୈମିଷାରଣ୍ୟ ନିବାସୀ ଋଷିବୃନ୍ଦଙ୍କର କୁଳପତି । ସମୟର ସିକତା ଉପରେ ପୁଣ୍ୟ-ନୈମିଷାରଣ୍ୟରେ ବ୍ୟାଖ୍ୟାନ ହୋଇଥିଲା ଚତୁଃର୍ବେଦ, ମହାକାବ୍ୟ ରାମାୟଣ, ମହାଭାରତ, ଶ୍ରୀମଦ୍ ଭାଗବତ ମହାପୁରାଣ ଆଦି ସଦ୍‌ଗ୍ରନ୍ଥ ସମୂହ । ତଦୁପରି, ଏକଦା ମହର୍ଷି ଶୌନକଙ୍କ ଆହ୍ୱାନ କ୍ରମେ, ସମସ୍ତ ଋଷିବୃନ୍ଦ ଏକତ୍ରିତ ହୋଇଥିଲେ, ସମଗ୍ର ସସାଗରା ଧରାର ତୀର୍ଥ ସମୂହର ତତ୍ତ୍ୱ ଓ ମହତ୍ତ୍ୱ ଜାଣିବା ନିମିତ୍ତ ।



''ଯାଦୃଶୀ ଭାବନା ଯସ୍ୟ ସିଦ୍ଧିର୍ଭବବତ ତାଦୃଶୀ'' ନ୍ୟାୟରେ ସଂଯୋଗକ୍ରମେ ମୁନିପୁଙ୍ଗବ ସୂତ ସ୍ୱଶିଷ୍ୟ ଗହଣରେ ପ୍ରବେଶ ହେଲେ ସଭାସ୍ଥଳରେ । ସୂତଙ୍କ ଆଗମନ ସନ୍ଦର୍ଶନେ ସମସ୍ତ ଋଷିବୃନ୍ଦ ସ୍ୱାଗତ ସମ୍ଭାଷଣ ଜଣାଇଲେ । ସୂତ ମଧ୍ୟ ପ୍ରତି ସମ୍ଭାଷଣ ଜଣାଇ ଋଷିଗହଣରେ କଲେ ଉପବେଶନ । ତଦୁତ୍ତାରେ, ସମସ୍ତ ଜ୍ଞାନର ଭଣ୍ଡାର ବ୍ୟାସଶିଷ୍ୟ ସୂତଙ୍କୁ, ଋଷିବୃନ୍ଦ ଅନୁରୋଧ କଲେ, ତୀର୍ଥମାନଙ୍କ ମଧ୍ୟରେ ଶ୍ରେଷ୍ଠ କ୍ଷେତ୍ର ସମୂହର ମଙ୍ଗଳମୟ ତାତ୍ପର୍ଯ୍ୟ ବର୍ଣ୍ଣନା ବିଷୟରେ ।

ଋଷିବୃନ୍ଦଙ୍କ ଆଗ୍ରହ ଜାଣି ସୂତ ତୀର୍ଥମାନଙ୍କ ଗୋପନ ତଥ୍ୟ ତତ୍ତ୍ୱ ଓ ମହତ୍ତ୍ୱ ପ୍ରକାଶ କଲେ । ସେ କହିଲେ ସମସ୍ତ ତୀର୍ଥମାନଙ୍କ ମଧ୍ୟରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଶ୍ରେଷ୍ଠତମ ଅଟେ । ଏହି କ୍ଷେତ୍ରର ତତ୍ତ୍ୱ ପରମ ଗୋପନୀୟ । ଯାହାଶ୍ରବଣରେ, ଯାବତୀୟ ଅଜ୍ଞାନାନ୍ଧକାର ଧ୍ୱଂସ ହୋଇ ପୁଣ୍ୟଫଳ ପ୍ରାପ୍ତ ହୋଇଥାଏ । ଇନ୍ଦ୍ରଶକ୍ଷେତ୍ର ସଦା ମଙ୍ଗଳ ପ୍ରଦାୟକ ଏବଂ ନୀଳପର୍ବତ ଦ୍ୱାରା ନୈସର୍ଗିକ ସୁଷମା ମଣ୍ଡିତ । କ୍ଷେତ୍ର ଶ୍ରୀପୁରୁଷୋତ୍ତମର ସୀମା ସରହଦ ନିର୍ଣ୍ଣୟ କରିବାକୁ ଯାଇ, ସୂତ କହିଲେ ଋଷିକୂଲ୍ୟା ନଦୀ ନିକଟରୁ ବୈତରଣୀ ନଦୀର ସୀମା ମଧ୍ୟରେ ଏହାର ମାହାତ୍ମ୍ୟ ରହିଅଛି । ଅପରପକ୍ଷରେ, ସମୁଦ୍ରର ଉତ୍ତରତଟରୁ ଆରମ୍ଭ ହୋଇ ମହାନଦୀର ଦକ୍ଷିଣ ପାର୍ଶ୍ୱ ପର୍ଯ୍ୟନ୍ତ ଦଶଯୋଜନ ଆୟତନ ବିସ୍ତୃତ ହୋଇ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପ୍ରତିଷ୍ଠିତ ଓ କ୍ଷେତ୍ର ଶ୍ରେଷ୍ଠ ରୂପେ ପରିଗଣିତ । ଶାସ୍ତ୍ରରେ ଉଲ୍ଲେଖ ଅଛି -

"ଋଷିକୂଲ୍ୟାଂ ସମାସାଦ୍ୟ ଯାବତ୍ ବୈତରଣୀ ନଦୀ,
ତାବତ୍ କ୍ଷେତ୍ରସ୍ୟ ମାହାତ୍ମ୍ୟଂ ବର୍ତ୍ତତେ ମୁନିପୁଙ୍ଗବାଃ,
ସମୁଦ୍ରସ୍ୟୋତ୍ତରଂ ତୀରଂ ମହାନଦ୍ୟାସ୍ତୁ ଦକ୍ଷିଣମ୍,
ତରମାରଭ୍ୟ ତତ୍ କ୍ଷେତ୍ରଂ ରାଜମାନଂ ମୁପାବନମ୍,
ବର୍ତ୍ତତେ ତତ୍ ସମାରଭ୍ୟ ସମନ୍ତାଦ୍ଦଶ ଯୋଜନମ୍,
ପଦେପଦେ ଶ୍ରେଷ୍ଠତମଂ ତତ୍‌କ୍ଷେତ୍ର ବର୍ତ୍ତତେଦ୍ଧନଘାଃ" ।

(ନିଳାଦ୍ରି ମହୋଦୟ)

ସଂକ୍ଷେପରେ କହିଲେ, ମହାନଦୀ ଓ ବୈତରଣୀ ନଦୀଦ୍ୱୟର ଦକ୍ଷିଣପାର୍ଶ୍ୱରୁ ନୀଳପର୍ବତ ମଧ୍ୟଦେଇ ମହୋଦଧି ତଟ ପ୍ରବେଶ ପର୍ଯ୍ୟନ୍ତ ସୁବିସ୍ତୃତ ଭୂଖଣ୍ଡ ଅଶେଷ ପୁଣ୍ୟଫଳ ପ୍ରଦାନ କରିବାକୁ ସମର୍ଥ । ଏହି ପୁଣ୍ୟକ୍ଷେତ୍ରକୁ ପ୍ରବେଶ ନିମିତ୍ତ ପାପରହିତ ବ୍ୟକ୍ତି ସମର୍ଥ ହୋଇଥାଏ । ଏହି ଦିବ୍ୟଦୃଷ୍ଟିରୁ ପାପରହିତ ହେବାକୁ



ହେଲେ ପ୍ରଥମେ ବୈତରଣୀ ନଦୀରେ ସ୍ନାନ ଓ ଶ୍ରୀବିରଜାଙ୍କୁ ଦର୍ଶନ, ଦ୍ୱିତୀୟରେ ବିନ୍ଦୁସରୋବରରେ ସ୍ନାନ ଓ ଏକାମ୍ର କାନନରେ ଶ୍ରୀଲିଙ୍ଗରାଜଙ୍କୁ ଦର୍ଶନ ଏବଂ ତୃତୀୟରେ ଚନ୍ଦ୍ରଭାଗା ତୀର୍ଥରେ ଅବଗାହନ୍ ପୂର୍ବକ ସୂର୍ଯ୍ୟଦେବତାଙ୍କୁ ଦର୍ଶନ କରିବା ବିଧେୟ । ତଦୁତ୍ତାରେ, ତୀର୍ଥରାଜ ମହୋଦଧିରେ ସ୍ନାନ କଲେ ପାପରହିତ ହୋଇ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ ନିମିତ୍ତ ଯୋଗ୍ୟ ବିବେଚିତ ହୋଇ ଅଶେଷ ପୁଣ୍ୟଫଳର ଅଧିକାରୀ ହୋଇଥାଏ । ଅଧିକନ୍ତୁ, ଉପର୍ଯ୍ୟୁକ୍ତ ପୁଣ୍ୟ ଭୂଖଣ୍ଡ ମଧ୍ୟରେ କ୍ଷେତ୍ର ଶ୍ରୀପୁରୁଷୋତ୍ତମକୁ ଭିତ୍ତିକରି ସୃଷ୍ଟି ହୋଇଛି ଅନେକ ପୁଣ୍ୟକ୍ଷେତ୍ର । ତନ୍ମଧ୍ୟରୁ ଶ୍ରୀବିଷ୍ଣୁଙ୍କ ଚତୁରାୟୁଧ ନାମରେ ନାମିତ ଚାରିକ୍ଷେତ୍ର ମହିମା ମଣ୍ଡିତ । ସେଗୁଡ଼ିକ ହେଲା- ଶ୍ରୀପୁରୁଷୋତ୍ତମ କ୍ଷେତ୍ର, ପୁରୀ, ଗଦାକ୍ଷେତ୍ର ଶ୍ରୀବିରଜା ଯାଜପୁର, ଏକାମ୍ରକ୍ଷେତ୍ର ଶ୍ରୀଲିଙ୍ଗରାଜ ଏକାମ୍ର କାନନ ଓ ପଦ୍ମକ୍ଷେତ୍ର କୋଣାର୍କ । ଏହି ଚତୁକ୍ଷେତ୍ରର ସୃଷ୍ଟି ସମ୍ବନ୍ଧରେ ପୁରାଣଶାସ୍ତ୍ର ସିଦ୍ଧାନ୍ତ ବିଦ୍ୟମାନ । ତଦନୁଯାୟୀ, ସତ୍ୟଯୁଗରେ ଦାନବ ଗୟାସୁର ସହିତ ଶ୍ରୀବିଷ୍ଣୁ ଯୁଦ୍ଧକ୍ଷେତ୍ରରେ ଉପଗତ ହୋଇଥିଲେ । ପରିଣାମରେ ଶ୍ରୀବିଷ୍ଣୁଙ୍କ ଦ୍ୱାରା ଦାନବ ନିହତ ହେବାରୁ ବିଜୟୋଲ୍ଲାସରେ ଉନ୍ମତ୍ତ ନୃତ୍ୟରତ ହେଲେ ଶ୍ରୀବିଷ୍ଣୁ । ଇତ୍ୟବସରେ, ଶ୍ରୀବିଷ୍ଣୁଙ୍କ ଶ୍ରୀକରକମଳରୁ ଚତୁରାୟୁଧ ଚ୍ୟୁତହୋଇ ଉତ୍କଳଭୂମିରେ ନିପତିତ ହୋଇଥିଲା । ଯେଉଁ କ୍ଷେତ୍ରରେ ଯେଉଁ ଆୟୁଧ ପତିତ ହେଲା, କାଳକ୍ରମେ ସେହି ସ୍ଥାନ ଆୟୁଧ ନାମରେ ନାମିତ ହୋଇଅଛି । ଉଲ୍ଲେଖ ଅଛି-

ଗଦାକ୍ଷେତ୍ରଂ ଚ ବିରଜା ମେକାମ୍ରଂ ସଜ୍ଞାକମ୍
କୋଣାର୍କଂ ପଦ୍ମକ୍ଷେତ୍ରଂ ଚ ଶଙ୍ଖକ୍ଷେତ୍ର ନୀଳଚଳମ ।
(ବାମଦେବ ସଂହିତା)

ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଶଙ୍ଖାକୃତ, ପଞ୍ଚକ୍ରୋଶ ପରିମିତ ନୀଳସୁନ୍ଦର ପର୍ବତ ଉପରେ ପ୍ରତିଷ୍ଠିତ । ଏହି କ୍ଷେତ୍ର ଦର୍ଶନରେ ଦର୍ଶକର ସମସ୍ତ ପାପରାଶି ଧ୍ୱଂସ ହୋଇଯାଏ । ଏହିକ୍ଷେତ୍ରର ପାଞ୍ଚକ୍ରୋଶ ପରିସୀମା ମଧ୍ୟରୁ ଦୁଇକ୍ରୋଶ ବଙ୍ଗୋପସାଗର ଗର୍ଭରେ ବିଲୀନ ହୋଇଯାଇଅଛି । ତେଣୁ ସମୁଦ୍ରକୁ କୁହାଯାଏ ତୀର୍ଥରାଜ ମହୋଦଧି । ଅବଶିଷ୍ଟ ତିନିକ୍ରୋଶ ଭୂପୃଷ୍ଠ ବଳୟକୁ ସମୁଦ୍ରର ନୀଳଜଳରାଶି ସ୍ପର୍ଶ କରିଥିବା ଦୃଷ୍ଟେ ଏହିକ୍ଷେତ୍ର ପୂତ ଓ ପବିତ୍ର । ଶାସ୍ତ୍ରରେ ଉଲ୍ଲେଖ ଅଛି

''ଶୃଣୁ ବୈଷ୍ଣବ କ୍ଷେତ୍ରସ୍ୟ ଚାୟତଂ ପଞ୍ଚକୋଶକମ୍
ଦ୍ୱିକୋଶ ସାଗରନ୍ଧପିସ୍ୟାତ୍ ତ୍ରିକୋଶଂ ପୃଥିବୀତଳେ ।''
(ବାମଦେବ ସଂହିତା)

ତୀର୍ଥରାଜ ମହୋଦଧି ପରିବେଷ୍ଟିତ ଶଙ୍ଖର ଉଦର ସଦୃଶ ତିନିକ୍ରୋଶ ବଳୟକୁ ପଦବ୍ରଜରେ ପରିଭ୍ରମଣ ଓ ଦର୍ଶନ କଲେ ପାପମୋଚନ ହୋଇଥାଏ । ଶାସ୍ତ୍ରରେ ଉଲ୍ଲେଖ ଅଛି-

ସମୁଦ୍ରୋଦକଂ ସଂଗୁପ୍ତ ଶ୍ରୀମଚ୍ଛଙ୍ଖୋଦରଂ ଶୁଭମ୍
କ୍ରୋଶତ୍ରିତୟ ସଂସ୍ପୃଷ୍ଟଂ ପଶତା ପାପମୋଚନମ୍ ।
(ନୀଳାଦ୍ରି ମହୋଦୟ)

ଅଧିକନ୍ତୁ ଯେଉଁବ୍ୟକ୍ତି ପ୍ରତ୍ୟହ ଶଙ୍ଖକ୍ଷେତ୍ରସ୍ଥିତ ମହୋଦଧିରେ ଅବଗାହନ କରନ୍ତି, ସେହିବ୍ୟକ୍ତି ପ୍ରତ୍ୟକ୍ଷଭାବେ ଶଙ୍ଖକୁ ସ୍ପର୍ଶନ ଓ ଦର୍ଶନ କରୁଥିବାରୁ ମହାମହା ପାତକରୁ ମୁକ୍ତି ପାଇଥାନ୍ତି । ଶଙ୍ଖକ୍ଷେତ୍ର ସହିତ ସମୁଦ୍ରର ସଂଯୋଗ ଏହି କ୍ଷେତ୍ରରେ ସଂଘଟିତ ହୋଇଥିବା ଦୃଷ୍ଟେ, ଏଠାରେ ସମୁଦ୍ର ''ତୀର୍ଥରାଜ ମହୋଦଧି'' ରୂପେ ପରିଗଣିତ ଓ ମୁକ୍ତି ଦାୟକ ।

ଶଙ୍ଖସଦୃଶ କ୍ଷେତ୍ର ଉପରେ ପ୍ରତିଷ୍ଠିତ କ୍ଷେତ୍ର ଶ୍ରୀପୁରୁଷୋତ୍ତମ । ଏହି ଶଙ୍ଖର ଆକୃତି ହେଲା ଦକ୍ଷିଣାବର୍ତ୍ତକ ଶଙ୍ଖ ସଦୃଶ । ଏହିଦିବ୍ୟ ଦୃଷ୍ଟିରୁ ଦକ୍ଷିଣାବର୍ତ୍ତକ ଶଙ୍ଖନାମ ସ୍ମରଣମାତ୍ରକେ ସମସ୍ତ ପାପ ଦୂରୀଭୂତ ହୋଇଥାଏ । କାରଣ ଏହି ପୁଣ୍ୟକ୍ଷେତ୍ରରେ ସବୁକାଳରେ ଓ ସମୟରେ ବିରାଜମାନ କରିଛନ୍ତି ଚତୁର୍ଭୁଜଧାରୀ ନୀଳବର୍ଣ୍ଣ ବିଷ୍ଣୁ ।

ନୀଳଭୂଧର ଉପରେ ସୁପ୍ରତିଷ୍ଠିତ କ୍ଷେତ୍ର ଶ୍ରୀପୁରୁଷୋତ୍ତମରେ ରହିଛି କୁଣ୍ଡ ରୋହିଣୀ । ଏହି କୁଣ୍ଡରେ ଥିବା ବାରି ସ୍ପର୍ଶ ମାତ୍ରକେ ସର୍ବପାପ ବିମୋଚନ ହୋଇଥାଏ । ମନୁଷ୍ୟ କଥା ଛାଡ, ସ୍ୱୟଂ ବ୍ରହ୍ମା ମଧ୍ୟ ଏହି କୁଣ୍ଡର ଜଳ ସ୍ପର୍ଶ କଲେ ପ୍ରଳୟ ହୁଏ । ରୋହିଣୀ କୁଣ୍ଡର ଚତୁଃପାର୍ଶ୍ୱରେ ବିଦ୍ୟମାନ ଅନେକ ଦେବାଦେବୀଙ୍କ ଆସ୍ଥାନ । କୁଣ୍ଡର ଉତ୍ତର ଦିଗରେ ରହିଛି ବିଷ୍ଣୁ ସ୍ୱରୂପ କଳ୍ପବୃକ୍ଷ । କଳ୍ପପାଦପ ଛାୟାରେ ଉପବେଶନ ପୂର୍ବକ ବୃକ୍ଷକୁ ସ୍ପର୍ଶନ ଓ ଦର୍ଶନ ମାତ୍ରେ ପାପରାଶି ଧ୍ୱଂସ ହୋଇଯାଏ । ଏପରିକି ବ୍ରହ୍ମହତ୍ୟା ଜନିତ ପାପ ମଧ୍ୟ ଦୂର ହୁଏ । କଳ୍ପବୃକ୍ଷ ମୂଳରେ ଦିବ୍ୟ ସିଂହାସନରେ ଅଧିଷ୍ଠିତ ଅଛନ୍ତି ''ନୀଳମାଧବ'' । ତଦୀୟ ଉଭୟ ପାର୍ଶ୍ୱରେ ଅଛନ୍ତି ଦେବୀ ଭୂଦେବୀ ଓ ଶ୍ରୀଦେବୀ । ତାଙ୍କ ସନ୍ନିକଟରୁ ଏକଶତ ହାତ ଦୂରରେ ଅର୍ଥାତ କଳ୍ପବଟର ବାୟୁକୋଣରେ ଅଛନ୍ତି ମାଧବ ।





ମାଧବଙ୍କ ଦକ୍ଷିଣକୁ ବିଜେ କରିଛନ୍ତି ଶ୍ରୀ ନୃସିଂହ । ତାଙ୍କଠାରୁ ଅନତିଦୂରରେ ଉତ୍ତରଦିଗକୁ ଅଛନ୍ତି, ସମସ୍ତ କାମନାର ଆଶୁଫଳ ଦାୟକ କ୍ଷେତ୍ରପାଳ କାମ ଓ ପୁଣ୍ୟଫଳ ପ୍ରଦାୟିନୀ ଦେବୀ ବିମଳା । ବିମଳା ହେଉଛନ୍ତି ଆଦ୍ୟାଶକ୍ତି । ଅପରପକ୍ଷରେ ସେ ଜୀବଜଗତର ଅନ୍ନଦାତ୍ରୀ ଓ ଭବବନ୍ଧନ ମୋଚନକାରିଣୀ ।

କ୍ଷେତ୍ର ଶ୍ରୀପୁରୁଷୋତ୍ତମର ତୃତୀୟ ସ୍ତରରେ ମଣିକର୍ଣ୍ଣିକା ତୀର୍ଥ ବିଦ୍ୟମାନ । ଏହି ତୀର୍ଥ ସନ୍ନିକଟରେ ଅଛନ୍ତି କପାଳମୋଚନ ମହାଦେବ । ଯିଏକି ପରିଦୃଶ୍ୟମାନ ଜଗତ ମଧ୍ୟରେ ସଂଘଟିତ ବ୍ରହ୍ମହତ୍ୟା ପାତକ ମୋଚନ କରିବାକୁ ସକ୍ଷମ ଅଟନ୍ତି । ତୀର୍ଥରାଜ ମହୋଦଧି ତଟଦେଶରେ ପ୍ରତିଷ୍ଠିତ ହୋଇଛନ୍ତି ''ଯମେଶ୍ୱର'' ମହାଦେବ । ସେ ନାରାୟଣ ସ୍ୱରୂପୀ ଏବଂ ଯମଦଣ୍ଡ ଖଣ୍ଡନକାରୀ । ତାଙ୍କୁ ଦର୍ଶନ କଲେ କୋଟିଲିଙ୍ଗ ଆରାଧନାର ଫଳ ପ୍ରଦାନ କରିଥାନ୍ତି । ତଦୀୟ ଆସ୍ଥାନର ଅଗ୍ନିକୋଣରେ ଅଛନ୍ତି 'କଣ୍ଡୁମୁନି' । ଯମେଶ୍ୱର ମହାଦେବଙ୍କ ବେଢ଼ା ମଧ୍ୟରେ ଅଛନ୍ତି ଚଣ୍ଡରୂପିଣୀ ଚଣ୍ଡିକା । ଚଣ୍ଡିକାଙ୍କର ଅଗ୍ରଭାଗର ଦକ୍ଷିଣ ଦିଗରେ ବିଷ୍ଣୁବଲ୍ଲଭା ରୂପେ ପ୍ରତିଷ୍ଠିତ ଅଛନ୍ତି ପାପନାଶିନୀ 'କାଳିକା' । ଶ୍ରୀବିଷ୍ଣୁ, କଳ୍ପବଟ, ମହୋଦଧିତଟ ଏବଂ କାଳିକାଙ୍କର ପୃଷ୍ଠଦେଶରେ ଅଛନ୍ତି ଶ୍ୱେତଗଙ୍ଗା । ତଦୀୟ ଦକ୍ଷିଣରେ ଶ୍ରୀହରିଙ୍କୁ ଧ୍ୟାନ ମୁଦ୍ରାରେ ଅଛନ୍ତି ମତ୍ସ୍ୟରୂପୀ ବିଷ୍ଣୁ ଓ ଶ୍ୱେତାବତାର ଶିବ । ମହନୀୟତା ହେଲା- ଶ୍ୱେତଗଙ୍ଗା ଜଳରେ ଅବଗାହନ କରି, ମତ୍ସ୍ୟାବତାର ବିଷ୍ଣୁ ଓ ଶ୍ୱେତାବତାର ଶିବଙ୍କ ଦର୍ଶନ କଲେ ସର୍ବବିଧ ପାପରୁ ମୁକ୍ତ ହୋଇ ମନୁଷ୍ୟ ଅଶ୍ୱମେଧ ଯଜ୍ଞାନୁଷ୍ଠାନର ପୁଣ୍ୟ ପ୍ରାପ୍ତ ହୋଇଥାଏ । ଅପରପକ୍ଷରେ, ଶ୍ରୀମନ୍ଦିର ପରିକ୍ରମା କାଳରେ ଅଜାଣତରେ ମହାପ୍ରସାଦକୁ ପାଦରେ ମାଡ଼ିଦେଲେ, ତଜ୍ଜନୀତ ପାପମୋଚନ ନିମିତ୍ତ ଶ୍ୱେତଗଙ୍ଗା ଜଳରେ ପାଦଧୌତ ପୂର୍ବକ ମତ୍ସ୍ୟାବତାର ବିଷ୍ଣୁଙ୍କୁ ଓ ଶ୍ୱେତଶିବଙ୍କୁ ଦର୍ଶନ କଲେ ତାହା ଦୂରୀଭୂତ ହୋଇଥାଏ ।

କାମନା ପୂରଣକାରୀ କଳ୍ପବଟ ମୂଳରେ ଅଛନ୍ତି ବଟେଶ୍ୱର । ତଦୀୟ ଅଗ୍ରଭାଗରେ ଅଛନ୍ତି ଶକ୍ତି ସ୍ୱରୂପିଣୀ ସର୍ବମଙ୍ଗଳା । କଳ୍ପବଟର ଦକ୍ଷିଣ ଭାଗରେ ଦକ୍ଷିଣକୁ ମୁଖକରି ବିଦ୍ୟମାନ ଅଛନ୍ତି ଗଣେଶ । ଗଣେଶ ବିଘ୍ନବିନାଶକ । ତଦୀୟ ଦର୍ଶନ ମାତ୍ରକେ ସମସ୍ତ କାମନା ଫଳପ୍ରଦ ହୋଇଥାଏ । ଅତିବଡ଼ି ଜଗନ୍ନାଥ ଦାସ ଏହି ଗଣେଶଙ୍କ ସମ୍ମୁଖରେ ଉପବେଶନ ପୂର୍ବକ ରଚନା କରିଥିଲେ ଶ୍ରୀମଦ୍ ଭାଗବତ ମହାପୁରାଣ ।

ସଂକ୍ଷେପରେ କହିଲେ, ନୀଳପର୍ବତର ପୂର୍ବଦିଗରେ ଶକ୍ତି ମରୀଚିକା, ଐଶାନ୍ୟ କୋଣରେ ଜଗଦ୍‌ଗୁରୁ ମାଧବ(ବିଷ୍ଣୁ) ଓ ଐଶାନେଶ୍ୱର, ଉତ୍ତର ଦିଗରେ ଦେବୀ ଅର୍ଦ୍ଧାଶନୀ ଓ କପାଳମୋଚନ ମହାଦେବ ପ୍ରତିଷ୍ଠିତ । ଶଙ୍ଖାକୃତି ଶଙ୍ଖକ୍ଷେତ୍ରର ମଧ୍ୟ ଭାଗରେ ହରି, ଶଙ୍ଖର ଅଗ୍ରଭାଗରେ ନୀଳକଣ୍ଠ, ପୃଷ୍ଠଦେଶରେ ସର୍ବମଙ୍ଗଳା ବିଦ୍ୟମାନ ଥାଇ କ୍ଷେତ୍ର ଶ୍ରୀପୁରୁଷୋତ୍ତମର ସୁରକ୍ଷା ପ୍ରଦାନ କରୁଛନ୍ତି ।

ଅଧିକନ୍ତୁ, ଶ୍ରୀପୁରୁଷୋତ୍ତମସ୍ଥ କଳ୍ପବଟର ବାୟବ୍ୟ କୋଣରେ ମାର୍କଣ୍ଡେୟ ମୁନି ଧ୍ୟାନ ମୁଦ୍ରାରେ ଲିଙ୍ଗ ରୂପେ ବିଦ୍ୟମାନ । ମାର୍କଣ୍ଡେୟଙ୍କ ଦ୍ୱାରା ଖନନ ହୋଇଛି ପବିତ୍ର ପୁଷ୍କରିଣୀ ମାର୍କଣ୍ଡେୟ । ଏହି ପୁଣ୍ୟ ପୁଷ୍କରିଣୀରେ ଅବଗାହନ ପୂର୍ବକ ଭକ୍ତିପୂତ ମନରେ ମାର୍କଣ୍ଡେୟଙ୍କ ଦର୍ଶନ କଲେ ବାଜପେୟଯାଗର ଫଳ ମିଳିଥାଏ ।

କ୍ଷେତ୍ର ଶ୍ରୀପୁରୁଷୋତ୍ତମରେ ଅଧିଷ୍ଠିତ ଓ ପୂଜିତ ଆଦିଦେବତା ଶ୍ରୀନୃସିଂହଙ୍କ ସମ୍ମୁଖରେ ପ୍ରତିଷ୍ଠିତ ଅଛନ୍ତି ଶ୍ରୀ ବାସୁଦେବ । ବାସୁଦେବ ଶେଷନାଗ ଉପରେ ଶୟନରତ । ତଦୀୟ ହସ୍ତରେ ଶୋଭାପାଏ ଶଙ୍ଖ, ଚକ୍ର, ଗଦା, ପଦ୍ମ ଓ ହୃଦଦେଶରେ ବନମାଳ ପରିଶୋଭିତ । ସେ କ୍ଷୀରସାଗରଶାୟୀ ଜଗତର ନାଥ ଜଗନ୍ନାଥ । ଯାହାଙ୍କ ପାଦଦେଶରେ ଲକ୍ଷ୍ମୀ ଓ କର୍ଣ୍ଣମୂଳରେ ସରସ୍ୱତୀ ସତତ ସେବାରତ । ଅପରପକ୍ଷରେ ତାଙ୍କର ନାଭିପଦ୍ମର ଉପର ଭାଗରେ ଅବସ୍ଥାନ କରିଛନ୍ତି ଚତୁର୍ମୁଖ ବ୍ରହ୍ମା । ପୁରୁଷୋତ୍ତମ ନାମଧାରୀ ନାରାୟଣ ଅନନ୍ତ ସର୍ପ ଉପରେ ଶୟନ କରିଥିବା ଦୃଷ୍ଟେ, ତାଙ୍କର ଅନ୍ୟନାମ ଅନନ୍ତ । ପୁରୁଷୋତ୍ତମ ନାମାନୁସାରେ କ୍ଷେତ୍ରର ନାମ ମଧ୍ୟ ପୁରୁଷୋତ୍ତମ ହୋଇଅଛି । ମନୁଷ୍ୟ ଶ୍ରଦ୍ଧା ଓ ଭକ୍ତି ସହିତ ସେହି ଶେଷନାଗଶାୟୀତ ନାରାୟଣ ପୁରୁଷୋତ୍ତମଙ୍କୁ ଦର୍ଶନ କଲେ ଅଶେଷ ପୁଣ୍ୟ ଅର୍ଜନ ସହିତ ଜୀବନ ଅନ୍ତ କାଳରେ ମୁକ୍ତି ପାଇଥାଏ । ଶାସ୍ତ୍ରରେ ଉଲ୍ଲେଖ ଅଛି -

ଅନନ୍ତୋ ପରିଦେବେଶଃ ପୁରୁଷୋତ୍ତମ ସଂଜ୍ଞୀକ ।
ତସ୍ମାନ୍ ବେଦେ ପୁରାଣେ ଚ ଅନନ୍ତ ପୁରୁଷୋତ୍ତମ ॥



ପୁରୁଷୋତ୍ତମମନା ମ୍ନୈତତ କ୍ଷେତ୍ରଂ ଶ୍ରୀପୁରୁଷୋତ୍ତମମ୍ ।
ନରୋ ମୁକ୍ତିମବା ପ୍ନୋତି ଦୃଷ୍ଟ୍ୱା ଶ୍ରୀଶେଷଶାୟିତମ୍ ॥
(ବାମଦେବ ସଂହିତା)

ଉପର୍ଯ୍ୟୁକ୍ତ ନାନାଦିତୀର୍ଥ ସନ୍ନିଶ୍ରଣ ଦ୍ୱାରା ମହାକ୍ଷେତ୍ର ରୂପେ ପ୍ରତିଷ୍ଠିତ କ୍ଷେତ୍ର ଶ୍ରୀପୁରୁଷୋତ୍ତମ । ତତ୍‌ସହିତ ନାନାଦି ବୃକ୍ଷ, ଲତା, ଗୁଳ୍ମ, ସୁରମ୍ୟ ଅଟ୍ଟାଳିକା ଦ୍ୱାରା ପରିଶୋଭିତ ହୋଇ ମହାକ୍ଷେତ୍ରଟି ଦେବଦୁର୍ଲ୍ଲଭ, ମନୋଜ୍ଞ, ସର୍ବସୁଖଦାୟୀ, ସୁରମ୍ୟ, ପୁଣ୍ୟମୟ ଓ ପାପତାପ ବିନାଶକ । ମହନୀୟତା ହେଲା ଇଦୃଶ କ୍ଷେତ୍ର ଭାରତବର୍ଷରେ ପ୍ରତିଷ୍ଠିତ ହୋଇ, ଅନାଦିକାଳରୁ ଶ୍ରୀନୀଳମାଧବ ସ୍ୱୟଂ ପ୍ରତିଷ୍ଠିତ ଓ ପୂଜିତ । ଏଠାରେ ମନୁଷ୍ୟ କଥା ଛାଡ଼, ସ୍ୱର୍ଗପୁରୀରୁ ଦେବଗଣ ପ୍ରତ୍ୟହ ଦେବଦୁର୍ଲ୍ଲଭ ଦିବ୍ୟବସ୍ତୁସହ ପୂଜାର୍ଚ୍ଚନା ନିମିତ୍ତ ଧରାବତରଣ କରିଥାନ୍ତି ।

ପୁରାଣ ଶାସ୍ତ୍ର ବର୍ଣ୍ଣନାନୁସାରେ, ପୁଣ୍ୟ ପୁରୁଷୋତ୍ତମ କ୍ଷେତ୍ରରେ, ସୁଦୂର ଅତୀତରେ ଏକଦା ଏକ କାକ ତୃଷାର୍ତ୍ତ ହୋଇ ରୋହିଣୀ କୁଣ୍ଡ ସନ୍ନିକଟରେ ଉପଗତ ହେଲା । ରୋହିଣୀ କୁଣ୍ଡସ୍ଥ ସୁନିର୍ମଳ ଜଳ ମଧ୍ୟରେ କାକ ଶ୍ରୀମାଧବଙ୍କ ପ୍ରତିବିମ୍ବ ଦର୍ଶନେ ଆତ୍ମ ସନ୍ତୋଷରେ ଜଳପାନ କଲା । ପରିଣାମରେ ଶଙ୍ଖ, ଚକ୍ର, ଗଦା, ପଦ୍ମ ଚତୁର୍ଭୁଜ ଶରୀର ପ୍ରାପ୍ତ ପୂର୍ବକ ବୈକୁଣ୍ଠପୁରୀକୁ ଗମନ କରିଥିଲା । କାକର ଇଦୃଶ ଶରୀର ପ୍ରାପ୍ତ ସନ୍ଦର୍ଶନେ ଯମରାଜ ସ୍ୱୀୟକର୍ତ୍ତୃତ୍ୱ କିଛିନାହିଁ ବୋଲି ମନଦୁଃଖରେ ଶ୍ରୀମାଧବଙ୍କ ନିକଟରେ ନିଜର ଅଭିଳାଷ ବ୍ୟକ୍ତ କଲେ । ଶ୍ରୀମାଧବ ଈଷତ୍ ହାସ୍ୟପ୍ରକାଶ ପୂର୍ବକ ଲକ୍ଷ୍ମୀଙ୍କୁ ଇଙ୍ଗିତ ଦେଲେ ପୁରୁଷୋତ୍ତମ କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା କରିବାକୁ । ଜଗଜ୍ଜନନୀ ଲକ୍ଷ୍ମୀ କହିଲେ ବସ୍ତ ଯମ ! ଏହି କ୍ଷେତ୍ର ଅତୀବ ପବିତ୍ର । ଏହି ପୁଣ୍ୟକ୍ଷେତ୍ରର ପଞ୍ଚକ୍ରୋଶ ପରିସୀମା ମଧ୍ୟରେ ଜଳ, ସ୍ଥଳ, ଆକାଶ ତଥା ଯେକୌଣସି ସ୍ଥାନରେ ଯେକେହି ଦେହଧାରୀ ମୃତ୍ୟୁବରଣ କଲେ, ଅତିଦୁର୍ଲ୍ଲଭ ମୁକ୍ତି ପାଇଥାନ୍ତି । ଏହିଦିବ୍ୟ ଦୃଷ୍ଟିରୁ ପୁରୁଷୋତ୍ତମ କ୍ଷେତ୍ରର ସୀମା ସରହଦ୍ ମଧ୍ୟରେ ତୁମର କୌଣସି ଅଧିକାର ନାହିଁ । ଅନ୍ୟଥା, ତୁମର ଅଧିକାର ବଳବତ୍ତର ରହିବ । ଅଧିକନ୍ତୁ, କୌଣସି ବ୍ୟକ୍ତି ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଦର୍ଶନ ଉଦ୍ଦେଶ୍ୟରେ ସ୍ୱଗୃହରୁ ଏକଶତ ପାଦ ଆସି ମୃତ୍ୟୁବରଣ କଲେ, ତା ଉପରେ ତୁମର ଅଧିକାର ନାହିଁ । ସେହିପରି ଏହି କ୍ଷେତ୍ରସ୍ଥ ମହୋଦଧିରେ ସ୍ନାନ ପୂର୍ବକ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିଥିବା ବ୍ୟକ୍ତି ଯେକୌଣସି ସ୍ଥାନରେ ଦେହତ୍ୟାଗ କଲେ, ତା ଉପରେ ମଧ୍ୟ ତୁମର କର୍ତ୍ତୃତ୍ୱ ରହିବ ନାହିଁ । ଯେହେତୁ ସ୍ୱୟଂ ନାରାୟଣ ଦେହଧାରଣ କରି କ୍ଷେତ୍ରାଶ୍ରୀ ପୁରୁଷୋତ୍ତମକୁ ନିତ୍ୟଲୀଳା କ୍ଷେତ୍ରରୂପେ ବାଛି ନେଇଛନ୍ତି, ତେଣୁ କ୍ଷେତ୍ର ଶ୍ରୀପୁରୁଷୋତ୍ତମରେ କ୍ଷେତ୍ର ଓ କ୍ଷେତ୍ରାଧିପତି ଏକ ଓ ଅଭିନ୍ନ । ଶାସ୍ତ୍ରରେ ଉଲ୍ଲେଖ ଅଛି-

ଅନୁରୂପ ମତେ କବି ଉଦାତ୍ତ କଣ୍ଠରେ ଗାଇଉଠିଛନ୍ତି-
ସର୍ବେ ଷାଂ ଚୈବ କ୍ଷେତ୍ରଣାଂ ରାଜା ଶ୍ରୀପୁରୁଷୋତ୍ତମ
ସର୍ବେଷାମ୍ ଚୈବ ଦେବାନାଂ ରାଜା ଶ୍ରୀପୁରୁଷୋତ୍ତମ ।
(କପିଳ ସଂହିତା)

ଶୁଣ କୋବିଦେ ଭାରତଖଣ୍ଡେ ପୁଣ୍ୟଧାମ ।
ଯେଣୁ ନାରାୟଣ ଦେହୀ ତେଣୁ ସେହି ନାମହେ ॥
(କୋଟିବ୍ରହ୍ମାଣ୍ଡସୁନ୍ଦରୀ)

ଉପର୍ଯ୍ୟୁକ୍ତ ସିଦ୍ଧାନ୍ତାନୁସାରେ ସୃଷ୍ଟିର ସାୟଂକାଳରୁ କ୍ଷେତ୍ର ଶ୍ରୀପୁରୁଷୋତ୍ତମ ନିତ୍ୟବୈକୁଣ୍ଠ ଭାବରେ ସୃଷ୍ଟିର ଆଦିଦେବତା ଶ୍ରୀନୀଳମାଧବଙ୍କୁ ନେଇ ପ୍ରତିଷ୍ଠିତ ଓ ଦେବମାନବ ଦ୍ୱାରା ପୂଜିତ । ସମୟର ବିବର୍ତ୍ତନ ଗତିରେ ଅପୌରୁଷେୟ ବିଶାଳ ବ୍ରହ୍ମଦାରୁ ମଧ୍ୟରୁ ସ୍ୱୟଂ ସପ୍ତଧା ଦାରୁବିଗ୍ରହ ରୂପେ ପରିବର୍ତ୍ତିତ ଓ ଆରାଧିତ । ପଞ୍ଚକ୍ରୋଶ ପରିସୀମା ମଧ୍ୟରେ ପ୍ରତିଷ୍ଠିତ କ୍ଷେତ୍ର ଶ୍ରୀପୁରୁଷୋତ୍ତମ ତତ୍ତ୍ୱ ଅନେକ । ଯାହାର କୂଳ କିନାରା ଖୋଜିପାଇବା ନିମିତ୍ତ ଯୋଗୀ, ଋଷି, ସିଦ୍ଧ, ସାଧକ, କବି, କୋବିଦ, ଗବେଷକବୃନ୍ଦ ଯୁଗଯୁଗ ଧରି ସତତ ଚେଷ୍ଟିତ । ଅଥଚ ଶ୍ରୀପୁରୁଷୋତ୍ତମଙ୍କ ଲୀଳା ସମୁଦ୍ରରେ ସମସ୍ତେ ଆତ୍ମହରା । କାରଣ ଦାରୁଦେବତା ଶ୍ରୀ ଜଗନ୍ନାଥ ହେଉଛନ୍ତି ସଚ୍ଚିଦାନନ୍ଦ ବିଗ୍ରହ ଓ କ୍ଷେତ୍ର ଶ୍ରୀପୁରୁଷୋତ୍ତମରେ ନିତ୍ୟ ଲୀଳାଲୀନ । ମହନୀୟତା ହେଲା- ବିଶ୍ୱ ସମ୍ବିଧାନର ସର୍ବଧର୍ମଧାରାର ସମନ୍ୱୟ କ୍ଷେତ୍ର, କ୍ଷେତ୍ର ଶ୍ରୀପୁରୁଷୋତ୍ତମ ସ୍ୱମହିମାରେ ମହାମହିମାବନ୍ତ ଓ ସର୍ବଶ୍ରେଷ୍ଠ ମୁକ୍ତିତୀର୍ଥ ।

୧- କପିଳ ସଂହିତା-ସମ୍ପାଦନା କେଦାରନାଥ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱର ।
୨-ବାମଦେବ ସଂହିତା-ଓଡ଼ିଆ ଅନୁବାଦ - ପ୍ରଫେସର ଜୟକୃଷ୍ଣ ମିଶ୍ର ।
୩- ନୀଳାଦ୍ରି ମହୋଦୟ-ଓଡ଼ିଆ ଅନୁବାଦ- ଡ. ବ୍ରଜକିଶୋର ସ୍ୱାଇଁ ।
୪-କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ-କବି ସମ୍ରାଟ ଉପେନ୍ଦ୍ରଭଞ୍ଜ ।

ସ୍ୱତନ୍ତ୍ର ଭୂ-ଅର୍ଜନ କାର୍ଯ୍ୟାଳୟ
ରେଙ୍ଗାଳି ଦକ୍ଷିଣ କେନାଲ ସିଷ୍ଟମ,
ଢେଙ୍କାନାଳ-୭୫୯୦୦୧



# ମହୋଦଧିର ମହାତୀର୍ଥ ସ୍ୱର୍ଗଦ୍ୱାର

ଡକ୍ଟର ସୁରେନ୍ଦ୍ର କୁମାର ମିଶ୍ର



ଜୀବନ ପ୍ରବାହରେ ଅଧାତ୍ମ୍ୟ ଆକାଂକ୍ଷା ମାନସିକ ଶାନ୍ତି ପାଇଁ ଅପରିହାର୍ଯ୍ୟ । ସେଇ ଆକାଂକ୍ଷାରୁ ଜନ୍ମନିଏ ଜିଜ୍ଞାସା । ଜିଜ୍ଞାସା ଯଦି ଚିରନ୍ତନ ସତ୍ୟର ଆଧାରରେ ପରିପୁଷ୍ଟ ହୋଇଥାଏ, ତେବେ ତାହା ଲୋକକଲ୍ୟାଣକାରୀ ହୋଇଯାଏ । ସେହିପରି ଜିଜ୍ଞାସା ଥିଲା ବିଦୂଷୀ ମୋହିନୀଙ୍କର । ପଚାରିଥିଲେ ସ୍ୱାମୀ ବସୁଙ୍କୁ । ପ୍ରଶ୍ନଟି ଥିଲା ସରଳ, କିନ୍ତୁ ତତ୍ତ୍ୱପୂର୍ଣ୍ଣ । ଭାରତରେ ଏମିତି ଏକ କ୍ଷେତ୍ରର କଥା କୁହ, ଯେଉଁଠିକି ମଣିଷ ଗଲେ କୃତାର୍ଥ ହୋଇଯାଏ । କୃତାର୍ଥକୁ ଆମେ ଧନ୍ୟ ଅର୍ଥରେ ଗ୍ରହଣ କରିପାରିବା । ଧନ୍ୟ ହୋଇଯାଏ ମଣିଷ, ମାନେ ଜୀବନ ସଫଳ ହୋଇଯାଏ ବୋଲି ବୁଝିବା ।

ବିଦୂଷୀ ମୋହିନୀ ମୁନିମାନଙ୍କ ମୁଖରୁ ଯେ ସେଇ କ୍ଷେତ୍ରର ସୂଚନା ପାଇ ନଥିଲେ ତାହା ନୁହେଁ, ପାଇଥିଲେ । ସେଥିପାଇଁ ସିଧା ସ୍ୱାମୀଙ୍କୁ କହିଲେ-ଶୁଣିଥିଲି, ଶ୍ରୀପୁରୁଷୋତ୍ତମ ବିଷ୍ଣୁକ୍ଷେତ୍ର ବୋଲି । ସେଇ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ବିଷୟ ଜାଣିବାକୁ ଚାହୁଁଛି ।

ମହାତ୍ମା ବସୁ ଏଇ ପ୍ରସଙ୍ଗରେ ଦକ୍ଷିଣ ସମୁଦ୍ରର ଉତ୍ତରରେ ଥିବା ଉତ୍କଳ ପ୍ରାନ୍ତର ସୂଚନା ଦେଇଛନ୍ତି । ସମୁଦ୍ର ସଂଲଗ୍ନ ଉତ୍ତରକୁ ଥିବା କ୍ଷେତ୍ରକୁ 'ଗୁହ୍ୟତମ' କ୍ଷେତ୍ର ବୋଲି ସ୍ପଷ୍ଟ କରିଛନ୍ତି । ଏଇ ଗୋପନ କ୍ଷେତ୍ର ହିଁ ମଣିଷକୁ କୃତାର୍ଥ କରିଥାଏ । ସେଇ ଗୋପନ କ୍ଷେତ୍ର ମଧ୍ୟ ପାପନାଶନ କ୍ଷେତ୍ର (ଶ୍ରୀ ନାରଦୀୟ ପୁରାଣ, ପୁରୁଷୋତ୍ତମ ମାହାତ୍ମ୍ୟ, ୫୨/୧୧) ଏଇ କ୍ଷେତ୍ର ଯେ କେବଳ ମୁକ୍ତି କ୍ଷେତ୍ର, ତାହା ନୁହେଁ । କ୍ଷେତ୍ରର ଅଧିପତି ଜଗତଦେବ ଶ୍ରୀପୁରୁଷୋତ୍ତମ ମଧ୍ୟ ମୁକ୍ତିଦାତା ବୋଲି ମୋହିନୀଙ୍କୁ ବୁଝାଇ ଦେଇଛନ୍ତି ।

ଆସ୍ତେ ତତ୍ର ଜଗଦ୍ଦେବୋ ମୁକ୍ତିଦଃ ପୁରୁଷୋତ୍ତମଃ ।
ଧନ୍ୟାସ୍ତେ ବିବୁଧପ୍ରଖ୍ୟା ଯେ ବସନ୍ତ୍ୟୁତ୍କଳେ ନରାଃ ॥
(ତତ୍ରୈବ ୫୨/୩୫)

ମୋହିନୀଙ୍କର କ୍ଷେତ୍ରକୁ ନେଇ ପ୍ରଶ୍ନ ପଚାରିବାରେ ପୂର୍ଣ୍ଣଚ୍ଛେଦ ନାହିଁ । ପ୍ରଶ୍ନ ପରେ ପ୍ରଶ୍ନ ପଚାରି ଚାଲିଛନ୍ତି । କ୍ଷେତ୍ରାଧିପତିଙ୍କୁ ଦର୍ଶନ କରିବ କେମିତି ? ଏଇ ପ୍ରଶ୍ନରୁ ଆମ ପ୍ରସଙ୍ଗକୁ ଆମେ ଆସୁଛେ । କାରଣ ମହାତ୍ମା ବସୁ ଦର୍ଶନବିଧି କହିଲାବେଳେ ପ୍ରଥମରୁ ତୀର୍ଥରାଜ ଶବ୍ଦ ପ୍ରୟୋଗ କରିଛନ୍ତି । ତୀର୍ଥରାଜ ଜଳରେ ସ୍ନାନ କରି ପବିତ୍ର ମାନସିକତାରେ ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ କରିବ ।

ତୀର୍ଥରାଜ ଜଳେ ସ୍ନାତ୍ୱା ପଶ୍ୟନ୍ତି ପୁରୁଷୋତ୍ତମମ୍ ।
ସ୍ୱର୍ଗେ ବସନ୍ତି ତେ ମର୍ତ୍ତ୍ୟା ନ ତୁ ତେ ରାଜସାଳୟେ ॥
(୫୨/୩୬)

ଏହି ଦର୍ଶନ ବିଧିରେ କଳ୍ପବଟ ଓ ଶ୍ରୀ ଉଗ୍ରସେନ ମଧ୍ୟ ସମ୍ପୃକ୍ତି ରହିଛନ୍ତି । କଳ୍ପବଟର ଦର୍ଶନ କରି ଦକ୍ଷିଣାଭିମୁଖ ହୋଇଗଲେ ମନୋରମ ସ୍ୱର୍ଗଦ୍ୱାର ଦର୍ଶନ କରିବ(୫୬/୩୦) । ଏଇଠି ଗୁରୁତ୍ୱପୂର୍ଣ୍ଣ ତଥ୍ୟଟିଏ ବର୍ଣ୍ଣିତ ହୋଇଛି ଯେ, ଉଗ୍ରସେନଙ୍କୁ ଦର୍ଶନ କରିବା ପରେ ସ୍ୱର୍ଗଦ୍ୱାର ସଂଲଗ୍ନ ସାଗର ଯିଏ କି ତୀର୍ଥରାଜ, ତାହାର ଜଳକୁ ଆଚମନ କରି ସୂଚୀବନ୍ତ ହେବ ।

ଏଥିରୁ ଗୋଟିଏ କଥା ସ୍ପଷ୍ଟ ହେଉଛି ଯେ, ପୂର୍ବରୁ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ଦର୍ଶନ ବ୍ୟବସ୍ଥାର ଯେଉଁ ପରମ୍ପରା ଅନୁସୃତ ହେଉଥିଲା ତାହା ଶାସ୍ତ୍ରୀୟ । ପରମ୍ପରାଟି ହେଲା ତୀର୍ଥରାଜ ଦର୍ଶନ, ତୀର୍ଥରାଜରେ ସ୍ନାନ ପରେ ମହାପ୍ରଭୁଙ୍କୁ ଦର୍ଶନ କରିବାର ପରମ୍ପରା । ଶ୍ରୀ ଉଗ୍ରସେନଙ୍କଠାରୁ ଅନୁମତି ନେଇ



ତୀର୍ଥରାଜ ଜଳର ଆଚମନରେ ମାନବ ସୂଚୀବନ୍ତ ହୁଏ । ସୂଚୀବନ୍ତ ହେବା ପରେ ମହାପ୍ରଭୁଙ୍କୁ ଦର୍ଶନ କରିବାର ଅଧିକାର ଆସେ । ଶାରୀରିକ ତଥା ମାନସିକ ଭାବରେ ପବିତ୍ର ନହେବା ପର୍ଯ୍ୟନ୍ତ ମହାପ୍ରଭୁଙ୍କ ଦର୍ଶନରେ କିଛି ମୂଲ୍ୟ ନାହିଁ । ପ୍ରଥମେ ତୀର୍ଥରାଜଙ୍କୁ ଦର୍ଶନ କରିବାର ରହସ୍ୟ ହେଉଛି ବିଶାଳତାକୁ ଦର୍ଶନ କରିବା । ଜଗତ ତତ୍ତ୍ୱର ବିଶାଳତାରେ ଆକଳନ କରିବା ।  ଜଗତ ତତ୍ତ୍ୱର ବିଶାଳତା ମାନସିକ ଭାବରେ ଦର୍ଶନ ନକଲା ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସମ୍ଭବ ନୁହେଁ । ଜଗତ ଓ ଜଗନ୍ନାଥ ଚେତନା ଏକ ପରିପୂରକ ଚେତନା । ଜଗତ ହିଁ ଜଗନ୍ନାଥମୟ ଓ ଶ୍ରୀଜଗନ୍ନାଥ ହିଁ ଜଗତମୟ ।

ମହୋଦଧି ଓ ଶ୍ରୀନାରାୟଣ ତତ୍ତ୍ୱ:-

ମହୋଦଧିରେ ସ୍ନାନ ପରେ ନିର୍ଦ୍ଦିଷ୍ଟ କରାଯାଇଛି ସେଇ ସ୍ଥାନରେ ଶ୍ରୀନାରାୟଣଙ୍କୁ ସ୍ମରଣ କରିବ । ଏହା ବ୍ରହ୍ମପୁରାଣ ଓ ସ୍କନ୍ଦପୁରାଣରେ ମଧ ରହିଛି । ମୁଖ୍ୟ ଭାବରେ ଏହି ତିନୋଟି ପୁରାଣରେ ସମଭାବରେ ବର୍ଣ୍ଣନା ହୋଇଛି ମହୋଦଧି ତୀରରେ ଶ୍ରୀନାରାୟଣଙ୍କୁ ସ୍ମରଣ କରିବା କଥା । ତାର କାରଣ ମଧ ସମାନ । ଶ୍ରୀ ମହାବିଷ୍ଣୁଙ୍କର ମହୋଦଧି ଥିଲା ଆଳୟ । ପୌରାଣିକ ପରମ୍ପରାରେ ଶ୍ରୀପୁରୁଷୋତ୍ତମଙ୍କୁ ମହାବିଷ୍ଣୁରୂପେ ଗ୍ରହଣ କରାଯାଇଅଛି ।

ଅସ୍ମିନ୍ କ୍ଷେତ୍ରେ ମହାବିଷ୍ଣୁର୍ନ ତ୍ୟଜେତ୍ କ୍ୱାପି ନ ବ୍ରଜେତ୍ ।
ତସ୍ମାତ୍ ସର୍ବପ୍ରଯତ୍ନେନ ଦେହମାତ୍ରଂ ପରିତ୍ୟଜେତ୍ ॥

ବ୍ରହ୍ମପୁରାଣର ଏହି ମହାକାବ୍ୟ ମୁକ୍ତିଚିନ୍ତାମଣି(ପୃ-୩) ଗ୍ରନ୍ଥରେ ଉଦ୍ଧାର କରାଯାଇଛି । ତେଣୁ ମହୋଦଧି ହେଉଛି ମହାବିଷ୍ଣୁ ଅର୍ଥାତ୍, ଶ୍ରୀପୁରୁଷୋତ୍ତମଙ୍କର ଆଳୟ । ସେହିକଥା ପାଞ୍ଚରାତ୍ର ଦର୍ଶନର ଲକ୍ଷ୍ମୀତନ୍ତ୍ରରେ କୁହାଯାଇଛି-

ପ୍ରଧାନଂ ସଲିଳୀକୃତ୍ୟ ତସ୍ୱେତେ ପୁରୁଷୋତ୍ତମଃ । (୬/୧୧)

ଏଠାରେ ନୀର ସହିତ ନରର ଦାର୍ଶନିକ ସମନ୍ୱୟ କଥା କୁହାଯାଇଛି । ତାହା ହିଁ ବିକଶିତ ହୋଇ ଶ୍ରୀନାରାୟଣ ତତ୍ତ୍ୱରେ ସମାହିତ ହୋଇଛି । ନୀର-ନର ଓ ନାରାୟଣ ତତ୍ତ୍ୱର ଦାର୍ଶନିକ ରହସ୍ୟ ଜୀବନ୍ତ ହୋଇରହିଛି ଶ୍ରୀଜଗନ୍ନାଥ ଚେତନାରେ । ମହାପ୍ରଭୁଙ୍କ ପ୍ରତିନିଧି ଭାବେ ଶ୍ରୀ ନାରାୟଣ ଉଆଁସ ତିଥିରେ ସ୍ୱର୍ଗଦ୍ୱାର ସଂଲଗ୍ନ ମହୋଦଧିକୁ ଯାଉଛନ୍ତି । ଇୟେ ସେଇ ପାଞ୍ଚରାତ୍ରାଗମ ଦର୍ଶନର ଲୌକିକ ବିଧି । ପାଞ୍ଚରାତ୍ର ଆଗମ କଥା ଏଇଥିପାଇଁ କୁହାଯାଉଛି ଯେ, ଶ୍ରୀନାରଦୀୟ ପୁରାଣରେ ପାଞ୍ଚରାତ୍ର ବିଧାନ ଅନୁସାରେ ଶ୍ରୀପୁରୁଷୋତ୍ତମଙ୍କୁ ଉପାସନା କରିବ । ''ପାଞ୍ଚରାତ୍ରବିଧାନେନ ସମ୍ପୂଜ୍ୟ ପୁରୁଷୋତ୍ତମମ୍ ।'' (ଅଧ୍ୟାୟ-୫୩) । ତେଣୁ ପାଞ୍ଚରାତ୍ର ବିଧିରେ ପ୍ରଚଳିତ ଥିବା ଉପସନାର ଦାର୍ଶନିକ ଅବବୋଧ ରହିବା ସ୍ୱାଭାବିକ । ସେହି ପ୍ରଚ୍ଛନ୍ନ ରହିଥିବା ଦାର୍ଶନିକ ରହସ୍ୟର ଲୌକିକ ବିଧି ହେଉଛି ଶ୍ରୀଜଗନ୍ନାଥଙ୍କର ଉଆଁସ ତିଥିରେ ମହୋଦଧିକୁ ଯାତ୍ରା । ତାହା ପୁଣି ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କର ପ୍ରତିନିଧି ଭାବରେ । ତେବେ ସେ ରହସ୍ୟକୁ ଭେଦ କରିବାକୁ ହେଲେ ନାରାୟଣ ଶବ୍ଦକୁ ବୁଝିବାକୁ ହେବ ।

ପାଞ୍ଚରାତ୍ରରେ ''ନାରାୟଣ'' ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥକୁ ପ୍ରକାଶ କରିବା ପାଇଁ ବହୁ ତର୍କ ପ୍ରସ୍ତୁତ ହୋଇସାରିଛି । ପୁରୁଷୋତ୍ତମ ତତ୍ତ୍ୱ ସହିତ ନାରାୟଣଙ୍କ ତତ୍ତ୍ୱକୁ ସମ୍ପର୍କିତ କରିବା ପୂର୍ବରୁ ଆମେ ପ୍ରଥମେ ନାରାୟଣ ଶବ୍ଦର ବାସ୍ତବ ରହସ୍ୟ ଜାଣିବା ।

ନାରାୟଣ ଶବ୍ଦର ବ୍ୟୁତ୍ପତ୍ତି କେବେ ନର ସହିତ ତ କେବେ ଦ୍ରାବିଡମାନଙ୍କର ମୂଳ ଦେବତା 'ନାର' ସହିତ ସଂଯୋଜିତ ହୋଇଛି । ଏହା ଏକ ବିକଶିତ ପ୍ରକ୍ରିୟା । ତେଣୁ ସୂକ୍ଷ୍ମ ଭାବରେ ଏହି ପ୍ରକ୍ରିୟାକୁ ଲକ୍ଷ୍ୟ କରିବା କଥା । କାରଣ ଦ୍ରାବିଡମାନଙ୍କର ମୂଳଦେବତା ନାରଙ୍କ ସହିତ ନାରାୟଣ ଶବ୍ଦ ସଂଯୋଜିତ ହୋଇ ନାରୀ ଶବ୍ଦରେ ଲକ୍ଷ୍ୟାର୍ଥ ହୋଇଛି ।

ଏଠାରେ ପୌରାଣିକ ବ୍ୟୁତ୍ପତ୍ତି ମଧ ପ୍ରଣିଧାନଯୋଗ୍ୟ । ମାର୍କଣ୍ଡେୟପୁରାଣ, ବାୟୁ ପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ ଓ ଶ୍ରୀମଦ ଭାଗବତରେ ନାରାୟଣ ଶବ୍ଦର ବାସ୍ତବ ଅର୍ଥ ପରିପ୍ରକାଶ ହୋଇଛି । ମାର୍କଣ୍ଡେୟ ପୁରାଣ ମତରେ (୪/୪୩)-

ଆପୋ ନାରା ଇତି ପ୍ରୋକ୍ତା ମୁନିଭିସ୍ତତ୍ତ୍ୱଦର୍ଶିଭିଃ ।
ଅୟନଂ ତସ୍ୟ ତାଃ ପୂର୍ବ ତେନ ନାରାୟଣ ସ୍ମୃତଃ ॥

ଏହା ବାୟୁପୁରାଣ(୧/୨୦୪, ୫/୩୮, ୨୪/୮, ୩୫)ରେ ସ୍ପଷ୍ଟ- 'ନାରାୟଣାମୟନଂ ଯସ୍ମାତ୍ତେନ ନାରାୟଣ ସ୍ମୃତଃ ।'ଅର୍ଥାତ୍ ନରମାନଙ୍କର (ଏଠାରେ ଜୀବସମୂହ) ସୃଷ୍ଟି-ସ୍ଥିତି-ପ୍ରଳୟ କାର୍ଯ୍ୟର ଅୟନ ଅର୍ଥାତ୍ ଚଳନ ଯାହାଙ୍କ ଦ୍ୱାରା ହୁଏ ସେ ନାରାୟଣ ।

ମହାଭାରତର ଉଦ୍ୟୋଗ ପର୍ବ ଏବଂ ନାରାୟଣୀୟ ଉପାଖ୍ୟାନରେ ପରମାତ୍ମାଙ୍କୁ ସମସ୍ତ 'ନର'ଙ୍କର ଆଶ୍ରୟସ୍ଥଳ

କୁହାଯାଇଛି । ତେଣୁ ସେ 'ନାରାୟଣ' ନାମରେ କଥିତ । ଏହାକୁ ଆଧାର କରି ଡଃ ଆର.ଜି.ଭଣ୍ଡାରକର ଓ ସୁବୀର ଜୟସୱାଲଙ୍କ ପରି ଭାରତୀୟ ତତ୍ତ୍ୱବିଦ୍‌ମାନେ ମନେ କରନ୍ତି ନାରାୟଣ ଶବ୍ଦ ମନୁଷ୍ୟର ସମଷ୍ଟିଗତ ସତ୍ତା ବା ଅସ୍ତିତ୍ୱର ସୂଚକ ଏବଂ ନାର ବ୍ୟଷ୍ଟିଗତ ସତ୍ତା ବା ଅସ୍ତିତ୍ୱବୋଧକ । ଏହି ପ୍ରସଙ୍ଗରେ ସେମାନେ 'ଶତପଥ ବ୍ରାହ୍ମଣ' ଗ୍ରନ୍ଥରେ ବର୍ଣ୍ଣିତ 'ପଞ୍ଚରାତ୍ରସତ୍ର'ର ପୁରୁଷମେଧକୁ 'ନରବଳି' ବୋଲି ମନେ କରାଯାଉଥିବା କଥା ସ୍ମରଣ କରାଇ ଦେଇଛନ୍ତି ।

ପାଞ୍ଚରାତ୍ର ଗ୍ରନ୍ଥମାନଙ୍କରେ ନାରାୟଣଙ୍କର ସବିଶେଷ ବ୍ୟୁତ୍ପତ୍ତି ପୌରାଣିକ ପରମ୍ପରା ଅନୁଯାୟୀ ପ୍ରାୟ ସମାନ । 'ଅହିର୍ବୁଧ୍ନ୍ୟ ସଂହିତା'ରେ ନାରାୟଣଙ୍କର ବ୍ୟୁତ୍ପତ୍ତି ଲକ୍ଷ୍ୟ କଲେ ଜଣାପଡୁଛି ନାରାୟଣ ତତ୍ତ୍ୱ ହିଁ ପୁରୁଷୋତ୍ତମ ତତ୍ତ୍ୱର ସମୀପବର୍ତ୍ତୀ ।

'ନର ସମ୍ବନ୍ଧିନୋ ନାରା ନରଃ ସ ପୁରୁଷୋତ୍ତମଃ ।
ନୟତ୍ୟଖିଳ ବିଜ୍ଞାନଂ ନାଶୟତ୍ୟଖିଳଂ ତମଃ ॥
ନରିଷ୍ୟତି ଚ ସର୍ବତ୍ର ନରସ୍ତସ୍ମାତ୍ ସନାତନଃ ।
ନର ସମ୍ବନ୍ଧିନଃ ସର୍ବେ ଚେତନାଚେତନାତ୍ମକାଃ ॥'

ବିଷ୍ଣୁ ସହସ୍ରନାମରେ ଆସୁଥିବା ନାରାୟଣ ଶବ୍ଦ ଉପରେ ଆଦିଶଙ୍କର ଯେଉଁ ଟୀକା କରିଛନ୍ତି, ତାହା ହେଲା- ଅୟତୀତ ଅୟନଃ । ଏହା ଯେଉଁ ଅର୍ଥକୁ ବିକାଶ କରୁଛି ତାହା ଆମର ଧ୍ୟେୟ । ପ୍ରଥମ ଚରଣରେ ସଞ୍ଚରଣ । ଦ୍ୱିତୀୟରେ ମାର୍ଗ ଓ ତାହା ଅନ୍ତତଃ ଗନ୍ତବ୍ୟସ୍ଥାନକୁ ବ୍ୟକ୍ତ କରୁଛି । ସେଥିପାଇଁ ଆତ୍ମା ଶରୀରରୁ ବାହାରିଯିବା ପରେ କୁହାଯାଏ- ଆହାଃ... ଅମୁକ ନାରାୟଣ ପାଇଗଲେ ।

ତେଣୁ ଶ୍ରୀନାରଦୀୟ ପୁରାଣରେ ଜ୍ଞାନ, କ୍ରିୟା, ଧର୍ମ, ତପ, ଦାନ, ବ୍ରତ ସବୁକିଛି ନାରାୟଣପରକ ବୋଲି ଘୋଷଣା କରାଯାଇଛି । ବ୍ରହ୍ମପୁରାଣରେ ମଧ ଏହି ତତ୍ତ୍ୱ ଅବତାରଣା ହୋଇଛି । ଏଥିରେ ସ୍ପଷ୍ଟ କୁହାଯାଇଛି ଯେ, ବିଷ୍ଣୁଙ୍କର ଆୟତନ ଯେଉଁ ଜଳ ସେହି ହେଉଛନ୍ତି ଏହି ଅମ୍ଭସାଂ ପତି । ନଦୀମାନଙ୍କର ପତି ମହୋଦଧି । ତାରି ନୀର ମାଧମରେ ଶ୍ରୀନାରାୟଣଙ୍କ ନିତ୍ୟ ସ୍ମରଣ କରିବ । ତାହା ହିଁ ଅନୁସୃତ ହେଉଛି ଅମାବାସ୍ୟା ତିଥିରେ । ନିଜେ ଶ୍ରୀ ନାରାୟଣ ମହୋଦଧିଙ୍କର ଜଳକୁ ନିଜ ମୁଣ୍ଡରେ ଲଗାଉଛନ୍ତି । ଆଚମନର କ୍ରିୟା ଅବ୍ୟାହତ ରହିଛି । ସରିତାପତି ମହୋଦଧି ସମସ୍ତ ପ୍ରାଣୀମାନଙ୍କର ପ୍ରାଣ ଏବଂ ଉତ୍ପାଦକ ।

ପ୍ରାଣସ୍ତ୍ୱଂ ସର୍ବଭୂତାନାଂ ଯୋନିଶ୍ଚ ସରିତାଂ ପତେ ।

ତୀର୍ଥରାଜ ନମସ୍ତେଽସ୍ତୁ ତ୍ରାହି ମାମଚ୍ୟୁତପ୍ରିୟ ॥ (ଆଦିବ୍ରାହ୍ମେ ମହାପୁରାଣେ ୬୨/୨)

ମହାତୀର୍ଥ ସ୍ୱର୍ଗଦ୍ୱାର -

ଉପର ଶ୍ଳୋକର 'ଯୋନି' ଶବ୍ଦ ସୃଷ୍ଟିବାଚକ । ଲାକ୍ଷଣିକ ଅଭିବ୍ୟକ୍ତି ଜନ୍ମଦ୍ୱାରର । ଅର୍ଥାତ୍ ସୃଷ୍ଟିଦ୍ୱାରର । ସେଇ ଜନ୍ମଦ୍ୱାର ହିଁ ସ୍ୱର୍ଗଦ୍ୱାର । ସ୍ୱର୍ଗଦ୍ୱାର ଆଉଗୋଟିଏ ନୂତନ ଜନ୍ମରେ ପ୍ରବେଶ କରିବାର ଦ୍ୱାର ଯାହା ତୀର୍ଥରାଜ ମହୋଦଧି ତୀରରେ ଅବସ୍ଥିତ । ତେଣୁ ତନ୍ତ୍ରଦର୍ଶନରେ, ଯୋଗଦର୍ଶନରେ ସ୍ୱର୍ଗଦ୍ୱାର ହିଁ ଜନ୍ମଦ୍ୱାର ଭାବରେ ଗୃହୀତ ହୋଇଛି । ପୁରାଣବର୍ଣ୍ଣିତ ତତ୍ତ୍ୱ, ତନ୍ତ୍ର ଓ ଯୋଗ ଦର୍ଶନରେ ସମାନ ଭାବେ ଗୃହୀତ । ତନ୍ତ୍ରରେ ଜନ୍ମଦ୍ୱାର ମହାତୀର୍ଥ ରୂପରେ ଯେପରି ଗୃହୀତ, ଯୋଗଦର୍ଶନର ପିଣ୍ଡ/ବ୍ରହ୍ମାଣ୍ଡ ତତ୍ତ୍ୱରେ ଜନ୍ମଦ୍ୱାର ରୂପେ ଗୃହୀତ । ପିଣ୍ଡତତ୍ତ୍ୱର ମଣିମୟ ମଣ୍ଡପର ନୀଚ ଭାଗରେ ଜନ୍ମଦ୍ୱାର ଅବସ୍ଥିତ । ମଣିମୟ ମଣ୍ଡପ ବା ମଣିମୟ ଚକ୍ର ହେଉଛି ଅଗ୍ନିଚକ୍ର । ଉର୍ଦ୍ଧ୍ୱଗତିରେ ଏଠାରେ ସତ୍ତା ବିଲୋପ ହୋଇଯିବା ସମ୍ଭାବନା । ତେଣୁ ମହାତୀର୍ଥ ହିଁ ଏକମାତ୍ର ରାସ୍ତା ।

ଏହି ମଣିମୟ ରହସ୍ୟକୁ ନେଇ ରହିଥିବା ପୌରାଣିକ ଆଖ୍ୟାନକୁ ବିଦୂଷୀ ମୋହିନୀଙ୍କ ଆଗରେ ମହାତ୍ମା ବସୁ ପ୍ରକାଶ କରିଛନ୍ତି । ସୃଷ୍ଟି କ୍ରମରେ ସାତ ସମୁଦ୍ର ସୃଷ୍ଟି ହେଲେ । ଏମାନେ ଦିବ୍ୟଦେହୀ ଏବଂ ରାଧିକା ଗର୍ଭସମ୍ଭୂତା । ଥରେ ବୃନ୍ଦାବନରେ ଗୋପ-ଗୋପୀ-ଗବାଂପତିଙ୍କ ଗହଣରେ ରାଧିକା କାନ୍ତଙ୍କ ସହିତ ଥିଲେ । ରାସମଣ୍ଡଳ ମଧସ୍ଥଳରେ ସୁଦୀପ୍ତ ମଣିମଣ୍ଡପରେ ସମ୍ମିଶ୍ର ନିତ୍ୟରାସରେ ଲିପ୍ତ ଥିଲେ । ସେହି ଦିବ୍ୟଦେହୀ ବାଳକସ୍ୱରୂପ ସାତଜଣ ସ୍ତନ୍ୟପାନ ପାଇଁ ବ୍ୟଗ୍ର ହେଲେ । ସେମାନେ ମାକୁ ଖୋଜି ଖୋଜି କ୍ଷୁଧାର୍ତ୍ତ ଅବସ୍ଥାରେ ମଣିମଣ୍ଡପ ସ୍ଥାନରେ ପହଞ୍ଚିଲେ । ତାଙ୍କୁ ନଯିବା ପାଇଁ ମଣିମଣ୍ଡପକୁ ଘେରି ରହିଥିବା ବଲ୍ଲବୀଗଣ ବାରଣ କଲେ ମଧ ସ୍ତନ୍ୟପାନ ପାଇଁ ବ୍ୟଗ୍ର ସେହି ସାତ ବାଳକ କ୍ରୋଧିତ ହୋଇପଡିଲେ । ସେମାନଙ୍କୁ ଉପେକ୍ଷା କରି ସାଜତଣ ଯାକ ମଣିମଣ୍ଡପ ପାଖକୁ ଗଲେ । ବଡ ପାଟିରେ ମା କେଉଁଠି ଅଛି ବୋଲି ପଚାରିଲେ । ତେବେ ବି ମା' ସାନ୍ତ୍ୱନା ଦେବା ପାଇଁ ତାଙ୍କୁ ଡାକିଲେ ନାହିଁ । ସେତିକିବେଳେ ସଭା ସାନଟି ଜବରଦସ୍ତ ରତିସ୍ଥଳକୁ ଚାଲିଗଲା । ନିଜର ଦିବ୍ୟଦେହୀ ସାନ ପୁଅକୁ ଦେଖି ରାଧିକା ଆଶ୍ଚର୍ଯ୍ୟ ହେଲେ ଏବଂ ତାଙ୍କର ନିତ୍ୟ ମିଳନରେ ବାଧା ଉପୁଜିଲା ।



ସେଇଠି ରାଧା କ୍ରୋଧାନ୍ୱିତ ହୋଇ ଅଭିଶାପ ଦେଲେ- ଚିରଦିନ ପାଇଁ ମର୍ତ୍ତ୍ୟଲୋକକୁ ଯାଅ । ଯେହେତୁ ମୋର ନିତ୍ୟଲୀଳା ଭଙ୍ଗ କରିବାକୁ ଚେଷ୍ଟା କଲ । ସେଠାରେ ତୁମେମାନେ ଯାଇ ଏକାକୀ ରହିବ । ଏହାଶୁଣି ମା'ଠାରୁ ବିଯୁକ୍ତ ହେବା ଭୟରେ ସମସ୍ତେ ବଡ ପାଟିରେ କାନ୍ଦିଲେ । ଭଗବାନ୍ ସେମାନଙ୍କର କାନ୍ଦ ଦେଖି ଦୁଃଖ ସମ୍ଭାଳି ନପାରି କହିଲେ- ତୁମେମାନେ ଭୟ କର ନାହିଁ, ତୁମମାନଙ୍କ ପାଖରେ ମୁଁ ଥିଲି ଓ ରହିଛି । ତୁମେମାନେ ତରଳ ଅବସ୍ଥାରେ ପୃଥକ୍ ରୂପରେ ସର୍ବଦା ବିଦ୍ୟମାନ ରହିବ । ଯେହେତୁ କନିଷ୍ଠ ଦିବ୍ୟଦେହୀ ଅଭ୍ୟନ୍ତରରେ ପ୍ରବେଶ କରିଛି ସେ ଲବଣଯୁକ୍ତ ହୋଇରହିବ ।

ଶ୍ରୀଜଗନ୍ନାଥ ଏହିପରି କହି ସେମାନଙ୍କୁ ବିଦାୟ ଦେଲେ । ପାଖରେ ରହିବେ ବୋଲି ଅଭୟ ଦେଲେ । ସାନ ଦିବ୍ୟଦେହୀ ନିତ୍ୟଲୀଳା କ୍ଷେତ୍ରରେ ପ୍ରବେଶ କରିଥିବାରୁ ଲବଣ ସମୁଦ୍ର ହୋଇରହିଗଲା । ଅନ୍ୟ ଛଅଜଣ ତରଳ ରୂପରେ ମଧୁର ହୋଇ ରହିଗଲେ । ମହାପ୍ରଭୁ ନିଜର ବଚନରକ୍ଷା କରିଛନ୍ତି । ନିତ୍ୟଲୀଳାରେ ବାଧା ଉପୁଜେଇ ଥିବା ସଭାସାନ ପାଖରେ ମହାପ୍ରଭୁ ରହିଛନ୍ତି । ସେ ହେଉଛନ୍ତି ମହୋଦଧି । ନିଜର ପ୍ରତିନିଧି ଶ୍ରୀନାରାୟଣଙ୍କୁ ପ୍ରତି ମାସରେ ଥରେ ତାଙ୍କ ପାଖକୁ ପଠାଉଛନ୍ତି ।

ମଣିମୟ ଚକ୍ରରେ ଏହି ସପ୍ତତତ୍ତ୍ୱର ସତ୍ତା ହଜିଯାଇଥାନ୍ତା । ତାହାକୁ ନିମ୍ନଗତି କରାଇଲେ ନିତ୍ୟ କୁଣ୍ଡଳିନୀ । ନିମ୍ନ ଗତିରେ ମହାତୀର୍ଥ ଅବସ୍ଥିତ ଅର୍ଥାତ୍ ଜନ୍ମଦ୍ୱାର ବା ସ୍ୱର୍ଗଦ୍ୱାର ଅବସ୍ଥିତ । ରୂପାନ୍ତର ନିଶ୍ଚିତ । ରୂପାନ୍ତର ହେଲା ସାତ ଦିବ୍ୟତତ୍ତ୍ୱର । ସ୍ଥିତି ବଦଳିଗଲା । ତରଳରୂପ ଧାରଣ କଲେ ମର୍ତ୍ତ୍ୟରେ । ଗୋଲକରୁ ବିଚ୍ୟୁତ ହେବାକୁ ପଡିଲା । ଇୟେ ଏକ ଅଭିଶାପର କାହାଣୀ । ନିଗୂଢ ଯୋଗତତ୍ତ୍ୱର ଲୌକିକ ପରିପ୍ରକାଶ । ଆଶୀର୍ବାଦର କାହାଣୀରେ ଦିବ୍ୟତତ୍ତ୍ୱଙ୍କର ଦିବ୍ୟ ସତ୍ତାକୁ ଗମନ ହୋଇଥାନ୍ତା, ତାହା ବି ସେହି ଜନ୍ମଦ୍ୱାର ବା ସ୍ୱର୍ଗଦ୍ୱାର ଦେଇ । କାରଣ ତାହା ହିଁ ସକଳ ସୃଷ୍ଟିର ଆଦ୍ୟ ଓଁକାର ।

ମହୋଦଧିର ପ୍ରାଚୀନତା ଓ ମହାପ୍ରଶ୍ନ-

ଏହାପରେ କ୍ଷେତ୍ରର ପ୍ରାଚୀନତାର ପ୍ରସଙ୍ଗ ଆସିଛି । କ୍ଷେତ୍ର, କ୍ଷେତ୍ରାଧିପତି ଓ ଅଧିପତିଙ୍କର ଦର୍ଶନ ବିଧିରେ ତୀର୍ଥରାଜ ମହୋଦଧି କଥା ସିନା ବସୁ କହିଲେ । ମୋହିନୀଙ୍କର ପ୍ରାଚୀନତା ସମ୍ବନ୍ଧରେ ଉତ୍ସୁକତା ବଢିବାରେ ଲାଗିଲା । ପଚାରି ଦେଲେ ମଧ୍ୟ । ସନ୍ଥ ବସୁ ଏଇଠି ମହାପ୍ରଶ୍ନର ମହନୀୟ ପ୍ରସଙ୍ଗର ଅବତାରଣା କରିଛନ୍ତି ।

ସୁମେରୁ ପର୍ବତର କାଞ୍ଚନ ଶୃଙ୍ଗରେ ଥରେ ଶ୍ରୀଦେବୀ ପଚାରିଲେ ଜଗତସ୍ରଷ୍ଟା ଶ୍ରୀଜଗନ୍ନାଥଙ୍କୁ, ତାହା ଥିଲା ଏକ ମହାପ୍ରଶ୍ନ । ମହାପ୍ରଶ୍ନଟି ଥିଲା ମର୍ତ୍ତ୍ୟମଣ୍ଡଳର କେଉଁ ସ୍ଥାନଟି ଶ୍ରେଷ୍ଠସ୍ଥାନ ?(ନା. ପୁ. ୫୨/୬୦) । ସେଇଠି ଶ୍ରୀଜଗନ୍ନାଥ ଶ୍ରୀଦେବୀଙ୍କର ମହାପ୍ରଶ୍ନର ଉତ୍ତର ଖୁବ୍ ସରଳରେ ପ୍ରକାଶ କରିଛନ୍ତି । ସେହି କ୍ଷେତ୍ରଟି ହେଉଛି ଶ୍ରୀପୁରୁଷୋତ୍ତମ କ୍ଷେତ୍ର । ଏହି କ୍ଷେତ୍ରକୁ ଚିହ୍ନିତ କରିବା ପାଇଁ ସେ ଦକ୍ଷିଣ ଉପାଧି ଶବ୍ଦ ପ୍ରୟୋଗ କରିଛନ୍ତି (ତତ୍ରୈବ ୫୨/୬୬) । ସେହି ବର୍ଣ୍ଣନାରୁ ଜଣାଯାଉଛି ଦକ୍ଷିଣଉଦଧି ହିଁ ମହୋଦଧି । ମହୋଦଧିରେ ସ୍ନାନ, ତାପରେ ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ । ଏହି ମହୋଦଧି ହେଉଛନ୍ତି ତୀର୍ଥରାଜ ।

'ତୀର୍ଥରାଜ ଜଳେ ସ୍ନାତ୍ୱା ପଶ୍ୟନ୍ତି ପୁରୁଷୋତ୍ତମମ୍ ।
ସ୍ୱର୍ଗେ ବସନ୍ତି ତେ ମର୍ତ୍ତ୍ୟା ନ ତୁ ତେ ରାଜସାଳୟେ ।।'
(ତତ୍ରୈବ ୫୨/୩୬)

ତୀର୍ଥରାଜର ସାର୍ଥକତା ମହାତ୍ମା ବସୁଙ୍କ ମୁଖରେ ହିଁ ସମାଧାନ ହୋଇଛି । ମହୋଦଧିରେ ସ୍ନାନ, ଦାନ ଓ ପିଣ୍ଡଦାନ କରିବା ବିଧି ପ୍ରକାଶ କରିସାରି, କହୁଛନ୍ତି-ପୁଷ୍କର ତୀର୍ଥ ପ୍ରଭୃତିରେ ସ୍ନାନ କଲେ ସେଇ ତୀର୍ଥର ଫଳ ମିଳେ । ମାତ୍ର ତୀର୍ଥରାଜ ସମୁଦ୍ରରେ ସ୍ନାନ କଲେ ସମସ୍ତ ତୀର୍ଥର ଫଳ ମିଳେ, ତେଣୁ ସେ ତୀର୍ଥରାଜ ।

'ପୁଷ୍କରାଦୀନି ତୀର୍ଥାନି ପ୍ରୟଚ୍ଛନ୍ତି ସ୍ୱକଂ ଫଳମ୍ ।
ତୀର୍ଥରାଜଃ ସମୁଦ୍ରସ୍ତୁ ସର୍ବତୀର୍ଥଫଳପ୍ରଦଃ ।।'
(ତତ୍ରୈବ ୫୮/୧୭) ।

ଦ୍ୱିତୀୟ ବିନ୍ଦୁରେ କହୁଛନ୍ତି- ତୀର୍ଥରାଜ କାହିଁକି ନା ଭୂତଳରେ ଥିବା ସମସ୍ତ ତୀର୍ଥ ନଦୀଗୁଡିକ ସାଗରରେ ହିଁ ମିଶନ୍ତି । ସେଥିପାଇଁ ସେ ଶ୍ରେଷ୍ଠ (ତତ୍ରୈବ ୫୮/୧୮) । ସେ ସମସ୍ତ ତୀର୍ଥମାନଙ୍କ ମଧ୍ୟରେ ରାଜା ହୋଇଛନ୍ତି ସରିତାଂ ପତି, ସାଗର । ଅତଏବ ସମସ୍ତ ତୀର୍ଥମାନଙ୍କ ମଧ୍ୟରେ ଏହା ଶ୍ରେଷ୍ଠ ତଥା ସର୍ବକାମ ଫଳପ୍ରଦ ।

'ରାଜା ସମସ୍ତ ତୀର୍ଥାନାଂ ସାଗରଃ ସରିତାଂ ପତିଃ ।

ତସ୍ମାତ୍ ସମସ୍ତତୀର୍ଥେଭ୍ୟଃ ଶ୍ରେଷ୍ଠୋଽସୌ ସର୍ବକାମଦଃ ।।'
(୫୮/୧୯)




ତୃତୀୟ ବିନ୍ଦୁରେ କହୁଛନ୍ତି-ସୂର୍ଯ୍ୟ ଉଦୟ ହେଲେ ଯେପରି ଅନ୍ଧକାର ନାଶ କରେ ସେହିପରି କୋଟି ସଂଖ୍ୟାରେ ତୀର୍ଥ ଥିଲେ ମଧ୍ୟ ମହୋଦଧି ସମସ୍ତ ପାପ ନାଶ କରୁଥିବାରୁ ସେ ତୀର୍ଥରାଜ । ତେଣୁ ଏଠାରେ ସ୍ନାନ, ଦାନ, ହୋମ, ଜପ ଓ ଦେବତାଙ୍କ ଅର୍ଚ୍ଚନ ଯାହାକିଛି ବି କଲେ ତାହା ଅକ୍ଷୟ ବୋଲି ପ୍ରସିଦ୍ଧି ଅଛି । ଏଠାରେ ଚତୁର୍ଥ ବିନ୍ଦୁ ଭାବରେ ବାମଦେବ ସଂହିତା ଗ୍ରନ୍ଥର ମତକୁ ଉଦ୍ଧାର କରାଯାଇପାରେ ।

'ଶୃଣୁ ବୈଷ୍ଣବକ୍ଷେତ୍ରସ୍ୟ ଚାୟତଂ ପଞ୍ଚକ୍ରୋଶକମ୍ ।
ଦ୍ୱିକ୍ରୋଶଂ ସାଗରେଷ୍ୱପି ସ୍ୟାତ୍ ତ୍ରିକୋଶଂ ପୃଥିବୀ ତଳେ ॥'
(ବାମ.ସଂ.୨/୬) ।

ଦୁଇକ୍ରୋଶ- ଚାରି ମାଇଲ ଜଳରେ ନିମଗ୍ନ, ଅବଶିଷ୍ଟ ତିନି କୋଶ ଭୂଭାଗରେ । ସାଗରରେ କ୍ଷେତ୍ରର ସୀମା ଚାରି ମାଇଲ ବ୍ୟାପୀ ରହିଥିବାରୁ ସାଗର ହୋଇଛି ତୀର୍ଥରାଜ ମହୋଦଧି ।

ଏଇଠି ଶ୍ରୀଦେବୀଙ୍କର ଉତ୍ସୁକତା ବଢ଼ିଯାଇଛି । ମହାପ୍ରଭୁଙ୍କ ମୁଖରୁ ତୀର୍ଥରାଜର ଗୁରୁତ୍ୱ ଜାଣିବା ପରେ ପଚାରିବାକୁ ଭୁଲିଯାଇ ନାହାନ୍ତି ଯେ,-

୧- ତୀର୍ଥରାଜଙ୍କୁ ଦର୍ଶନ କରିବ କେମିତି ?
୨- ସେଠାରେ ସ୍ନାନ କରିବାକୁ ହେଲେ ବିଧିବ୍ୟବସ୍ଥା ତ ଥିବ ?
୩- ତୀର୍ଥରାଜଙ୍କ ଜଳ ସ୍ପର୍ଶରେ ପବିତ୍ର ହେବା ପରେ କଣ କରିବା ଉଚିତ୍ତ
୪- ସ୍ୱର୍ଗଦ୍ୱାର କେଉଁଠି ?

ପ୍ରଥମ ପ୍ରଶ୍ନର ଉତ୍ତର ଖୁବ୍ ସ୍ପଷ୍ଟ । ମହାପ୍ରଭୁ କହୁଛନ୍ତି- ଶ୍ରୀଉଗ୍ରସେନଙ୍କୁ ଦର୍ଶନ କରି ସ୍ୱର୍ଗଦ୍ୱାରରେ ପହଞ୍ଚି ସେଠାରେ ତୀର୍ଥରାଜଙ୍କ ନିକଟକୁ ଯାଇ ଦର୍ଶନ କରିବ । ଦର୍ଶନ ପରେ ଆଚମନ କରି ଶ୍ରୀନାରାୟଣଙ୍କୁ ଧ୍ୟାନ କରିବ । ଏଠାରେ ନାରାୟଣଙ୍କ ଅଷ୍ଟାକ୍ଷର ମନ୍ତ୍ରର ପ୍ରୟୋଗ କଥା କୁହାଯାଇଛି । ବ୍ରହ୍ମପୁରାଣର ଦର୍ଶନବିଧି ଏବଂ ନାରଦପୁରାଣର ଦର୍ଶନବିଧି ମଧ୍ୟରେ ସେପରି ପ୍ରଭେଦ କିଛି ନାହିଁ । ବ୍ରହ୍ମପୁରାଣର ଶ୍ରୀନାରାୟଣଙ୍କ କବଚ ପରି ଏଠାରେ କବଚ ପ୍ରୟୋଗ କରିବା ବିଧି ରହିଛି ।

ଦ୍ୱିତୀୟ ଓ ତୃତୀୟ ପ୍ରଶ୍ନର ଉତ୍ତରରେ କହୁଛନ୍ତି କବଚ ପାଠ ପରେ ତୀର୍ଥରାଜରେ ସ୍ନାନ କରିବ । ସ୍ନାନ ପରେ ଅଘମର୍ଷଣସୂକ୍ତ ପାଠ କରିବ । ତା'ପରେ କୂଳରେ ସନ୍ଧ୍ୟା ଉପାସନା କରି ୧୦୮ ଥର ଗାୟତ୍ରୀ ମନ୍ତ୍ର ଜପ କରିବ । ସୂର୍ଯ୍ୟମନ୍ତ୍ର ଜପ କରି ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କରି ନମସ୍କାର କରିବ । କୂଳରେ ପୂର୍ବଦିଗକୁ ଚାହିଁ ଆସନରେ ବସି ସ୍ୱଧ୍ୟାୟ କରବା, ସ୍ୱାଧ୍ୟାୟ ଜଳରେ ଦେବତା, ଋଷି, ପିତୃ ଓ ଭୂତଗଣଙ୍କୁ ତର୍ପଣ କରିବ । ଏହାପରେ ବାଲିରେ ଅଷ୍ଟଦଳ ପଦ୍ମ ଲେଖି ନାରାୟଣଙ୍କୁ ଧ୍ୟାନ କରିବ ।

ଚତୁର୍ଥ ପ୍ରଶ୍ନର ଉତ୍ତରରେ କହିଛନ୍ତି- କଳ୍ପବଟ ଦର୍ଶନ କରି ଦକ୍ଷିଣାଭିମୁଖ ହୋଇଗଲେ ମନୋରମ ସ୍ୱର୍ଗଦ୍ୱାର ଦେଖିପାରିବ । ଯାହାକି ମହୋଦଧି କୂଳ ପର୍ଯ୍ୟନ୍ତ ସମାଦୃତ ହୋଇରହିଅଛି ।

ଦକ୍ଷିଣାଭିମୁଖୋ ଗଚ୍ଛେଦ୍ଧନ୍ୱନ୍ତର ଶତତ୍ରୟମ୍ ।
ଯତ୍ରାସୌ ଦୃଶ୍ୟତେ ଚିହ୍ନଂ ସ୍ୱର୍ଗଦ୍ୱାରଂ ମନୋରମ୍ ॥
(ନା.ପୁ. ୫୬/୩୦)

ତୃତୀୟ ଓ ଚତୁର୍ଥ ପ୍ରଶ୍ନର ଉତ୍ତର ପ୍ରସଙ୍ଗରେ ତୀର୍ଥରାଜଙ୍କୁ ପ୍ରଣାମ କରି ଖୁସି କରାଇବା କଥା ବର୍ଣ୍ଣନା କରାଯାଇଛି । ପ୍ରଣାମ କଲାବେଳେ କଣ କଣ କରିବ ତାହା ଗୁରୁତ୍ୱପୂର୍ଣ୍ଣ ମନେହୁଏ । କହିବ ହେ ସରିତପତି ! ତୁମେ ସମସ୍ତ ପ୍ରାଣୀମାନଙ୍କର ପ୍ରାଣ । ହେ ଅଚ୍ୟୁତପ୍ରିୟ ତୀର୍ଥରାଜ ତୁମକୁ ନମସ୍କାର କରୁଛି । ମୋତେ ତ୍ରାହି କର । ଏହିପରି ଭାବରେ ସାଗରରେ ସ୍ନାନ କରି ତୀରରେ ବିଧିବଦ୍ଧ ଭାବରେ ଶ୍ରୀନାରାୟଣଙ୍କୁ ଅର୍ଚ୍ଚନ କରିବ । ମହାତ୍ମା ବସୁ କହୁଛନ୍ତି- ଶ୍ରୀଦେବୀଙ୍କର ଅନେକ ଶଙ୍କା ମହାପ୍ରଭୁ ଦୂର କରିଦେଇଥିଲେ । ତମେ ଜାଣିଛ ମୋହିନି ! ତୀର୍ଥରାଜ ତୀରରେ ଶ୍ରୀନାରାୟଣଙ୍କ ଉପାସନା କରିବା ପରେ ଶ୍ରୀରାମ, ଶ୍ରୀକୃଷ୍ଣ ଓ ସୁଭଦ୍ରାଙ୍କୁ ପ୍ରଣିପାତ କରି ସାଗରକୁ ପ୍ରଣିପାତ କଲେ ଶହେ ଅଶ୍ୱମେଧ ଯଜ୍ଞର ଫଳ ପାଏ ମଣିଷ । ସେ ସର୍ବପାପ ବିମୁକ୍ତ ହେବା ସହିତ ସର୍ବଦୁଃଖ ବିବର୍ଜିତ ହୁଏ । ନିଜେ କେବଳ ବିଷ୍ଣୁଲୋକ ଯାଏ ନାହିଁ ପରନ୍ତୁ ନିଜର ୨୧ ପୁରୁଷଙ୍କୁ ସାଙ୍ଗରେ ଧରି ବିଷ୍ଣୁଲୋକକୁ ଗମନ କରିଥାଏ (ନା.ପୁ. ୫୮/୬) । ବିଷ୍ଣୁଲୋକରେ ଦେବତାମାନଙ୍କ ସାହଚର୍ଯ୍ୟ ଲାଭ କରିବା ପରେ ତାକୁ ପୁଣି ଫେରିବାକୁ ହୁଏ । ବ୍ରହ୍ମବିଦ୍ ବ୍ରାହ୍ମଣ ହୋଇ ସେ ଜନ୍ମଲାଭ କରେ । ମାତ୍ର ଶେଷ ଅବସ୍ଥାରେ ବୈଷ୍ଣବତ୍ୱ ପ୍ରାପ୍ତ ହୁଏ । ତେଣୁ ପ୍ରତ୍ୟେକ ପରାଗ, ଗ୍ରହଣ ଓ ସଂକ୍ରାନ୍ତି ଦିବସ ତୀର୍ଥରାଜରେ ସ୍ନାନ ପାଇଁ ପ୍ରଶସ୍ତ ଅଟେ । ଏଠାରେ ପିଣ୍ଡଦାନର ଗୁରୁତ୍ୱ ରହିଅଛି । ପିଣ୍ଡଦାନରେ କ୍ଷୟ ହେଉ ନଥିବା ତୃପ୍ତିଲାଭ ହୁଏ (ନା.ପୁ. ୫୮/୧୨) ।



୧- ତୀର୍ଥରାଜ ମହୋଦଧି ସମ୍ବନ୍ଧରେ ସତରଟି ସଂସ୍କୃତ ଶାସ୍ତ୍ରରୁ ବିଶେଷତଃ ପୁରାଣ, ତନ୍ତ୍ର, କର୍ମକାଣ୍ଡ ଗ୍ରନ୍ଥର ସବିଶେଷ ତଥ୍ୟ ଉପଲବ୍ଧ ହୁଏ ।

୨- ସବୁଠାରୁ ଅଧିକ ବର୍ଣ୍ଣନା ରହିଛି ଶ୍ରୀନାରଦୀୟ ମହାପୁରାଣର ପୁରୁଷୋତ୍ତମ କ୍ଷେତ୍ରମାହାତ୍ମ୍ୟରେ, ବ୍ରହ୍ମପୁରାଣରେ ଓ ସ୍କନ୍ଦପୁରାଣରେ ।

୩- ଶ୍ରୀନାରଦୀୟ ପୁରାଣରେ ମହୋଦଧିର ଆଠଟି ନାମ ରହିଛି- ଦକ୍ଷିଣ ଉଦଧି, ସମୁଦ୍ର, ତୀର୍ଥରାଜ, ଲବଣ ଉଦଧି, ସାଗର, ମହାସିନ୍ଧୁ, ସରିତପତି ସାଗର ଓ ସିନ୍ଧୁସାଗର ।

୪- ମହାପ୍ରଭୁଙ୍କୁ ଶ୍ରୀଦେବୀ ପଚାରିଥିବା ମହାପ୍ରଶ୍ନରୁ ସ୍ପଷ୍ଟ ହେଉଛି ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଓ ମହୋଦଧି ପରମପାବନର ଦୁଇଟି ମହନୀୟ ପ୍ରତିଭୂ । ଜୀବନର ଆଧ୍ୟାତ୍ମ୍ୟ ରାସ୍ତାରେ ଅଙ୍ଗାଙ୍ଗୀଭାବରେ ଜଡିତ ଥିବା ଗୋଟିଏ ମାଇଲଖୁଣ୍ଟ ।

୫- ମହୋଦଧି ହେଉଛି ତୀର୍ଥମାନଙ୍କ ମଧ୍ୟରେ ରାଜା, ତୀର୍ଥରାଜ ।

୬- ତୀର୍ଥରାଜ ତୀରରେ ସ୍ୱର୍ଗଦ୍ୱାର ଅବସ୍ଥିତ । ସେଇ ସ୍ୱର୍ଗଦ୍ୱାର ହିଁ ଦର୍ଶନର ଭିତ୍ତିଭୂମିରେ ମହାତୀର୍ଥ । ଏହା ଏକ ସାଧାରଣ ଶ୍ମଶାନ ନୁହେଁ ।

୭- ମହାତୀର୍ଥକୁ ଯିବାକୁ ହେଲେ ତୀର୍ଥରାଜଙ୍କ ନିକଟକୁ ଯିବାକୁ ହେବ । ତୀର୍ଥରାଜଙ୍କ ସାନିଧ ପାଇଁ ଶ୍ରୀ ଉଗ୍ରସେନଙ୍କ ଅନୁମତି ନିତାନ୍ତ ଜରୁରୀ । ଯେଉଁ ଉଗ୍ରସେନ ବିରାଜମାନ କରିଛନ୍ତି ଉଆଁସ ଦାଣ୍ଡରେ (ବର୍ତ୍ତମାନ ବାଲିସାହି ଆଖେଡା ପାଖରେ) । ତାଙ୍କ ପରେ ମହାତୀର୍ଥ ଦିଗକୁ ଆଗେଇଲେ ରହିଛନ୍ତି ମହାତୀର୍ଥର ମହାବୀର । ଶ୍ରୀମହାବୀର ଓ ଶ୍ରୀହନୁମାନ ତତ୍ତ୍ୱ ସମ୍ପୂର୍ଣ୍ଣ ଭିନ୍ନ । ଶ୍ରୀମହାବୀର ହେଉଛନ୍ତି ରାମାୟଣର ଅଙ୍ଗଦ । ଅଙ୍ଗଦ ସଂଶ୍ଳିଷ୍ଟ ଥିଲେ ତତ୍କାଳୀନ ମହର୍ଷି କଣ୍ଡୁଙ୍କ ସହିତ । ମହର୍ଷି କଣ୍ଡୁଙ୍କ ଆଶ୍ରମ ସେତେବେଳେ ମହାତୀର୍ଥର ପରିସରଭୁକ୍ତ ଥିଲା । ଶ୍ରୀମହାବୀର ରହିଛନ୍ତି ଗଣାମଲ୍ଲସାହି ମୁଣ୍ଡରେ ।

ମହାତୀର୍ଥକୁ ଆଉ ପାଦେ ଆଗେଇଲେ ମହାତୀର୍ଥର ଉପାସ୍ୟା ମହାକାଳୀ ରହିଛନ୍ତି । ଶ୍ମଶାନକାଳୀ ଭାବେ ପରିଚିତା । ସେ ଉଆଁସ ଦାଣ୍ଡରେ ପୂର୍ବାଭିମୁଖୀ ହୋଇରହିଛନ୍ତି । ସେଠାରୁ ମହାତୀର୍ଥ ଦିଗକୁ ଗଲେ ପଡେ ସ୍ୱର୍ଗ ନିଶୁଣୀର ଅଧା ନିର୍ମିତ ଖୁଣ୍ଟି । ଦିନେ ଜ୍ଞାନୀ ରାବଣ ଏଇ ମହାତୀର୍ଥରୁ ହିଁ ସ୍ୱର୍ଗକୁ ନିଶୁଣୀ ବାନ୍ଧିବା କାର୍ଯ୍ୟର ଶୁଭାରମ୍ଭ କରିଥିଲେ । ଭାଇବୋହୂ ଦେଢଶୂର କୂଅ ସାମନାରେ ସେଇ ନିଶୁଣୀ ଖୁଣ୍ଟିର ଉପାସନା ଏବେ ବି ଚାଲିଛି । ଏହି ଭାଇବୋହୂ ଦେଢଶୂର କୂପର ମଧୁର ଜଳରେ ପିଣ୍ଡଦାନାଦି କାର୍ଯ୍ୟ ମହାତୀର୍ଥରେ ହୋଇଥାଏ । ଭାଇବୋହୂ ଦେଢଶୂର କୂଅର ତାତ୍ପର୍ଯ୍ୟ ହେଲା ଶୌଚ ଓ ଅଶୌଚ ଜଳ ଏକକାଳୀନ ବ୍ୟବହାର କରିହେବ ।

୮- ମହାତୀର୍ଥରେ ମୋକ୍ଷ ନାହିଁ । କେବଳ ମୁକ୍ତି । ଜୀବନଚକ୍ରରୁ ମୁକ୍ତି । ଜୀବନ ପ୍ରବାହର ଗୋଟିଏ ସ୍ତରରୁ ଆଉ ଗୋଟିଏ ସ୍ତରକୁ ପ୍ରବେଶ ।

୯- ମହାତୀର୍ଥରେ ବିଷ୍ଣୁଲୋକ କାମନା ଥାଇପାରେ । ସମ୍ଭବ ମଧ୍ୟ । କିନ୍ତୁ ତାହା ମୋକ୍ଷ ନୁହେଁ । ଦେବତାମାନଙ୍କ ସାହଚର୍ଯ୍ୟ ପରେ ପୁଣ୍ୟକ୍ଷୟରେ ପୁଣି ଆଗମନ ଅଛି । ସେ ଆଗମନ ବ୍ରାହ୍ମଣରୂପରେ ସତ୍ୟ । ମାତ୍ର ଶେଷ ପରିଣତି ବୈଷ୍ଣବତତ୍ତ୍ୱରେ ପ୍ରବେଶ । ବୈଷ୍ଣବ ତତ୍ତ୍ୱରେ ମୋକ୍ଷର ସ୍ଥାନ ନାହିଁ । ମୋକ୍ଷରେ ଗୁରୁ ପରମ୍ପରାରେ ବିଭ୍ରାଟ ହେବାର ସମ୍ଭାବନା ଅଧିକ ।

୧୦- ତୀର୍ଥରାଜଙ୍କ ମହାତୀର୍ଥରେ ବୈଦିକ କର୍ମକାଣ୍ଡର ଭିତ୍ତିଭୂମି ରହିଛି । ପିଣ୍ଡଦାନରେ ତୃପ୍ତି ମିଳେ । ତୃପ୍ତି ହେଉଛି ଶାନ୍ତି । ସୁଖ ନୁହେଁ । କେଉଁ ଶାନ୍ତି ମିଳେ ? ଯେଉଁ ଶାନ୍ତିର କ୍ଷୟ ନାହିଁ । ତେଣୁ ତୀର୍ଥରାଜ, ମହାତୀର୍ଥ ଓ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଅକ୍ଷୟ ଶାନ୍ତି ପାଇବାର ସର୍ବୋତ୍ତମ ମାଧ୍ୟମ । ଜୀବନ ପ୍ରବାହର ଅଦମନୀୟ ଅଭୀପ୍ସା ।

ଗବେଷଣା ଅଧିକାରୀ
ଶ୍ରୀଜଗନ୍ନାଥ ସଂସ୍କୃତ ବିଶ୍ୱବିଦ୍ୟାଳୟ,
ଶ୍ରୀବିହାର, ପୁରୀ-୭୫୨୦୦୩





# ଜଗନ୍ନାଥ ଯେ ଷୋଳକଳା

ଅଧ୍ୟାପକ ବିକ୍ରମ କେଶରୀ ବର୍ମା

ଜଗନ୍ନାଥ ଯେ ଷୋଳ କଳା
ତହୁଁ କଳାଏ ନନ୍ଦ ବଳା
କଳାକୁ ଷୋଳ କଳା କରି
ଗୋପେ ବିରହେ ନରହରି ।

ଶ୍ରୀଜଗନ୍ନାଥ ଅବତାରୀ ପୁରୁଷ । ସେ ବିଭିନ୍ନ ଯୁଗରେ ବିଭିନ୍ନ ଅବତାର ନେଇ ଜନ୍ମଗ୍ରହଣ କରିଥାନ୍ତି ।

କୃଷ୍ଣ ଅବତାରରେ ସେ ମଥୁରାରେ ବନ୍ଦୀଶାଳାରେ ଜନ୍ମ ହୋଇ ଗୋପପୁରରେ ନନ୍ଦ ଘରେ ବଢିଥିଲେ ଓ ବୃନ୍ଦାବନରେ କେଳି କରିଥିଲେ ।

ନଟବରନାଗର ବଂଶୀଧର କାହ୍ନୁ । ଅପୂର୍ବ କମନୀୟ କାନ୍ତି । ଚନ୍ଦନ ଚର୍ଚ୍ଚିତ ନୀଳ କଳେବର । ମସ୍ତକରେ ଶିଖୀ ଚୂଳ । ବକ୍ର ଚାହାଣୀ । ସୁନା ନାକ । ବିମ୍ବାଧର । ସ୍ମିତ ହାସ୍ୟ । କର୍ଣ୍ଣରେ କୁଣ୍ଡଳ । ଗଳାରେ ବନମାଳ । ପୀତାମ୍ବର ପରିଧାନ । କରରେ ବଂଶୀ । ଚରଣରେ ଘୁଂଘୁର ରୁଣୁଝୁଣୁ ବାଜୁଥାଏ । ରଙ୍ଗାଚରଣ । ପଦ୍ମ କଢି ପରି ଅଙ୍ଗୁଳି । ସିଂହ କଟି । କରକା ମଞ୍ଜିପରି ଦ୍ୟନ୍ତ । ବାହୁରେ ବାହୁଟି । ଅଙ୍ଗୁଳିରେ ରତ୍ନମୁଦି । ପୁଣି ନାସାରେ ମୋତିର ଝରା । କୁଞ୍ଚିତ ଲମ୍ବା କେଶ । ମସ୍ତକରେ ସୁନାର ମୁକୁଟ । କପାଳରେ ଚନ୍ଦନ ଓ ତିଳକ ଗାର । ଚକ୍ଷୁରେ କଳା, ଟଣାଟଣା ଭୂଲତା । ଲମ୍ବା ଲମ୍ବା କାନ । ବିଶାଳ ହୃଦୟ । ବୁକୁରେ ଶ୍ରୀବତ୍ସ ଚିହ୍ନ । ଓଠରେ କଳାଖସା । ଗଣ୍ଡ ଦେଶରେ ଛୋଟ କଳାଜାଇ । ନୀଳ ଉତ୍ତରୀୟ । ପିକ ଜିଣା କଣ୍ଠ । ହସହସ ମୁଖ । ଏପରି ଅପୂର୍ବ କମନୀୟ କାନ୍ତି କାହା ହୃଦୟରେ ତରଙ୍ଗ ସୃଷ୍ଟି ନକରିବ ।

ଶ୍ରୀରାଧା, ବୃନ୍ଦା, ଚନ୍ଦ୍ରାବତୀ ସହ ଷୋଳ ସହସ୍ର, ଗୋପନାରୀ ସମସ୍ତେ ତ କାହ୍ନୁର ପ୍ରେମରେ ପଡିଯାଇଥିଲେ । କୃଷ୍ଣ ଥିଲେ ସେମାନଙ୍କ ଜୀବନ । ରୁକ୍ମିଣୀ, ସତ୍ୟଭାମା ଓ ଯାମ୍ବବତୀ ଆଦି ଅଷ୍ଟପାଟବଂଶୀ କେବଳ ତାଙ୍କର ପତ୍ନୀ ନଥିଲେ, ପାପୀ ଜରାସନ୍ଧ ସହସ୍ର ରାଜକୁମାରୀଙ୍କୁ ବନ୍ଦୀ କରିଥିବା ଓ ଶ୍ରୀକୃଷ୍ଣଙ୍କ କର୍ତ୍ତୃକ ଭୀମ ଦ୍ୱାରା ଜରାସନ୍ଧ ନିହତ ହେବା ପରେ ସେହି ହତଭାଗିନୀ ଏବଂ ସହସ୍ର ରାଜକୁମାରୀମାନଙ୍କ ସେ ମଧ୍ୟ ହୋଇଥିଲେ ସ୍ୱାମୀ ।

ସେ ଜଗତପର ପତି । ସେ ପ୍ରେମର ଆଧାର । ସତ୍ୟ, ପ୍ରେମ ଶ୍ରଦ୍ଧା ସେ ବିଶ୍ୱ ସାରା ବଣ୍ଟନ କରିଯାଇଛନ୍ତି । ଦୁଷ୍ଟ ଦଳନ ଓ ସନ୍ଥ ପାଳନ ତାଙ୍କର ଥିଲା ଧର୍ମ ।

ମହାପାପୀ ଅତ୍ୟାଚାରୀ ମଥୁରାପତି କଂସାସୁର ମଗଧେଶ୍ୱର ଦୁଷ୍ଟ ଜରାସନ୍ଧ, ଅଭିମାନୀ ଓ କପଟୀ ଦୁର୍ଯ୍ୟୋଧନ, ରାକ୍ଷସ କୁଳ କୁଳାଙ୍ଗାର ଶାଲ୍ୱ ଶିଶୁପାଳ କେହି ତାଙ୍କ ହସ୍ତରୁ ନିସ୍ତାର ପାଇନଥିଲେ । ବଂଶୀଧରରୁ ସେ ଚକ୍ରଧର ହୋଇଛନ୍ତି । ନିଜର ଉଗ୍ର ବଂଶଧରମାନଙ୍କୁ ମଧ୍ୟ ବିନାଶ କରିଥିଲେ ।

କୁରୁଯୁଦ୍ଧ ପ୍ରାରମ୍ଭରେ କୁରୁ ରଣକ୍ଷେତ୍ରରେ ତାଙ୍କର ମୁଖରୁ ନିସୃତ ହୋଇଥିଲା ଭଗବତ ଗୀତା । ପ୍ରିୟଭକ୍ତ ଉଦ୍ଧବଙ୍କୁ ଭଗବତ ତତ୍ତ୍ୱ ଶୁଣାଇଥିଲେ ।

ସେ ଥିଲେ ଜ୍ଞାନର ସାଗର । ପ୍ରେମର ମନ୍ଦାକିନୀ । ଶତ ସହସ୍ର ଯୁଦ୍ଧର ବିଜୟୀ ମହାନ୍ ପରାକ୍ରମୀ ଶ୍ରୀକୃଷ୍ଣ ଶେଷରେ ଚକ୍ର ପରିତ୍ୟାଗ କରି ଯୁଦ୍ଧ ପରିହାର କରିଥିଲେ ଓ ସେ ରଣଛୋଡ ନାମରେ ପରିଚିତ ହୋଇଥିଲେ ।

ଜରା ଶବରର ଶରାଘାତରେ ପ୍ରଭୁ ଦେହତ୍ୟାଗ କରିବା ପରେ ତାଙ୍କ ଶରୀରକୁ ସମୁଦ୍ରରେ ନିକ୍ଷେପ କରାଯାଇଥିଲା ଓ ତାହା ଦାରୁରେ ପରିଣତ ହୋଇ ଭାସି ଭାସି ଆସି ପୁରୀ ସମୁଦ୍ର କୂଳରେ ଲାଗିଥିଲା । ରାଜା ଇନ୍ଦ୍ରଦ୍ୟୁମ୍ନ ସ୍ୱପ୍ନାଦେଶ ପାଇ ସାଗର ଜଳରୁ ଦାରୁ ଉଦ୍ଧାର କରିଥିଲେ । କୌଣସି କାରୀଗର ଦାରୁରେ ମୂର୍ତ୍ତି ତିଆରି କରିବା ଦୂରେ ଥାଉ ସେମାନଙ୍କ ନିହାଣ ସବୁ ଭାଙ୍ଗିଯିବାରୁ ସେମାନେ ପଳାୟନ କଲେ । ଏହି ସମୟରେ ଏକ ବୁଢା କାରିଗର ପହଞ୍ଚିଲେ ଓ ଏହି ଦାରୁରେ ପ୍ରଭୁଙ୍କ ବିଗ୍ରହ ନିର୍ମାଣ କରିବାକୁ ପ୍ରତିଶ୍ରୁତି ଦେଲେ ।

ଦୀର୍ଘ ୨୧ଦିନ ଧରି ଏକ କବାଟ ବନ୍ଦ ଘରେ ରହି ବିଗ୍ରହ ତିଆରି କରିବେ ବୋଲି ସେ ବୃଦ୍ଧ କାରିଗର କହିଥିଲେ । ଏହି ୨୧ଦିନ ଖାଦ୍ୟ ପେୟ ଗ୍ରହଣ କରିବେ ନାହିଁ ଓ ୨୧ ଦିନ ନପୁରୁଣୁ ଗୃହର କବାଟ ନଖୋଲିବା ପାଇଁ କାରୀଗର ସର୍ତ୍ତ ରଖିଥିଲେ । ଏହି ସର୍ତ୍ତ ଅନୁସାରେ ବୃଦ୍ଧ କାରିଗର ଦାରୁ ସହ ଏକ କବାଟ କିଳା ଘରେ ରହିଲେ । ଘର ଭିତରୁ ଠୁକ୍ ଠୁକ୍ ଶବ୍ଦ ଶୁଭୁଥାଏ ।



କିନ୍ତୁ କିଛି ଦିନ ଯିବାପରେ ଆଉ ଠୁକ୍ ଠୁକ୍ ଶୁଭିଲା ନାହିଁ । ମହାରାଣୀ ଗୁଣ୍ଡିଚା ଦେବୀ ଦିନେ କବାଟ ପାଖରେ କାନଦେଇ ଶୁଣିଲେ ଆଉ ଠୁକ୍ ଠୁକ୍ ଶବ୍ଦ ଶୁଭୁନାହିଁ । ତାଙ୍କର ମନରେ ସନ୍ଦେହ ହେଲା ଉପବାସରେ ରହିଥିବା ଏହି ବୃଦ୍ଧ କାରୀଗର ହୁଏତ ମରିଯାଇଥାନ୍ତି । ତେଣୁ ମହାରାଣୀ କବାଟ ଖୋଲିବାକୁ ଆଦେଶ ଦେଲେ । କବାଟ ଖୋଲିବା ପରେ ଦେଖାଗଲା ବୃଦ୍ଧ କାରୀଗର ନାହାନ୍ତି ଓ ୩ଟି ବିଗ୍ରହ ଅଧା ଗଢା ହୋଇରହିଛି ।

ସେହି ତିନି ଅଧାଗଢା ବିଗ୍ରହ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର ରୂପେ ଶ୍ରୀମନ୍ଦିରରେ ପୂଜା ପାଇ ଆସୁଛନ୍ତି । ସେ ଜଗତର ନାଥ । ସେ ବଦ୍ରିନାଥ, ରାମନାଥ କିମ୍ବା ଦ୍ୱାରିକା ନାଥ ନୁହଁନ୍ତି । ସେ ଜଗତର ଉଦ୍ଧାର ପାଇଁ ସେ ଦାରୁ ମୂରତି ଗ୍ରହଣ କରିଛନ୍ତି । ସେ ନିଜେ ବୈକୁଣ୍ଠ ପତି ନାରାୟଣ । ଯେତେବେଳେ ଧର୍ମର ଗ୍ଲାନିହୁଏ ଓ ଦୁଷ୍ଟମାନେ ସାଧୁସନ୍ଥମାନଙ୍କୁ କଷ୍ଟ ଦିଅନ୍ତି ସେତେବେଳେ ଶ୍ରୀଜଗନ୍ନାଥ ବିଭିନ୍ନ ଅବତାର ଗ୍ରହଣ କରି ଦୁଷ୍ଟ ନିବାରଣ ଓ ସନ୍ଥ ପାଳନ କରିଥାନ୍ତି । ରଥ ଉପରେ ଜଗନ୍ନାଥଙ୍କୁ ଦର୍ଶନ କଲେ ସମସ୍ତ ପାପ କ୍ଷୟ ଯାଏ । ଶ୍ରୀଗୁଣ୍ଡିଚା ଦିନ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଦେଖିବା ପାଇଁ ଲକ୍ଷ ଲକ୍ଷ ଶ୍ରଦ୍ଧାଳୁ ଭକ୍ତ ପୁରୀରେ ଜମା ହୁଅନ୍ତି ଓ ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ରଙ୍କୁ ରଥରେ ଦର୍ଶନ କରି ନେତ୍ର ପବିତ୍ର କରିଥାନ୍ତି ।

ଅଧ୍ୟକ୍ଷ, ଓଡିଶା ରାଜ୍ୟ କାଜୁ ଉନ୍ନୟନ ନିଗମ ଲିଃ
ଇନ୍ଦ୍ରଧନୁ ମାର୍କେଟ୍, ଭୁବନେଶ୍ୱର-୧୫

# କଳା ଠାକୁର

ଗଣେଶ ଚନ୍ଦ୍ର ଦାଶ



ଆହା ! ମୋର କଳାଠାକୁର,
ଭାଇ ଭଉଣୀଙ୍କୁ ସଙ୍ଗରେ ଧରି
ବଡ ଦାଣ୍ଡକୁ ତୁ ହେଉ ବାହାର ।

ଦେବ ସ୍ନାହାନ ପୂର୍ଣ୍ଣିମା ଦିନ,
ରତ୍ନ ସିଂହାସନୁ ହୋଇଲ ପହଣ୍ଡି
ସ୍ନାହାନ ମଣ୍ଡପେ କରିଲ ସ୍ନାନ ।

ଅଣସର ଘରେ ରହିଲ,
ଥଣ୍ଡା ଜ୍ୱରରେ ପୀଡିତ ହୋଇଣ
ଫଳ ମୂଳକୁ ଆହାର କଲ ।



ଆଷାଢ ମାସର ଗୁଣ୍ଡିଚା ଦିନ,
ନନ୍ଦିଘୋଷ ରଥେ ପ୍ରଭୁ ବିଜେକରି
ଭକ୍ତଜନଙ୍କୁ ଦେଲ ଦର୍ଶନ ।

ମାଉସୀ ଘରକୁ ରଥରୁ ଗଲ,
ନଅ ଦିନ ସେଠି ଆନନ୍ଦେ ରହିଣ
ବାହୁଡା ଯାତ୍ରାରେ ବାହୁଡାଇଲ ।

ଭକ୍ତର ତୁମେ ଅଟ ଭଗବାନ
ନନ୍ଦିଘୋଷ ରଥ ଅଟକିଗଲା
ସାଲବେଗକୁ ଦେଲ ଦର୍ଶନ ।

ହେ! ମୋର କଳା ଗୋସାଇଁ
ଯୁଗେ ଯୁଗେ କେତେଲୀଳା କରୁଥାଅ
ଭକ୍ତ ମନୋବାଞ୍ଛା ପୂରଣ ପାଇଁ ।

କ୍ୱାଟର ନଂ ଇ-୨୨
ୟୁନିଟ୍-୭
ଭୁବନେଶ୍ୱର-୭୫୧୦୦୩

# ତାଳଧ୍ୱଜ ରଥରେ ଚକସଂଖ୍ୟାର ତାତ୍ପର୍ଯ୍ୟ

ମହୀମୋହନ ତ୍ରିପାଠୀ



ପ୍ରଭୁ ବଳଭଦ୍ରଙ୍କ ରଥର ନାମ ତାଳଧ୍ୱଜ । ଏହି ରଥର ଚକ ସଂଖ୍ୟା ହେଉଛି ଚଉଦ । ପ୍ରଭୁ ଜଗନ୍ନାଥଙ୍କ ନନ୍ଦିଘୋଷ ରଥ ଓ ଦେବୀ ସୁଭଦ୍ରାଙ୍କ ଦର୍ପଦଳନ/ ଦେବଦଳନ ରଥର ଚକସଂଖ୍ୟା ଯଥାକ୍ରମେ ଷୋହଳ ଓ ବାର । ପ୍ରତ୍ୟେକ ରଥରେ ସମାନ ସଂଖ୍ୟକ ଚକ ରଖାନଯିବା ପଛରେ ତାତ୍ତ୍ୱିକ ଅର୍ଥ ରହିଛି ଏବଂ ସଂଖ୍ୟାମାନଙ୍କରେ ନିହିତ ନିଗୂଢ ତାତ୍ପର୍ଯ୍ୟକୁ ବିଚାରକୁ ନିଆଯାଇ ଚକସଂଖ୍ୟା ସ୍ଥିର କରାଯାଇଛି ।

ବଳଭଦ୍ର (ବଳରାମ) ହେଉଛନ୍ତି ସାକ୍ଷାତ ଶିବ ସ୍ୱରୂପ । ସେ ଶିବଙ୍କ ଏକ ଅବତାର ବୋଲି ସାରଳା ଦାସଙ୍କ ମହାଭାରତର ମୁଷଳୀ ପର୍ବରେ କୁହାଯାଇଛି । ଉକ୍ତ ମହାଭାରତର ଆଦିପର୍ବରେ ମଧ୍ୟ କୁହାଯାଇଛି:

ବଳରାମ ବୋଲିଣ ଯେବଣ ନାମ ହୋଇ ।
ପ୍ରତକ୍ଷେ ଯେ ସଦାଶିବ କପିଳାସବାସୀ ସେହି ॥

ମହାଦେବ ଶିବ ଚଉଦ ଅଙ୍କ ପ୍ରତି ଜଡିତ । ସୁତରାଂ ବଳଭଦ୍ର ବା ବଳରାମ ମଧ୍ୟ ଚଉଦ ଅଙ୍କ ସହିତ ସମ୍ବନ୍ଧିତ । ଶିବ ଚଉଦ ଭୁବନକୁ କରାୟତ୍ତ କରିଥିଲେ । ଏହି ଚଉଦ ଭୁବନ ହେଲା-ଭୂଃ, ଭୁବଃ, ସ୍ୱଃ, ମହଃ, ଜନ, ତପ, ସତ୍ୟ, ଅତଳ, ସୁତଳ, ବିତଳ, ତଳାତଳ, ମହାତଳ, ରସାତଳ ଓ ପାତାଳ ।

ଏହି ଚତୁର୍ଦ୍ଦଶ ଭୁବନର ଭାରା ପୁଣ୍ଡରୀକାକ୍ଷଙ୍କ ବ୍ୟତୀତ କୌଣସି ବ୍ୟକ୍ତି ଫଣାର ଅଗ୍ରଭାଗରେ ଧାରଣ କରିବାକୁ ସମର୍ଥ ହୁଏ ? ଏହି ଭୁବନ ସମୂହର ଭାରଧାରୀ ଅନନ୍ତ ଦେବହିଁ ବଳଦେବ ନାମରେ ଅଭିହିତ ହୋଇଛନ୍ତି ବୋଲି ସ୍କନ୍ଦ ପୁରାଣର 'ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟମ୍'ରେ ଉଲ୍ଲେଖ ଅଛି ।

କୋ ହ୍ୟନଃ ପୁଣ୍ଡରୀକାକ୍ଷାଦ୍ ଭୁବନାନି ଚତୁର୍ଦ୍ଦଶ ।
ଧାରୟେତ୍ତୁ ଫଣାଗ୍ରେଣ ସୋଦ୍ଧନନ୍ତୋ ବଳସଂଜ୍ଞିତଃ ॥

ବଳଦେବ ବା ବଳଭଦ୍ରଙ୍କ ଅନ୍ୟନାମ ଅନନ୍ତ । ଶିବ ତାଣ୍ଡବ ନୃତ୍ୟ କଲାବେଳେ ନିଜର ପ୍ରିୟବାଦ୍ୟ ଡମ୍ବରୁକୁ ଚଉଦଥର ବଜାଇବାରୁ ଚଉଦଟି ସୂତ୍ର ଡମ୍ବରୁ ନାଦରୁ ବାହାରିଥିଲା । ମହର୍ଷି ପାଣିନୀଙ୍କ ତପସ୍ୟାରେ ସନ୍ତୁଷ୍ଟ ହୋଇ ଶିବ ଡମ୍ବରୁ ନାଦରେ ୧୪ଟି ସୂତ୍ର ତାଙ୍କୁ ପ୍ରଦାନ କରିଥିଲେ ବୋଲି କୁହାଯାଏ । ଏହି ୧୪ଟି ସୂତ୍ରକୁ ନେଇ ପାଣିନୀ ମହାବ୍ୟାକରଣ ଶାସ୍ତ୍ର ରଚନା କଲେ । ଏହି ଚତୁର୍ଦ୍ଦଶ ସୂତ୍ରର ନାମ ହେଲା- ଅଇଉଣ, ଋଲୃକ, ଏଓଙ୍, ଐଔଚ, ହୟବରଟ୍ ଇତ୍ୟାଦି । ଚତୁର୍ଦ୍ଦଶ ସୂତ୍ରକୁ ମଧ୍ୟ ମହେଶ୍ୱର ସୂତ୍ର କୁହାଯାଏ । ଡମ୍ବରୁ ହେଉଛି ନାଦବ୍ରହ୍ମ ଓ ସୃଷ୍ଟିର ପ୍ରତୀକ ।

ଶିବଙ୍କର ୧୪ସୂତ୍ରର ପ୍ରୟୋଗ ତନ୍ତ୍ରବିଦ୍ୟାରେ ବିଭିନ୍ନ ପ୍ରକାରେ କରାଯାଏ । ସନକାଦି ଋଷିମାନେ ଏହି ସୂତ୍ରର ଉପାସନା କରି ସିଦ୍ଧିପ୍ରାପ୍ତ ହୋଇଥିଲେ । ପ୍ରତିଦିନ ଶିବଙ୍କୁ କ୍ଷୀରାଭିଷେକ ଚତୁର୍ଦ୍ଦଶ ସୂତ୍ରରେ କରାଯାଇପାରେ ବୋଲି କୁହାଯାଇଛି ।

ବ୍ରାହ୍ମଣର ପଠନୀୟ ବିଦ୍ୟା ହେଲା ଚଉଦଟି । ତାହା ହେଲା- ଚାରିବେଦ, ଷଡବେଦାଙ୍ଗ, ସଂହିତା, ପୁରାଣ, ମୀମାଂସା ଓ ତର୍କ । ଶିବ ଏହି ଚଉଦଟି ବିଦ୍ୟାକୁ ଚଉଦ ଇନ୍ଦ୍ରିୟକୁ ସଂଯମ କରିବା ପାଇଁ ନିୟୋଜିତ କରିଥିଲେ । ଏହି ଚଉଦ ଇନ୍ଦ୍ରିୟ ହେଲା-ପଞ୍ଚ କର୍ମେନ୍ଦ୍ରିୟ, ପଞ୍ଚ ଜ୍ଞାନେନ୍ଦ୍ରିୟ, ମନ, ବୁଦ୍ଧି, ଅହଙ୍କାର ଓ ଚିତ୍ତ ।

(ନିୟତି, ଜୁଲାଇ ୨୦୦୫)



ଶିବଙ୍କର ଚଉଦଟି ପ୍ରସିଦ୍ଧ ଯାତ୍ରା ହେଲା-

୧-ଦମନକ ଚତୁର୍ଦ୍ଦଶୀ, ୨- ଅକ୍ଷୟ ତୃତୀୟା, ୩- ପର୍ଶୁରାମାଷ୍ଟମୀ, ୪- ଶୟନ ଚତୁର୍ଦ୍ଦଶୀ, ୫-ପବିତ୍ରାରୋପଣ, ୬- ଯମ ଦ୍ୱିତୀୟା, ୭-ଦେବୋତ୍‌ଥାପନ, ୮- ପ୍ରଥମାଷ୍ଟମୀ, ୯- ପ୍ରାବରଣ ଷଷ୍ଠୀ, ୧୦- ପୁଷ୍ୟାଭିଷେକ, ୧୧-ମକର ସଂକ୍ରାନ୍ତି, ୧୨-ମାଘସପ୍ତମୀ, ୧୩-ଅଶୋକାଷ୍ଟମୀ, ୧୪-ମହାଶିବରାତ୍ରୀ ।

ପ୍ରତିମାସର କୃଷ୍ଣ ଚତୁର୍ଦ୍ଦଶୀ ଶିବଙ୍କର ଅତି ପ୍ରିୟ ଦିବସ । ସେଥିମଧ୍ୟରୁ ଫାଲଗୁନ କୃଷ୍ଣ ଚତୁର୍ଦ୍ଦଶୀ ସର୍ବଶ୍ରେଷ୍ଠ । ଏହି ଦିନକୁ ମହାଶିବରାତ୍ରୀ କୁହାଯାଏ ।

ଶିବଙ୍କ ଚଉଦ ସଂଖ୍ୟା ପ୍ରିୟ ହେତୁ, ଶିବଙ୍କ ସ୍ୱରୂପ ବଳରାମ ବା ବଳଭଦ୍ରଙ୍କ ତାଳଧ୍ୱଜ ରଥର ଚକସଂଖ୍ୟା ଚଉଦ ରଖାଯାଇଛି ।

ଏସ-ଏ/୨, ବ୍ରିଟ କଲୋନୀ
ନୟାପଲ୍ଲୀ, ଭୁବନେଶ୍ୱର-୧୨

# ମହାପ୍ରଭୁ

ଶୁଭସ୍ମିତା ମହାନ୍ତି



ନିଛାଟିଆ ବୈଶାଖର ତପ୍ତ ମଧ୍ୟାହ୍ନରେ
ତୁମେ ପରା ମୋ ପାଇଁ ସଜଳ ଆଷାଢ
ତୁମେ ମୋର ପିତା, ମାତା, ମୋ ଗତି ମୁକତି
ବନ୍ଧୁ ପୁଣି ହସ ଲୁହ ଆଶା ନିରାଶାର ।

ଜୀବନ ନାଆରେ ମୋର
ତୁମେ ପରା ଅଦୃଶ୍ୟ ନାଉରୀ
ତୁମେ ଅଛ ବୋଲି ପ୍ରଭୁ
ଯେତେ ଝଡ଼ ଆସିଲେ ବି
ନାଆ ମୋର ଯାଏନି ଦୋହଲି ।।

ଅନ୍ଧକାର ଯେବେ ଆସେ ଜୀବନରେ
ତୁମେ ଜଳ ମୋ ମନରେ
ପ୍ରତ୍ୟୟର ଦୀପଶିଖା ହୋଇ
କରୁଣାର ଫଲ୍‌ଗୁଧାର ଝରିପଡେ
ମଥାରେ ମୋ, ଯେବେ ଡାକେମୁହିଁ ।
ତୁମେ ଗଢ ତୁମେ ଭାଙ୍ଗ
ଭଙ୍ଗାଗଢା ତୁମ ଏ ଦୁନିଆଁ
ବିଶ୍ୱ କାରିଗର ତୁମେ
ସବୁପରା ତୁମରି କିମିଆଁ
ତୁମେ ହିଁ ନୂତନ ସ୍ୱର ସକାଳର
ସନ୍ଧ୍ୟାର ମଧୁ ଆରାଧନା
ବିଶ୍ୱପ୍ରାଣେ ଭରିଦିଅ ପ୍ରୀତିର ପ୍ରାଚୁର୍ଯ୍ୟ
ତୁମ ପାଶେ ଏତିକି ପ୍ରାର୍ଥନା ... ।।

କପିଳେଶ୍ୱରପୁର
ଅତିବଡୀ ପୀଠ
ପୁରୀ



# ଜଗନ୍ନାଥସ୍ୱାମୀ ନୟନ ପଥଗାମୀ ଭବତୁ ମେ

ଉର୍ମିଳା ମିଶ୍ର



ଜଗତର ନାଥ ହେଉଛନ୍ତି ସର୍ବବ୍ୟାପକ, ସର୍ବଶକ୍ତିମାନ, ସର୍ବଜ୍ଞ ଓ ଜ୍ଞାନର ପ୍ରତୀକ ମଧ୍ୟ । ତାଙ୍କର ଆଦି ନାହିଁ କି ଅନ୍ତ ନାହିଁ । ତେଣୁ ସେ ଅନାଦି ଓ ଅନନ୍ତ ମଧ୍ୟ । ତାହାଙ୍କର ଶରୀର ସତଚିତ୍ ଓ ଆନନ୍ଦରେ ଗଢା, ତେଣୁ ସେ ସଚ୍ଚିଦାନନ୍ଦ । ଜଗତରେ ଯାହାସବୁ ଘଟୁଛି ସେ ସବୁର କାରଣ ହେଉଛନ୍ତି ବ୍ରହ୍ମାଣ୍ଡର ନାଥ ସ୍ୱୟଂ ଭଗବାନ । ତାଙ୍କ ଇଚ୍ଛାବିନା ଘାସ ମଧ୍ୟ ହଁଲେ ନାହିଁ । ସେ ମଧ୍ୟ କରୁଣାର ସିନ୍ଧୁ ଓ ଦୟାକ୍ଷମାର ସାଗର । ଅଣୁଠୁ ପରମାଣୁ ପର୍ଯ୍ୟନ୍ତ ସବୁଠାରେ ତାଙ୍କରି ରୂପ ।

ବ୍ରହ୍ମାଣ୍ଡର ନାଥ ସୃଷ୍ଟିକର୍ତ୍ତା ପରମେଶ୍ୱରଙ୍କ ଦିବ୍ୟଦୃଷ୍ଟି କଥା ଭାବିଲେ ହୃଦୟ ମନ ବେଳେବେଳେ ତାଙ୍କରି ଶ୍ରୀପାଦ ପଦ୍ମରେ ଅବନତ ହୋଇପଡେ । ସେହି କରୁଣାମୟ ପରଂବ୍ରହ୍ମ ଦାରୁବ୍ରହ୍ମଙ୍କର ଅନନ୍ତ ଅସୀମ ମହିମାକଥା ଭାବିଲେ ହୃଦୟ ତନ୍ମୟ ହୋଇଉଠେ । ମହାପ୍ରଭୁ କୃପାମୟଙ୍କର କୃପାଲାଭ କରି ଦୁଃଖି ଦୁଃଖ ଦୂର ହୋଇଯାଏ । ମନମଧ୍ୟରୁ ସମସ୍ତ ଅସନ୍ତୋଷ ବିଦୂରିତ ହୋଇ ହୃଦୟ ପରମଶାନ୍ତି ଲାଭ କରେ । ମହାପ୍ରଭୁ ମହାବାହୁଙ୍କ ପ୍ରତି ଅଗାଧ ଭାବଭକ୍ତି ହିଁ ସମସ୍ତ ଉନ୍ନତିର ମୂଳମନ୍ତ୍ର । ତାଙ୍କର ଆକର୍ଷଣୀୟ ଚେହେରାରୁ ଆଖି ଫେରାଇବା ବଡ କଷ୍ଟକର । ପରଂବ୍ରହ୍ମଙ୍କର ଶ୍ରୀରୂପ ହିଁ ଜଗନ୍ନାଥ । ମହାପ୍ରଭୁଙ୍କର ଅପାର କରୁଣାରୁ ଅନ୍ଧ ବି ଦର୍ଶନ କରିପାରେ ଶ୍ରୀଜଗନ୍ନାଥଙ୍କୁ । ତା କଣ୍ଠରୁ ଝରିପଡେ ଭକ୍ତି ଗଦ୍ ଗଦ୍ ସ୍ୱରରେ ଭଜନର ଝଙ୍କାର । ଅନ୍ଧ ଚକ୍ଷୁରେ ସେ ଭଗବାନଙ୍କର ଦର୍ଶନ ମଧ୍ୟ କରିପାରେ । ସ୍ପର୍ଶ ମଧ୍ୟ ଅନୁଭବ କରିପାରେ । ମହାପ୍ରଭୁ ହେଉଛନ୍ତି ସତ୍ୟ, ଶିବ, ସୁନ୍ଦର ।

ଜଗତର ନାଥ ଶ୍ରୀଜଗନ୍ନାଥଙ୍କର ସ୍ୱତନ୍ତ୍ରତା ବିଶ୍ୱ ପ୍ରସିଦ୍ଧ । ଯେପରି ଆତ୍ମାକୁ ଛାଡି ଶରୀରର ପରିକଳ୍ପନା ନିରର୍ଥକ ଠିକ୍ ସେହିପରି ଶ୍ରୀଜଗନ୍ନାଥଙ୍କୁ ଛାଡି ସମସ୍ତ ଚିନ୍ତା ଓ ଚେତନା ଅସାର । ଶ୍ରୀଜଗନ୍ନାଥଙ୍କର ବିଭୂତି ସମୂହର ଅନ୍ତ ନାହିଁ । ତାହା ନୀଳସାଗରର ଉର୍ମିଳା ପରି ଅନନ୍ତ ଓ ଅସୀମ । ମହାପ୍ରଭୁ ହେଉଛନ୍ତି ଅନନ୍ତ କୋଟି ବ୍ରହ୍ମାଣ୍ଡର ପ୍ରାଣକର୍ତ୍ତା ଓ ତ୍ରାଣକର୍ତ୍ତା ତଥା ଭାଗ୍ୟବିଧାତା ଭାବେ ବିଶ୍ୱବିଦିତ । ଶ୍ରୀକ୍ଷେତ୍ର ମଉଡମଣି, ବିଶ୍ୱକଲ୍ୟାଣକାରୀ ନୀଳାଦ୍ରିବିହାରୀ ଶ୍ରୀଜଗନ୍ନାଥ ଯେ କେବଳ ଉତ୍କଳର ଦେବତା, ତା'ନୁହେଁ ମହାପ୍ରଭୁ ଦେବାଧି ପତିଭାବେ ମଧ୍ୟ ଯୁଗେ ଯୁଗେ ପୂଜା ପାଇଆସୁଛନ୍ତି ।

''ନୀଳାଦ୍ରୌ ଶଙ୍ଖମଧ୍ୟେ ଶତଦଳ କମଳେ
ରତ୍ନ ସିଂହାସନ ସ୍ଥମ୍
ସର୍ବାଳଙ୍କାର ଯୁକ୍ତଂ ନବଘନ ରୁଚିରଂ
ସଂଯୁତ ଚାଗ୍ର ଜେନ । ।
ଭଦ୍ରାୟା ବାମଭାଗେ ରଥଚରଣଯୁତଂ
ବ୍ରହ୍ମାରୁଦେନ୍ଦ୍ର-ବନ୍ଧ୍ୟମ
ବେଦାନାଂ ସାରମୀଶଂ ସ୍ୱଜନ ପରିବୃତଂ
ବ୍ରହ୍ମଦାରୁ ଭଜେ ଅହମ୍ ।।''

ଶ୍ରୀକ୍ଷେତ୍ରର ଅଧିପତି ଶ୍ରୀଜଗନ୍ନାଥ ସର୍ବବ୍ୟାପୀ । କେବଳ ଶ୍ରୀମନ୍ଦିରରେ ନୁହେଁ, ଓଡିଶାର ପ୍ରାୟ ସବୁ ସ୍ଥାନରେ ବିଭିନ୍ନ ନାମରେ ତାଙ୍କୁ ପୂଜାର୍ଚ୍ଚନା କରାଯାଏ ଏବଂ ଶ୍ରୀମନ୍ଦିର ପରି ସବୁ ମନ୍ଦିରମାନଙ୍କରେ ମଧ୍ୟ ବହୁ ରୀତିନୀତିରେ ବିଧିବଦ୍ଧଭାବେ ପାଳନ କରାଯାଇଥାଏ । ଶ୍ରୀମନ୍ଦିର ପରି ସମସ୍ତ ଜଗନ୍ନାଥ ମନ୍ଦିରରେ ରଥଯାତ୍ରା, ସ୍ନାନପୂର୍ଣ୍ଣିମା, ଚନ୍ଦନଯାତ୍ରା, ଝୁଲଣ ଯାତ୍ରା ଇତ୍ୟାଦି ପାଳନ କରାଯାଇଥାଏ ।



ଆଷାଢମାସ ଶୁକ୍ଳପକ୍ଷ ଦ୍ୱିତୀୟା ଜଗତର ନାଥ ଶ୍ରୀଜଗନ୍ନାଥଙ୍କର ପବିତ୍ର ଘୋଷଯାତ୍ରା । ପତିତମାନଙ୍କ ଉଦ୍ଧାର ନିମନ୍ତେ ବଡଭାଇ ବଳଭଦ୍ର ଓ ଚାନ୍ଦମୁହିଁ ଭଉଣୀ ସୁଭଦ୍ରାଙ୍କ ସହିତ ଜଗନ୍ନାଥ ରତ୍ନ ସିଂହାସନ ଛାଡି ଓହ୍ଲାଇ ଆସିବେ ବଡଦାଣ୍ଡକୁ । ସେବାୟତମାନଙ୍କ ଗହଣରେ ମହାପ୍ରଭୁ ଟାହିଆ ହଲେଇ ହଲେଇ ପହଣ୍ଡିରେ ଆସି ରଥାରୂଢ ହେବାପରେ ମହାପ୍ରଭୁଙ୍କର ଆଦ୍ୟସେବକ ଲକ୍ଷେ ରାଜାର ମଉଡମଣି ଗଜପତି ମହାରାଜା କରିବେ ଛେରାପହଁରା । ତା'ପରେ ଯାଇ ଲକ୍ଷ ଲକ୍ଷ ଭକ୍ତ ରଥ ଦଉଡିକୁ ଧରି ଟାଣିନେବେ ଗୁଣ୍ଡିଚା ମନ୍ଦିର ଆଡକୁ ।

ଆଗରେ ତାଳଧ୍ୱଜ ରଥରେ ବଡଭାଇ ବଳଭଦ୍ର, ମଝିରେ ଦର୍ପଦଳନ ରଥରେ ହଳଦୀମୁହିଁ ଭଉଣୀ ସୁଭଦ୍ରା ଓ ସବା ଶେଷରେ ଗହଳି ଲଗାଇ ନନ୍ଦିଘୋଷ ରଥରେ ବସି ବାହାରିବେ କାଳିଆ ଠାକୁର ଶ୍ରୀଗୁଣ୍ଡିଚା ମନ୍ଦିରରେ ଥିବା ମାଉସୀଘରକୁ । ଏତିକି ବେଳେ ହେ ମହାବାହୁ, ହେ ମଣିବା, ହେ ଜଗନ୍ନାଥ ସ୍ୱାମୀ, ହେ ନୟନପଥଗାମୀ, ହେ ଦୀନବନ୍ଧୁ,ହେ ସ୍ୱାମୀ ଅନ୍ତର୍ଯ୍ୟାମୀ ଇତ୍ୟାଦି ଭକ୍ତମାନଙ୍କ ଡାକରାରେ ଗଗନ ପବନ ପ୍ରକମ୍ପିତ ହୋଇଉଠେ । ଅନେକ ଭକ୍ତ ଭାବବିହ୍ୱଳ ହୋଇ ଗାଇଥାନ୍ତି ଆଗେ ଚାଲେ ବଳଭଦ୍ର, ମଧ୍ୟେ ଚାନ୍ଦ ମୁହିଁରେ, ପଛରେ ଆସୁଛି କାଳିଆ ଗହଳ ଲଗାଇ ।

ଦାରୁବ୍ରହ୍ମ ଶ୍ରୀଜଗନ୍ନାଥ ହେଉଛନ୍ତି ଭକ୍ତର ଭଗବାନ । ସର୍ବଧର୍ମ ସମନ୍ୱୟର ଦେବତା ବୋଲି ମଧ୍ୟ ତାଙ୍କୁ କୁହାଯାଏ । ତିନି ରଥକୁ ଟାଣି ଟାଣି ଗୁଣ୍ଡିଚା ମନ୍ଦିର ନିକଟରେ ରଖାଯାଏ । ମାଉସୀ ମା ଗୁଣ୍ଡିଚା ମନ୍ଦିରରେ ତିନି ଠାକୁର ୯ଦିନ ରହିଥାନ୍ତି । ଦଶମୀ ଦିନ ବାହୁଡା ଯାତ୍ରା ହୋଇଥାଏ । ସେହିଦିନ ତିନି ଦିଅଁଙ୍କୁ ପୁନଃଶ୍ଚ ରଥରେ ବସାଇ ରଥଦଉଡିକୁ ଟାଣି ଟାଣି ସିଂହଦ୍ୱାର ସମ୍ମୁଖକୁ ଅଣାଯାଇଥାଏ । ଏହା ପରଦିନ ତିନିଠାକୁରଙ୍କୁ ସୁନାବେଶ କରାଯାଏ । ତାପରେ ତିନିଠାକୁର ରୀତି ନୀତି ଅନୁସାରେ ବଡଦେଉଳ ବା ଶ୍ରୀମନ୍ଦିରକୁ ବିଜେ କରିଥାନ୍ତି । ଏହାକୁ ନୀଳାଦ୍ରି ବିଜେ ବୋଲି ମଧ୍ୟ କୁହାଯାଇଥାଏ ।

ନିର୍ଦ୍ଦିଷ୍ଟ ତିଥିରେ ନନ୍ଦିଘୋଷ ରଥର ନିର୍ମାଣ କାର୍ଯ୍ୟ ହୋଇଥାଏ । ଶାସ୍ତ୍ରର ବିଧି ଅନୁସାରେ ଏହି ରଥରେ ୭୪୨ଖଣ୍ଡ କାଠ ଲାଗି ହୋଇଥାଏ । ଏହି ରଥରେ ୧୬ଟି ଚକ ଲାଗିଥାଏ । ପ୍ରତ୍ୟେକ ଚକର ଉଚ୍ଚତା ୬ଫୁଟ, ନନ୍ଦିଘୋଷ ରଥର ଉଚ୍ଚତା ୪୫ ଫୁଟ ୬ ଇଞ୍ଚ, ଚକଗୁଡିକର ନାମ ହେଉଛି- ବିଷ୍ଣୁସିଦ୍ଧ, ବିଭୂତି, ଅଣିମା, ପ୍ରଜ୍ଞା, ଧୀ, ଜ୍ଞାନ, ପ୍ରେମ, ଆଶକ୍ତ, ରତି, କେଳି, ସତ୍ୟ, ସୁସ୍ୱସ୍ତି, ଜାଗୃତି, ତୁରୀୟ, ଆମନିର୍ବାଣ । ଫୁଲମୋଚା ଓ ଉର୍ବଶୀ ହେଉଛନ୍ତି ରଥ ଅପସରୀ । ରଥର ନେତର ନାମ ତ୍ରୈଲୋକ୍ୟ ମୋହିନୀ । ରଥ ଭୈରବି ହେଉଛନ୍ତି ଏକପାଦ । ରଥ ରକ୍ଷକ ହେଉଛନ୍ତି ଇନ୍ଦ୍ର ଓ ଇନ୍ଦ୍ରାଣୀ । ଏହି ରଥର ପାଦଦେଶରୁ ଶୀର୍ଷଭାଗ ପର୍ଯ୍ୟନ୍ତ ରହିଥିବା ବିଭିନ୍ନ ଅଂଶର ଭିନ୍ନ ଭିନ୍ନ ନାମ ରହିଛି, ଯଥା-ଚକ, ଦଣ୍ଡିଆ, ଅର, ବାଙ୍କି ହଂସପଟା, କଣି, ସିଂହାସନ,କନକ ମୁଣ୍ଡେଇ, ଭୂମି, ଶୋଳନାହାକ, ମଗର ଦଣ୍ଡା ବସନ୍ତ, ଦୂଆର ଘୋଡା, ସରଥିପୀଡ, କୁମ୍ଭପଟି ରାହୁପଟି, ଆଠନାହାକ, ପୀଢ, ରକ୍ଷିପଟା, ଦଣ୍ଡା, ପାରାଭାଡି, ଖପୁରୀପାଦ, ଓଲଟ ଶୁଆ, ଦଧିନଉତି, କଣ୍ଟିଦଣ୍ଡ ଚକ୍ର ଓ କେତନ । ଏହି ରଥର ମୁଖ୍ୟ ଅଂଶଗୁଡିକ ହେଲା ଚକ୍ରପୀଠ, ଅରଦଣ୍ଡା, ଗଗରା, ମୂଳନାଭ, ବରାଣ୍ଡି, ହଂସପଟା, ରଥଗର୍ଭ, ପାରାଭାଡି, କଳସପୀଠ, ଦଧିନଉତି, କର୍ଣ୍ଣଅଳା, ଧାତୁ କଳସ ଓ ଆୟୁଧଧ୍ୱଜ ।

ନନ୍ଦିଘୋଷ ରଥରେ ମହାପ୍ରଭୁଙ୍କ ସହ ବିଜେ ହୋଇଥାନ୍ତି ଚଳନ୍ତି ପ୍ରତିମା ପ୍ରଭୁ ମଦନମୋହନ । ଏହି ରଥରେ ଶ୍ୱେତରଙ୍ଗର ଚାରି ଗୋଟି ଘୋଡା ଖଞ୍ଜା ଯାଇଥାଏ । ସର୍ବବ୍ୟାପି ଉଦାରତା ହେଉଛି ଏହି ଧଳାରଙ୍ଗର ମହତ୍ୱ ଓ ପବିତ୍ରତାର ପ୍ରତୀକ ମଧ୍ୟ । ଚାରି ଘୋଡାର ନାମ ହେଉଛି ଶଙ୍ଖ, ବାଳାହକ, ଶ୍ୱେତ, ହରିଦ୍ୱାଶ । ଏହି ରଥରେ ଚାରିଗୋଟି ରଥଦଉଡି ଲାଗି ହୋଇଥାଏ । ଏହି ଦଉଡିର ନାମ ଶଙ୍ଖ ଚୂଡ ନାଗୁଣୀ ।

ରଥର ଆବରଣ ହେଉଛି ପୀତ ଓ ଲୋହିତ । ଏହି ରଙ୍ଗ ଶକ୍ତି ଓ ସର୍ବମଙ୍ଗଳ ରୂପକ ରୂପେ ସର୍ବଗ୍ରହଣୀୟ । ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ବସ୍ତ୍ର ଅନୁସାରେ ରଥାବରଣ କରାଯାଇଛି ବୋଲି ବିଶ୍ୱାସ କରାଯାଉଛି । ରଥ ଆୟୁଧର ନାମ ଶଙ୍ଖଚକ୍ର । ରଥର ଦ୍ୱାରପାଳ ହେଉଛନ୍ତି, ଜୟ ବିଜୟ, ଜୀବ, ପରମ, ଶୁକ । ଏମାନେ ରଥ ଉପରେ ଅଧିଷ୍ଠିତ ହୋଇଥାନ୍ତି । ରଥଦେବୀ ହେଉଛନ୍ତି ଯୋଗମାୟା । ରଥର ଶୀର୍ଷ ଭାଗରେ ହିରଣ୍ୟଗର୍ଭ ଦଧି ନଉତି ଉପରେ ସୁଦର୍ଶନ ଶୂନ୍ୟଚକ୍ର ଶୋଭାପାଉଛି । ରଥ କଳସ ତ୍ରୟର ନାମ ହେଉଛି ନଭ, ଆକାଶ, ବ୍ୟୋମ । ଦାରୁକ ହେଉଛନ୍ତି ଏହି ରଥର ସାରଥି । ସ୍ଫଟିକ୍ ହେଉଛି ନନ୍ଦିଘୋଷ ରଥର ରତ୍ନ, ନନ୍ଦିଘୋଷ ରଥର ରକ୍ଷକ ହେଉଛନ୍ତି ଇନ୍ଦ୍ର । ରଥର ଗର୍ଭାଧିଶ୍ୱର ହିରଣ୍ୟଗର୍ଭା, ଉତ୍କର୍ଷଣୀ କ୍ରିୟା ଯୋଗ ବିୟୋଗ, ଆଜ୍ଞା ଅନୁଜ୍ଞା, ପ୍ରଜ୍ଞା ଓ ମେଧାଙ୍କ ସହ ପ୍ରଭୁ ଘୋଷଯାତ୍ରା କରୁଛନ୍ତି । ନନ୍ଦିଘୋଷ ରଥ ଚାରିପାର୍ଶ୍ୱରେ ହରିହର ପଣ୍ଡୁ ଋଷି, ଗିରି ଗୋବର୍ଦ୍ଧନଧାରୀ ରାବଣ ଛତ୍ରଭଙ୍ଗ, ଚିନ୍ତାମଣି କୃଷ୍ଣ, ନାରାୟଣ ମଧୁସୂଦନ, ଲକ୍ଷ୍ମଣ ପଞ୍ଚମୁଖୀ ମହାବୀର ପାର୍ଶ୍ୱଦେବତାଭାବେ ବିଜେ ହୋଇଥାନ୍ତି । ଏହି ରଥ କୁମ୍ଭର ନାମ ହିରଣ୍ମୟ । ଜଗନ୍ନାଥଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦ ବିଗ୍ରହଃ ଅନାଦି ରାଜି ଗୋବିନ୍ଦଃ ସର୍ବ କାରଣ କାରଣଃ ।

---

ଗ୍ରା/ପୋ ମହୁଲିଆ
ଭାୟା-ବଡମ୍ବା, ଜିଲ୍ଲା-କଟକ





# ଶ୍ରୀଜଗନ୍ନାଥଙ୍କ ସେବାରେ ରାଘବ ଦାସ ମଠ

ଅପୂର୍ବ ରଂଜନ ରାୟ



ମହାପ୍ରଭୁ ଶ୍ରୀଜଗନ୍ନାଥ ଶ୍ରୀକ୍ଷେତ୍ର ପୁରୀରେ ପୂଜିତ ହେବା ଦିନ ଠାରୁ ତାଙ୍କ ସେବା ପାଇଁ ବିଭିନ୍ନ ପ୍ରକାର ବ୍ୟବସ୍ଥା କରାଯାଇଛି । ଏଥିପାଇଁ ସେବକ ଓ ସେବାୟତମାନେ ନିଯୁକ୍ତ ହୋଇଛନ୍ତି । ଅକୁଣ୍ଠ ଚିତ୍ତରେ ଭକ୍ତ ମହାପ୍ରଭୁଙ୍କୁ ସେବା କରିବା ପାଇଁ ପରମ ସୌଭାଗ୍ୟ ମନେ କରିଥାଏ । ଏ ଦିଗରେ ଭକ୍ତ ସମସ୍ତ ଦୁଃଖ, ବାଧା ଓ ବନ୍ଧନକୁ ଦୃଷ୍ଟି ଦିଏନାହିଁ । କେବଳ ମାତ୍ର ମହାପ୍ରଭୁଙ୍କୁ ସେବା କରିବାରେ ଭକ୍ତ ନିଜକୁ ଉତ୍ସର୍ଗ କରି ତୃପ୍ତ ହୋଇଥାଏ । ଏହି ସେବା କାର୍ଯ୍ୟରେ ପୁରୀରେ ଥିବା ରାଘବଦାସ ମଠର ଭୂମିକାକୁ ଅବହେଳା କରିହେବ ନାହିଁ । ଏହା ୧୬ଶ ଶତାବ୍ଦୀରେ ସ୍ଥାପିତ ହୋଇଥିଲା । ଭକ୍ତ ରଘୁଦାସ ହେଉଛନ୍ତି ଏହାର ପ୍ରତିଷ୍ଠାତା । ତାଙ୍କ ଘର ହେଉଛି ପଶ୍ଚିମ ଭାରତରେ । ରାମାନୁଜ ସମ୍ପ୍ରଦାୟର ଯେଉଁ ୧୫ ଗୋଟି ମଠ ପୁରୀରେ ରହିଛି ସେଗୁଡ଼ିକ ମଧ୍ୟରୁ, ରାଘବଦାସ ମଠ ଅନ୍ୟତମ । ଶ୍ରୀଜଗନ୍ନାଥ ଓ ରାଘବଦାସ ମଠ ଅଭିନ୍ନ, ଏହା ଏହି ସେବା ପୂଜା ବ୍ୟବସ୍ଥାରୁ ପ୍ରତିୟମାନ ହୋଇଥାଏ । ଏଦିଗରେ ଏହି ମଠକୁ ବଦାନ୍ୟ ବ୍ୟକ୍ତିମାନେ ଜମିଦାନ କରିଛନ୍ତି । ରାଜା ଓ ଜମିଦାରମାନେ ଜମିଦାନ କରି ଏପରି ବ୍ୟବସ୍ଥାରେ ସହାୟତା କରିଆସିଛନ୍ତି । ସେହି ପରମ୍ପରା ଆଜି ବି ରାଘବଦାସ ମଠରେ ପରିଲକ୍ଷିତ ହୋଇଥାଏ ।

ଦେବସ୍ନାନ ପୂର୍ଣ୍ଣିମା ଜଗନ୍ନାଥଙ୍କର ଗୋଟିଏ ପ୍ରଧାନ ପର୍ବ । କେହି କେହି ଏହାକୁ ସ୍ନାନ ଯାତ୍ରା ବୋଲି କହିଥାଆନ୍ତି । ଏହି ଯାତ୍ରା ପାଇଁ 'ରାଘବଦାସ ମଠ'ର ଭୂମିକା ରହିଛି । ପ୍ରଭୁଙ୍କର ଦ୍ୱାଦଶ ଯାତ୍ରା ଭିତରୁ ଏହା ହେଉଛି ପ୍ରଥମ ପର୍ବ । ଜ୍ୟେଷ୍ଠ ମାସ ପୂର୍ଣ୍ଣିମା ପକ୍ଷରେ ଏହି ଉତ୍ସବ ପାଳିତ ହୁଏ । ଏହି ଯାତ୍ରା ଜଗନ୍ନାଥଙ୍କର ଜନ୍ମ ଉତ୍ସବ ଭାବରେ ପରିଚିତ । ଜଗନ୍ନାଥ ଜ୍ୟେଷ୍ଠ ମାସ ପୂର୍ଣ୍ଣିମା ତିଥିରେ ଜନ୍ମ ହୋଇଥିଲେ ବୋଲି ପୁରାଣରେ ବର୍ଣ୍ଣିତ ହୋଇଛି । ସେହି ଦିନ ମନ୍ଦିରରୁ ଠାକୁରମାନଙ୍କୁ ସ୍ନାନ ମଣ୍ଡପକୁ ଅଣାଯାଏ । ପରେ ପରେ ମଦନ ମୋହନ ସେଠାରେ ବିଜେ ହୁଅନ୍ତି । ମନ୍ଦିରରୁ ସ୍ନାନ ମଣ୍ଡପକୁ ଆସିବା ସମୟରେ ଠାକୁରଙ୍କର ଯେଉଁ ପହଣ୍ଡି ବିଜେ ହୁଏ, ସେତେବେଳେ ଠାକୁରଙ୍କ ଚୂଳରେ ବ୍ୟବହୃତ ଦୁବଟାହିୟା ରାଘବଦାସ ମଠରୁ ଆସେ । ବିଗ୍ରହମାନେ ଏହି ଅବସରରେ ଯେତେବେଳେ ସାତ ପାହାଚ ପାଖରେ ପହଞ୍ଚନ୍ତି, ସେତେବେଳେ ରାଘବଦାସ ମଠରୁ ଆସିଥିବା ଦୁବଟାହିଆ ସେମାନଙ୍କ ମସ୍ତକରେ ଲଗାଯାଏ । ପରେ ପାରମ୍ପରିକ ନୀତି ଆରମ୍ଭ ହୁଏ । ସାତ ପାହାଚ ପାଖକୁ ବିଗ୍ରହମାନେ ଆସିଗଲା ମାତ୍ରେ, ନିଶ୍ଚୟ ରାଘବଦାସଙ୍କ ଟାହିୟାକୁ ଅପେକ୍ଷା କରାଯାଏ । ଏଠାରେ ଅନ୍ୟଏକ କଥା ଉଲ୍ଲେଖ କରାଯାଇପାରେ । ଏହି ଉତ୍ସବ ପାଇଁ ସବୁ ଠାକୁରଙ୍କ ପାଇଁ ରାଘବଦାସ ମଠରୁ ବେଶ ଆସେ ନାହିଁ । ଦୁଇ ଠାକୁରଙ୍କୁ ବେଶ କରିବାର ଦାୟିତ୍ୱ ରାଘବଦାସ ମଠ ନେଇଛି । ବଡ ଠାକୁରଙ୍କ ପାଇଁ ଗୋପାଳ ତୀର୍ଥ ମଠ ବେଶ ଦେଇଥାଏ । ଲେଙ୍କା ଓ ପାଇକମାନେ ବାଦ୍ୟ ବଜାଇ ବଡ଼ ଠାକୁରଙ୍କ ବେଶ ଆଣିବା ପାଇଁ ଯାଆନ୍ତି । ଠିକ୍ ଜଳଲାଗି ସରିଲା ପରେ ପରେ, ଦୁଇ ମଠରୁ ଏହି ବେଶ ଆସିଥାଏ ।

ଏଠାରେ ରାଘବ ଦାସ ମଠ ସହିତ ଠାକୁରଙ୍କ ପୂଜାର ସଂପର୍କ ଲକ୍ଷ୍ୟ କରାଯାଇପାରେ । ପ୍ରତିବର୍ଷ ଜଗନ୍ନାଥ ଓ ସୁଭଦ୍ରାଙ୍କ ହାତୀ ବେଶ ପାଇଁ ରାଘବଦାସ ମଠ ପୋଷାକ ଦିଏ । ଏହି ପୋଷାକ ଠାକୁର ପିନ୍ଧି ସାରିଲା ପରେ, ମଠ ମହନ୍ତଙ୍କୁ ଶାଢ଼ୀ ଦିଆଯାଏ । ତାଙ୍କ ମୁଣ୍ଡରେ ଭିତରଚ୍ଛୁ ମହାପାତ୍ର ଏହି ଶାଢ଼ୀ ବାନ୍ଧି ଦିଅନ୍ତି । ଶାଢ଼ୀ



ବନ୍ଧାବେଳେ, ଦେଉଳ କରଣ ଓ ଚଢ଼ାଉ କରଣ ଉପସ୍ଥିତ ରହନ୍ତି । ଭିତରଛୁ ମହାପାତ୍ର, ଚାଙ୍ଗଡ଼ା ମେକାପଠାରୁ ଶାଢ଼ୀ ଆଣନ୍ତି । ମହନ୍ତଙ୍କୁ ସେତେବେଳେ ସମ୍ମାନ ସ୍ୱରୂପ ଚନ୍ଦନ ଦିଆଯାଏ । ଭିତରଛୁ ମହାପାତ୍ର ତାଙ୍କ ମୁଣ୍ଡରେ ଶାଢ଼ୀ ବାନ୍ଧି ଦେବା ମାତ୍ରେ ଭଣ୍ଡାର ମେକାପ କପାଳରେ ଚନ୍ଦନ ବୋଳି ଦିଅନ୍ତି । ରାଘବଦାସ ମଠ ରଥଯାତ୍ରା ବେଳେ ଠାକୁରଙ୍କ ପାଇଁ ଟାହିୟା ଦେଇଥାଏ । ଯେତେବେଳେ ଠାକୁର ଶ୍ରୀଗୁଣ୍ଡିଚା ଓ ବାହୁଡ଼ା ଯାତ୍ରା ବେଳେ ରଥକୁ ବିଜେ କରନ୍ତି, ସେତେବେଳେ ମଠ ପକ୍ଷରୁ ଟାହିଆ ଦିଆଯାଇଥାଏ । ପୁଣି ସେତେବେଳେ ଠାକୁର ରଥଯାତ୍ରା ପରେ, ମନ୍ଦିରକୁ ଆସନ୍ତି, ସେତେବେଳେ ମଧ୍ୟ ମଠ ଏହି ଟାହିୟା ଦିଏ । ରାଘବ ଦାସ ମଠ ପକ୍ଷରୁ ଠାକୁରଙ୍କ ପାଇଁ ଚକଟା ଭୋଗ ଦେବାର ବିଧି ରହିଛି । ଚକଟା ଭୋଗ, ଧୁଆ ମୁଗ ଓ ପଣସ ପ୍ରଭୃତିରେ ପ୍ରସ୍ତୁତ କରାଯାଏ । ଏହା 'ମୈଲମ ଭୋଗ' ଭାବରେ ମଧ୍ୟ ପରିଚିତ । ଅଣସର ବେଳେ ଠାକୁରଙ୍କ ପାଖରେ ଏହି ଭୋଗ ଲାଗେ । ପହଡ଼ ପଡ଼ିବା ପୂର୍ବରୁ ଠାକୁରଙ୍କ ପାଖରେ ଏହି ଭୋଗ ଲଗାଯାଏ । ଏହି ସମୟରେ ଦିଅଁମାନେ ଅଣସର ଘରେ ଥାଆନ୍ତି । ଏହି ସମୟରେ ଦଶାବତାର ଠାକୁର ପୂଜା ପାଉଥାନ୍ତି । ରାତିରେ ତାଙ୍କର ବଡସିଂହାର ଭୋଗ ଶେଷ ହୁଏ । ଏହି ଭୋଗ ପରେ ଅଣସର ଘରେ ମହାପ୍ରଭୁଙ୍କର ଚକଡ଼ା ଭୋଗ ହୋଇଥାଏ । ଭୋଗ ଶେଷରେ ଠାକୁରଙ୍କ ପହଡ଼ ପଡ଼େ ।

ରାଘବଦାସ ମଠ ପକ୍ଷରୁ କାଠ ନିର୍ମିତ କନକମୁଣ୍ଡି ଦିଆଯାଏ । ଏହା ସହିତ ପ୍ରଭା ମଧ୍ୟ ମଠ ପକ୍ଷରୁ ନିର୍ମିତ ହୁଏ । ଅଣସର ପିଣ୍ଡ ପାଇଁ ଏହି କନକମୁଣ୍ଡି ଓ ପ୍ରଭା ବ୍ୟବହୃତ ହୋଇଥାଏ । ଅଣସର ପିଣ୍ଡିରେ, ମଠ ପକ୍ଷରୁ କାଠରେ ନିର୍ମିତ କନକମୁଣ୍ଡି ଓ ପ୍ରଭା ଖଞ୍ଜାଯାଏ । ସ୍ନାନ ବେଦୀରୁ ଠାକୁରମାନେ ଆସିବା ପରେ ଶ୍ରୀମନ୍ଦିରର ରତ୍ନସିଂହାସନକୁ ଯାଆନ୍ତି ନାହିଁ । ଅଣସର ଘରେ ରହନ୍ତି । ଏହି ସମୟରେ ଠାକୁରମାନେ ଅଣସର ପିଣ୍ଡିରେ ବସି ପୂଜା ପାଆନ୍ତି । ସାଧାରଣ ଭକ୍ତଙ୍କ ପାଇଁ ଏହି ସମୟରେ ଠାକୁରମାନେ ଦର୍ଶନ ଦିଆନ୍ତି ନାହିଁ । ସ୍ନାନ ପୂର୍ଣ୍ଣିମାଠାରୁ ଆଷାଢ଼ ମାସ ଅମାବାସ୍ୟା ପର୍ଯ୍ୟନ୍ତ ଠାକୁର ଅଣସର ଘରେ ରହିଥାଆନ୍ତି । ଏହି ସମୟ ପାଇଁ ରାଘବଦାସ ମଠ ପକ୍ଷରୁ ଯେଉଁ କନକମୁଣ୍ଡି ଓ ପ୍ରଭା ନିର୍ମିତ ହୁଏ, ତାହା ଯେପରି ନିର୍ଦ୍ଦିଷ୍ଟ ସମୟରେ ପହଞ୍ଚିପାରିବ, ସେଥିପ୍ରତି ଦୃଷ୍ଟି ଦିଆଯାଇଥାଏ । ଠାକୁରଙ୍କ ପାଇଁ ଯେଉଁ ଫୁଲର ଟାହିୟା ପ୍ରସ୍ତୁତ ହୁଏ, ତାହା ଯେପରି ଯତ୍ନର ସହତି ହୋଇପାରିବ ସେଥିପ୍ରତି ମଠର କର୍ମକର୍ତ୍ତା ଦୃଷ୍ଟି ଦିଅନ୍ତି । ରାଘବଦାସ ମଠର ଭୂମିକା ଶ୍ରୀଜଗନ୍ନାଥଙ୍କ ଅଧରପଣା ଭୋଗରେ ରହିଛି । ଏହି ପଣାଭୋଗ ପ୍ରଭୁଙ୍କ ବାହୁଡ଼ା ଯାତ୍ରା ପରେ ହୋଇଥାଏ । ଏହି ପଣା ଭୋଗ ପ୍ରସ୍ତୁତି ପାଇଁ ସଂପୃକ୍ତ ମଠ କଦଳୀ ଓ ଛେନା ପ୍ରଭୃତି ଦେବାର ଦାୟିତ୍ୱ ନେଇଛି । ପହଣ୍ଡି ବେଳେ ମଠ ପକ୍ଷରୁ ଦୁବଚୁଳ ଓ ଫୁଲର ଟାହିୟା ଯୋଗାଯିବାର ବ୍ୟବସ୍ଥା ହୋଇଛି । ଏହି ପଣା ଭୋଗ ଅତ୍ୟନ୍ତ ସୁସ୍ୱାଦୁକର ।

ମହାପ୍ରଭୁଙ୍କ ହାତୀ ବେଶ ସହିତ ରାଘବଦାସ ମଠର ସଂପର୍କ ରହିଛି । ଉକ୍ତ ରଘୁ ଅରକ୍ଷିତଙ୍କ ସଂପ୍ରଦାୟର ଶିଷ୍ୟ ଶ୍ରୀ ମଧୁସୂଦନଙ୍କ ପାଇଁ ମହାପ୍ରଭୁଙ୍କର ଏହି ବେଶ ହୋଇଥିବା କଥିତ ଅଛି । ବୈଷ୍ଣବ ଦାସ ଗଣପତି ଭଟ୍ଟଙ୍କ ଦ୍ୱାରା ଉତ୍ସାହିତ ଓ ପ୍ରଭାବିତ ହୋଇ, ଶିଷ୍ୟ ମଧୁସୂଦନ ଜଗନ୍ନାଥଙ୍କର 'ହାତୀବେଶ'ର ପରିକଳ୍ପନା କରିଥିଲେ। ସେହିଦିନ ଠାରୁ ଏହି ବେଶ ଚାଲି ଆସିଛି ବୋଲି ଗବେଷକଙ୍କ ମତ । ମହାପ୍ରଭୁ ରାଘବଦାସ ମଠରୁ ଆସିଥିବା ପୋଷାକରେ ଦେବସ୍ନାନ ମଣ୍ଡପରେ 'ହାତୀବେଶ' ହୁଅନ୍ତି । ଜଗନ୍ନାଥଙ୍କ ନେତ୍ରୋତ୍ସବରେ ରାଘବ ଦାସ ମଠର ଦାୟିତ୍ୱ ରହିଛି । ଏହି ଉପଲକ୍ଷେ ଠାକୁରଙ୍କ ଶୁକ୍ଳସଜ କରାଯାଏ । ଏହି ସଜ ପାଇଁ ଆବଶ୍ୟକୀୟ ସମସ୍ତ ଉପାଦାନ ରାଘବ ଦାସ ମଠ ପକ୍ଷରୁ ଆସେ । ମଠରୁ ଶୁକ୍ଳସଜ ନ ଆସିବାଯାଏ, ଠାକୁରଙ୍କର ଏପରି ସଜ ହୁଏନା । ଆଳତି ପୂର୍ବରୁ ଏପରି ସଜ କରାଯାଏ । ଛ' ଖଣ୍ଡ ଶୁକ୍ଳମଣ୍ଡପରେ ଚାଦର, ଛ' ଖଣ୍ଡ କୁସୁମ ଚାଦର, ଚାରିଗଜ ଲମ୍ବ ବିଶିଷ୍ଟ ଶୁକ୍ଳ ବର୍ଣ୍ଣର ମୁଠି ମାଠ ଓ କୋଡିଏ ଗଜ ଲମ୍ବ ବିଶିଷ୍ଟି ମାର୍କିନ କନା । ଶୁକ୍ଳସଜ ପାଇଁ ଆବଶ୍ୟକ ହୋଇଥାଏ । ଏହା ସହିତ ବାରରୁ ଚଉଦ ହାତ ଲମ୍ବ ବିଶିଷ୍ଟ ସେନାପଟ୍ଟା ଓ ବୟାଳିଶି ଖଣ୍ଡ ଲାଗିଗଡ଼ା ଦରକାର ପଡ଼େ । ଦୁଇ ଖଣ୍ଡ ଅଧର କୁସୁମି ଓ ନଅ ଖଣ୍ଡ କାନୁଆସି ପଡ଼ା ଆବଶ୍ୟକ ହୁଏ । ଏସବୁ ସହିତ ଦୁଇଗୋଟି ତୂଳୀ ମଧ୍ୟ ଶୁକ୍ଳ ସଜ ପାଇଁ ରାଘବ ଦାସ ମଠ ପକ୍ଷରୁ ଦିଆଯାଏ । ଏସବୁ ସାହାଯ୍ୟରେ ଶୁକ୍ଳସଜ କରାଯାଏ । କେବଳ ନେତ୍ରୋତ୍ସବ ଦିନ ଏହି ସଜ କରାଯାଏ ନାହିଁ । ମଠ ପକ୍ଷରୁ ଦିଆଯାଇଥିବା ସଜ ସରଞ୍ଜାମରେ ନବମୀ ଦିନ ରାତିରେ ମଧ୍ୟ ଠାକୁରଙ୍କ ଶୁକ୍ଳସଜ କରାଯାଏ । ମଠର ଦାୟିତ୍ୱରେ ଥିବା ମଠାଧୀଶ ଏହି ସରଞ୍ଜାମରୁ ଯେପରି ଗୋଟିଏ ହେଲେ ଅଭାବ ନରହେ, ସେଥିପ୍ରତି ଦୃଷ୍ଟି ରଖିଥାଆନ୍ତି ।

ରାଘବ ଦାସ ମଠର ଦାୟିତ୍ୱ ଏତିକିରେ ଶେଷ ହୁଏ ନାହିଁ । ଠାକୁରଙ୍କର ବିଭିନ୍ନ ଯାନିଯାତ୍ରା ଓ ପର୍ବପର୍ବାଣିରେ ଭିନ୍ନ ଭିନ୍ନ ଭୋଗ

ସାମଗ୍ରୀ ଯୋଗାଇବାର ଦାୟିତ୍ୱ, ଏହି ମଠ ନେଇଛି । ଏହି ଭୋଗକୁ ପନ୍ତିଭୋଗ କୁହାଯାଏ । ରାଘବ ଦାସ ମଠ ପନ୍ତିଭୋଗ ଯୋଗାଉଥିବା ଉତ୍ସବଗୁଡ଼ିକ ମଧ୍ୟରେ ଜଗନ୍ନାଥଙ୍କର ଦେବ ଦୀପାବଳୀ ଅନ୍ୟତମ । ପ୍ରତିବର୍ଷ ମହାପ୍ରଭୁଙ୍କର ହେଉଥିବା ୨୧ ଦିନ ଧରି ଚନ୍ଦନ ଯାତ୍ରାରେ ମଠ ପନ୍ତି ଭୋଗର ବ୍ୟବସ୍ଥା କରେ । ହେରା ପଞ୍ଚମୀ, ଦଶହରା ଓ ବସନ୍ତ ପଞ୍ଚମୀରେ ଠାକୁରଙ୍କ ପାଇଁ ପନ୍ତିଭୋଗର ବ୍ୟବସ୍ଥା ଏହି ମଠ ପକ୍ଷରୁ ହୋଇଥାଏ । ଏତଦ୍‌ବ୍ୟତୀତ ରାଧାଷ୍ଟମୀ, ମାଘ ଦୁଧ ମେଲାଣ, କୁମାର ପୂର୍ଣ୍ଣମୀ, ନୃସିଂହ ଜନ୍ମ, ଗୁଣ୍ଡିଚା, ବାହୁଡ଼ା ଯାତ୍ରା, ଦେବସ୍ନାନ ପୂର୍ଣ୍ଣମୀ ଓ ଅଗ୍ନି ଉତ୍ସବ ପ୍ରଭୃତି ଯାତ୍ରା ପାଳନ ରେ ସଂପୃକ୍ତ ମଠ ପକ୍ଷରୁ ପନ୍ତିଭୋଗ କରାଯାଏ । ଜଗନ୍ନାଥଙ୍କ ସେବା ପୂଜାରେ ସହଯୋଗ କରିବା ପାଇଁ ମଠ ନିମନ୍ତେ ଜମିର ବ୍ୟବସ୍ଥା କରାଯାଇଛି ।

ତେବେ ଆଜି ଖର୍ଚ୍ଚ ବହୁଳ ସମୟରେ ମଠ ଦାୟିତ୍ୱରେ ଥିବା ମଠାଧୀଶମାନେ ପୂଜା ପର୍ବରେ ମହାପ୍ରଭୁଙ୍କୁ ପୂର୍ବର ବିଧିବ୍ୟବସ୍ଥା ଅନୁଯାୟୀ ସେବା ପୂଜାର ସୁଚାରୁ ବ୍ୟବସ୍ଥା କରୁଥିବା ଲକ୍ଷ୍ୟ କରାଯାଏ । ମଠର କର୍ମକର୍ତ୍ତାମାନେ ଏହି ସହଯୋଗରେ ବ୍ୟତିକ୍ରମ ନ ହେବା ପ୍ରତି ଧ୍ୟାନ ଦେଇଥାଆନ୍ତି । ଏହି ମଠ ଶ୍ରୀମନ୍ଦିରର ବିଭିନ୍ନ ପୂଜା ଅର୍ଚ୍ଚନାରେ ସହଯୋଗୀ ସଂଗଠନ ସେବକ ରୂପେ ଯେପରି ସହାୟତା କରି ଆସୁଛି, ତା'ର ପଟାନ୍ତର ନାହିଁ । ମହାପ୍ରଭୁ ଯେତେବେଳେ ଅଣସର ଘରେ ଥାଆନ୍ତି, ସେତେବେଳେ ଏହି ମଠ ପକ୍ଷରୁ ଅଣସର ଏକାଦଶୀ ଦିନ ସାତସେରରୁ ଅଧିକ ଚନ୍ଦନ କାଠ ଦିଆଯାଏ । ମହାପ୍ରଭୁ ଅଣସର ଘରେ ଯେତେବେଳେ ରହିଥାନ୍ତି, ସେତେବେଳେ ରାଘବଦାସ ମଠ ଆମ୍ବକୋରା, ଖଇ ଓ କଦଳୀ ପ୍ରଭୃତି ଦେବାର ପରମ୍ପରା ବଜାୟ ରହିଛି । ଥରେ ଭକ୍ତି ଭାବରେ ଭକ୍ତ ବିଭୋର ହୋଇପଡ଼ିଲେ, ଆଉ ସେ ତା'ର ଭଗବାନଙ୍କୁ ଛାଡ଼ିପାରେ ନାହିଁ, ବରଂ ନିକଟରୁ ନିକଟତର ହେବାକୁ ଲକ୍ଷ୍ୟ ରଖିଥାଏ । ସେ କେବେ ମହାପ୍ରଭୁଙ୍କଠାରୁ ଦୂରେଇ ଯାଏ ନାହିଁ । ଦୂରେଇ ଆସିବା ତା' ପାଇଁ ଦୁର୍ଭାଗ୍ୟ ମନେ ହୋଇଥାଏ । ପରମ୍ପରା ଚ୍ୟୁତ ନ ହେବା ଦିଗରେ ରାଘବଦାସ ମଠର ଆଦର୍ଶ ଓ ସେବା ମନୋଭାବ, ଶ୍ରୀଜଗନ୍ନାଥଙ୍କ ପୂଜା ଇତିହାସରେ ଏହା ଏକ ଉଲ୍ଲେଖନୀୟ ଅଧ୍ୟାୟ । ଏହି ମଠକୁ ମଧ୍ୟ 'ରଘୁ ଅରକ୍ଷିତ ମଠ' ବୋଲି କେହି କେହି କହିଥାଆନ୍ତି ।

ସିନେଟ ସଦସ୍ୟ, ଫକୀର ମୋହନ ବିଶ୍ୱବିଦ୍ୟାଳୟ
ମଠସାହି, ଭଦ୍ରକ

---

# କଳ୍ପବଟ

ଶ୍ୟାମ ପ୍ରକାଶ ସେନାପତି

ଯାହାର ସୁଶୀତଳ ଛାୟାରେ
ବିଜେ କରିଛନ୍ତି ମହାପ୍ରଭୁ ଶ୍ରୀଜଗନ୍ନାଥ !
ଯିଏ ଦେବାସୁରଙ୍କ ସମୁଦ୍ର ମନ୍ଥନରୁ ଜାତ,
ପୁଣି ପ୍ରଳୟକାଳରେ
ବାଳମୁକୁନ୍ଦ ରୂପରେ ଶ୍ରୀହରି
ଯାହାର ପତ୍ର ଉପରେ ଶୟନ କରନ୍ତି,
ମାର୍କଣ୍ଡେୟ ଋଷି
ଯାହାର ପାଦଦେଶରେ ତପସ୍ୟା କରି
ପାଇଥିଲେ ସାକ୍ଷାତ ବିଷ୍ଣୁଙ୍କର ଦର୍ଶନ,
ଶ୍ରୀମନ୍ଦିର ଭିତର ବେଢାର ଦକ୍ଷିଣପାର୍ଶ୍ୱରେ
ଯାହାର ସ୍ଥିତି,
ପୁଣି ଯେଉଁ ଦିବ୍ୟବୃକ୍ଷର ଛାୟାରେ
ଅତିବଡୀ ଜଗନ୍ନାଥ ଦାସ ରଚନା କରିଥିଲେ
ଶ୍ରୀମଦ୍‌ଭାଗବତର ଓଡିଆ ଅନୁବାଦ,
ଯାହାର ଚତୁଃପାର୍ଶ୍ୱରେ ରହିଛି
ପଞ୍ଚବଟ
ଆଉ ଯାହାର ସୁଶୀତଳ ଛାୟାରେ
ଦଣ୍ଡେ ବସିଗଲେ
ମନରୁ ସବୁ ଅବସାଦ ମେଣ୍ଟିଯାଇ
ଦିବ୍ୟ ଭାବନା ଜାଗ୍ରତ ହୁଏ
ସେ ହିଁ କଳ୍ପବଟ
ଯିଏ ଅଭାବକୁ ଦୂର
କିଂତୁ ଭାବକୁ ନିକଟ

ସଂପାଦକ-ଅଭିନନ୍ଦନିକା
ବଡଦାଣ୍ଡ, ପୁରୀ- ୧



# ସତ୍ୟ ଶିବ ସୁନ୍ଦରର ଶୋଭାଯାତ୍ରା

ଡଃ ଦୁର୍ଯ୍ୟୋଧନ ଦାସ



ସମସ୍ତେ ସତ୍ୟକୁ ଶ୍ରଦ୍ଧା କରନ୍ତି । ଶିବକୁ ଉପାସନା ଯାଚନ୍ତି ଏବଂ ସୁନ୍ଦରକୁ ସମ୍ବର୍ଦ୍ଧନା ଜଣାନ୍ତି । ତା'ର କାରଣ ହେଉଛି ସତ୍ୟ ସତ୍‌ମାର୍ଗ ଦେଖାଏ, ଶିବ ପଥକୁ ପବିତ୍ର କରେ ଏବଂ ସୁନ୍ଦର ସରଣୀକୁ ସୁଖମୟ କରେ । ତେଣୁ ପଥଚାରୀ ନିର୍ବିଘ୍ନରେ ଯାତ୍ରା ପାଇଁ ପ୍ରେରଣା ଓ ଉତ୍ସାହ ପାଏ । ଯେ ଯେଉଁ ପଥରେ ଯାଉନା କାହିଁକି ତାହା ଯଦି ଗତିକୁ ଗମାତ, ଚାଲିକୁ ଚଞ୍ଚଳ ଏବଂ ଲକ୍ଷ୍ୟକୁ ଲଭ୍ୟ କରିପାରେ ସେ ପଥରେ ପାଦ ଦେବାକୁ କେହି ବୀତସ୍ପୃତ ହୁଅନ୍ତି ନାହିଁ । ଜୀବନ ତ ଏକ ଯାତ୍ରା ! ଆଉ ସଂସାରଟା ବିବିଧ ଛକ ଓ ରାସ୍ତା ବହୁଳ ଏକ ମାନଚିତ୍ର !!

ଯାତ୍ରା ପାଇଁ ପାଖରେ ମାନଚିତ୍ର ରଖିଲେ ଯଥେଷ୍ଟ ହୁଏ ନାହିଁ, ଯଦି ଅନୁକୂଳ ମନଟେ ନଥାଏ । ପଥ ଓ ପଥିକ ମଧ୍ୟରେ ପ୍ରକୃତ ଯୋଗସୂତ୍ରକାରୀ ହେଉଛି ମନ, ଯାହା ଗୋଟିଏ ଆଖିରେ ଥାଏ ଆଗ୍ରହ ଓ ଅନ୍ୟଟିରେ ଇଚ୍ଛା । ସୌନ୍ଦର୍ଯ୍ୟର ଆକର୍ଷଣ ଉକ୍ତ ଚକ୍ଷୁ ଦ୍ୱୟକୁ କରିପାରେ ନିଷ୍ପଲକ ଓ ପୁଲକ ପ୍ରବଣ । ସୌନ୍ଦର୍ଯ୍ୟ ନିକଟରେ ବନ୍ଧା ପଡିଗଲା ପରେ ମନ ଆନନ୍ଦପାଇଁ ବ୍ୟାକୁଳ ହୁଏ । ମନ ସେତେବେଳେ ଯାଏଁ ବ୍ୟସ୍ତ ବିବ୍ରତ ହୁଏ ଯେତେବେଳେ ଯାଏଁ ତୃପ୍ତି ଆସି ନଥାଏ । ଚିତ୍ତର ଏ ଉନ୍ମାଦନା ପର୍ବଟି ଅତ୍ୟନ୍ତ ଉଷ୍ମ । ମାତ୍ର ତୃପ୍ତି ହେଉଛି ଏକ ଶୀତଳ ଓ ଶାନ୍ତ ଅବସ୍ଥା । ଏହା ମିଳିଥାଏ ସୌନ୍ଦର୍ଯ୍ୟଲବ୍ଧ ସୁଖ ଯେତେବେଳେ ଦିବ୍ୟାନନ୍ଦକୁ ରପାନ୍ତରିତ ହୋଇ ଦ୍ରଷ୍ଟାକୁ ତୂରୀୟ ପ୍ରଦାନ କରେ । ନିମିଷକ ପାଇଁ ଦର୍ଶକ ନିଜକୁ ଭୁଲିଯାଏ । ତାକୁ ଲାଗେ ସେ ଯେପରି ପ୍ରକୃତିର କେଉଁ ଏକ ଅଜଣା ରାଜ୍ୟକୁ ଚାଲି ଯାଉଛି, ଯେଉଁଠି ଦୁଃଖ ନାହିଁ, କ୍ଳାନ୍ତି ନାହିଁ – କିଛି ନାହିଁ ଅଥଚ ସବୁ ଅଛି । ଏହି ଶୂନ୍ୟ ଶାନ୍ତ ସରଳ ଅନୁଭବ ହେଉଛି ସତ୍ୟ ସହ ମଣିଷର ଭେଟାଭେଟି । ଭୂମି ସହ ଭୂମାର ମିଳନ । ପରମାତ୍ମାରେ ଆତ୍ମାର ବିଲୀନ । ଆଉ ଏହି କ୍ଷଣଟି ହେଉଛି ମଙ୍ଗଳ ମୁହୂର୍ତ୍ତ –– ଶିବମୟ ସମୟ । ତେଣୁ ସତ୍ୟ, ଶିବ ଓ ସୁନ୍ଦର ହେଉଛି ଅନୁଭବ ତ୍ରିଭୁଜର ତିନୋଟି ପାର୍ଶ୍ୱ । ଗୋଟିଏକୁ ଛାଡି ଦେଲେ ଅନ୍ୟଟି ନିରର୍ଥକ ।

କହିବା ବାହୁଲ୍ୟ ସାଧାରଣ ଜନତାଙ୍କୁ ଏହିପରି ଏକ ଉଦାତ୍ତ ଅନୁଭବ ଦେବା ଲାଗି ରଥଯାତ୍ରାର ପରିକଳ୍ପନା । ପର୍ବ ମଧ୍ୟରେ ପରମ୍ପରା ସ୍ମରଣ ପାଇଁ ଏହା ଯେତେ ଅଭିପ୍ରେତ ନୁହେଁ, ବିସ୍ମୃତ ଅବବୋଧ ସହିତ ଜୀବନାଦର୍ଶର ପ୍ରତିଷ୍ଠା ହେଉଛି ପ୍ରକୃତ ଉଦ୍ଦେଶ୍ୟ । ମୂଢ଼ମାନଙ୍କୁ ସଚ୍ଚିତ୍ ଆନନ୍ଦର ସ୍ପର୍ଶ ଦେବା ପାଇଁ ତ୍ରିମୂର୍ତ୍ତିଙ୍କର ଏହା ଏକ ମାର୍ମିକ ଶୋଭାଯାତ୍ରା । ପତିତପାବନ ନାଆଁରେ ସମସ୍ତଙ୍କୁ ଆଶୀର୍ବାଦ ଓ ସ୍ନେହ ବାଣ୍ଟିବାର ଏ ଏକ ନିଆରା ଉତ୍ସବ ।

ରଥ ଯାତକୁ ଯେ ଆସନ୍ତି ସେ ବୁଲନ୍ତି ବଡ ଦାଣ୍ଡରେ । ଦେଖନ୍ତି ବଡ ଦେଉଳ । ଟାଣନ୍ତି ବଡ ରଥ ଏବଂ ଭେଟନ୍ତି ବଡ ଠାକୁର । ଏଠି ନାସ୍ତିକ ଆସ୍ତିକ ହେଉ କି ନ ହେଉ ତାର ମନ ହୋଇଯାଏ ବଡ । ହୃଦୟ ହୋଇଯାଏ ପ୍ରଶସ୍ତ । ସେ ଭୁଲିଯାଏ ବର୍ଣ୍ଣର ବୈଭବ । ଜାତିର ପାର୍ଥକ୍ୟ । ଅଞ୍ଚଳର ଅକ୍ଷାଂଶ ଏବଂ ଭାଷାର ଭୂଗୋଳ । ଧର୍ମର ଧୂଆଁରେ ଆକ୍ରାମାକ୍ରା ହୋଇ ପଡୁଥିବା ଚକ୍ଷୁରୁ ଝରି ପଡେ ଅନୁରାଗର ଅଶ୍ରୁ । ଦଣ୍ଡେ ପାଇଁ ହେଉ ପଛେ ସ୍ୱାର୍ଥର ସିଡିରୁ ତଳକୁ ଓହ୍ଲାଇ ଯାତ୍ରୀ ଦେଖେ ପ୍ରେମର ପ୍ଲାବନ, ଭକ୍ତିର ଭଉଁରୀ ଏବଂ ଉଲ୍ଲାସର ଉର୍ମି । ସେତେବେଳ ସ୍ୱତଃ ତାର ମୁଖରୁ ଉଚ୍ଚାରିତ ହୁଏ ''ଜଗନ୍ନାଥ ହୋ କିଛି ମାଗୁ ନାହିଁ ତତେ/ଧନ ମାଗୁ ନାହିଁ, ଜନ ମାଗୁ ନାହିଁ/ ମାଗୁଛି ଶରଧା ବାଲିରୁ ହାତେ ।''

ଗର୍ବ ଅହଂକାର ତ୍ୟାଗ କରି ବିନୟ ଆତ୍ମସମର୍ପଣରେ ଆତ୍ମହରା ହୋଇ ଯାଉଥିବା ଅବସ୍ଥା ସତ୍ୟ ସହ ସାତ୍ତ୍ୱିକ ସାକ୍ଷାତ ନୁହେଁ ତ ଆଉ କ'ଣ ?

ସତ୍ୟ–ଶିବ–ସୁନ୍ଦରର ଅପୂର୍ବ ସମାରୋହ ବାରିହୋଇ ପଡେ ରଥରୁ, ରଥାରୂଢ଼ ମୂର୍ତ୍ତି ଏବଂ ରଥଯାତ୍ରାରୁ । ତାର ଝଲକ ମଧ୍ୟ ଦିଶେ ବିଧି ବିଧାନ ଏବଂ ପୂଜା ପଦ୍ଧତିରେ । ସେ ସବୁର ସମ୍ୟକ ବ୍ୟାଖ୍ୟା





କରିବା ସମ୍ଭବ ନୁହେଁ। ସଂକ୍ଷେପରେ କହିଲେ ଯଥେଷ୍ଟ ହେବ ଯେ ବଳଭଦ୍ର ସତ୍ୟ, ଜଗନ୍ନାଥ ଶିବ ଏବଂ ସୁଭଦ୍ରା ହେଉଛନ୍ତି ସୁନ୍ଦରର ପ୍ରତୀକ। ସେମାନଙ୍କର ରଥ ଯଥାକ୍ରମେ ତାଳଧ୍ୱଜ, ନନ୍ଦିଘୋଷ ଏବଂ ଦେବଦଳନରେ ପ୍ରତିଫଳିତ ହେଉଛି ସେହି ମହତ୍ୱ। ସର୍ବୋପରି ଘୋଷଯାତ୍ରାରେ ନିର୍ଘୋଷିତ ହେଉଛି ସେହି ସଚ୍ଚିଦାନନ୍ଦ ଚେତନା।

## ମୂର୍ତ୍ତିରେ ମୂର୍ତ୍ତିରେ ସତ୍ୟ-ଶିବ-ସୁନ୍ଦର

ସବୁ ରଙ୍ଗର ସମାହାର ହେଉଛି ଶ୍ୱେତବର୍ଣ୍ଣ। ଏଥିରେ ଅଛି ବାଇଗଣୀ-ବିଶ୍ୱାସ, ଘନନୀଳ-ଘନିଷ୍ଠତା, ନୀଳିମା-ନିଷ୍ଠା, ସବୁଜ-ଶ୍ରଦ୍ଧା, ହରିଦ୍ରା-ହର୍ଷ, ନାରଙ୍ଗୀ-ନମ୍ରତା ଏବଂ ରକ୍ତାରୁଣ-ରୁକ୍ଷତା। ବଳଭଦ୍ରଙ୍କର ରଙ୍ଗ ଧବଳ ହୋଇଥିବାରୁ ସେ ମଧ୍ୟ ହେଉଛନ୍ତି ପରମ ପବିତ୍ରତାର ପ୍ରତୀକ। ନିଷ୍କପଟ ଚିନ୍ତା ଏବଂ ସଂଯମ ପ୍ରବୃତ୍ତିକୁ ପରିସ୍ଫୁଟନ କରି ସେ ଆହ୍ୱାନ କରନ୍ତି ସମସ୍ତେ ହୋଇ ଯାଆନ୍ତୁ ବ୍ୟବହାରରେ ଶିଷ୍ଟ, ବୃତ୍ତିରେ ବିଶିଷ୍ଟଏବଂ ଚିତ୍ତରେ ଚେତନା ଶ୍ୱେତରଙ୍ଗ ପୁଣି ଶୁଣାଏ ଅସମତାରେ ସମତା। ବହୁତ୍ୱରେ ଏକତ୍ୱ। ଧାରେ ଆଲୋକର ସ୍ୱଚ୍ଛତାକୁ ନିଜର ବର୍ଣ୍ଣ କରି ବଳଭଦ୍ର ପ୍ରମାଣ କରିବାକୁ ଚାହାଁନ୍ତି ସତ୍ୟ ଏକ ଯାହାର ବୈଦିକ ସଂଜ୍ଞା ହେଉଛି ''ଏକ ସତ୍ୟ, ବିପ୍ରା ବହୁଧା ବଦନ୍ତି।''

ହିନ୍ଦୁ ସଂସ୍କୃତିରେ ବଳରାମଙ୍କୁ 'ହଳଧର' ଏବଂ 'ଶେଷନାଗ' ରୂପେ ଚିତ୍ରଣ କରାଯାଇଛି। ହଳ କୃଷିର ପ୍ରତୀକ ହେଉଥିଲା ବେଳେ ବଳରାମ ନିଶ୍ଚୟ ହେବେ ଉର୍ବରତା, ସର୍ଜନା ଏବଂ ସମୃଦ୍ଧିର ଜନକ। ପୁଣି ନାଗର ଭୂମିକାରେ ସେ ସହି ପାରନ୍ତି ଧରଣୀର ଭାର, ଅଖିଳର ଲୀଳାଖେଳା, ନିଖିଳର ନିର୍ଯାତନା। ସେ ପୁଣି ଗରଳରେ ସ୍ନାନ କରାଇ ଜୀବନକୁ କରିପାରନ୍ତି ନିଷ୍କ୍ରିୟ-ମୃତ। ମଣିଷ ପାଇଁ ଜନ୍ମ ସତ୍ୟ, ମୃତ୍ୟୁ ସତ୍ୟ ଏବଂ ଏହି ଦୁଇ ମେରୁକୁ ନିରବଚ୍ଛିନ୍ନ ସଂଯୋଗ କରୁଥିବା ଜୀବନ ହିଁ ସତ୍ୟ। ଏହି ତିନି ପର୍ଯ୍ୟାୟକୁ ପ୍ରତୀକାତ୍ମକ ଭାବରେ ସ୍ପର୍ଶ କରୁଥିବା ବଳଭଦ୍ର ପ୍ରକୃତରେ ସତ୍ୟର ସଂତକ।

ବଳଭଦ୍ର ଆଉ ଏକ କଥା ସ୍ପଷ୍ଟ କରନ୍ତି ଯେ ତାଙ୍କ ପରି ଜନ୍ମରୁ ପ୍ରତ୍ୟେକ ମଣିଷ ଧଳା କାଗଜ ପରି। ଏଥିରେ ସମୟ ବୟସର ଦାଗ ପକାଇବା ସଙ୍ଗେ ସଙ୍ଗେ କୁକର୍ମ କଳଙ୍କର କଳା ବୋଲି ଦିଏ। କେବଳ ନିଷ୍କାମ କର୍ମ ଜୀବନକୁ ସବୁବେଳେ କୋରା କାଗଜର ମାନ୍ୟତା ଦିଏ। ''ନହି କର୍ଶ୍ଚିତ୍ କ୍ଷଣମପି ଜାତୁ ତିଷ୍ଠତ୍ୟ କର୍ମକୃତ୍'' (ଗୀତା)-- ଅର୍ଥାତ କେହି କାମ ନ କରି ମୁହୂର୍ତ୍ତଟିଏ ବି ବଞ୍ଚି ପାରିବ ନାହିଁ। ତେଣୁ କାର୍ଯ୍ୟ ଭିତରେ ନିର୍ଲିପ୍ତ ରହିବାର ସଂକଳ୍ପ କରୁଥିବା ବ୍ୟକ୍ତି ପ୍ରତି ପାହୁଣ୍ଡରେ ସ୍ୱାଭିମାନକୁ ଖୋଜିଥାନ୍ତି। ମାନବିକତାକୁ ସମ୍ମାନ କରନ୍ତି ଏବଂ ଆଧ୍ୟାତ୍ମିକତାକୁ ଆଦର କରନ୍ତି। ସେମାନେ ପାଆନ୍ତି ତ୍ୟାଗରେ। ସେମାନେ ବଞ୍ଚନ୍ତି ଭୂତି ବା ଭାବରେ, କେବେ ଭୋଗରେ ନୁହେଁ।

ବଳଭଦ୍ର ତତ୍ତ୍ୱର ଆଉ ଏକ ବିଶ୍ଳେଷଣ ବି କରାଯାଇପାରେ। ଶରୀର ଏକ କୃଷିକ୍ଷେତ୍ର ଏବଂ ମନ ଏକ ଉଦ୍ୟାନ।

ଶରୀରକୁ ଶ୍ୟାମଳ କରିବାକୁ ହେଲେ ସେଥିରେ ଜମିଥିବା ଆଳସ୍ୟର ଶିଳା ଏବଂ ନିଚେଷ୍ଟତାର ନିଦ୍ରା ଭାଙ୍ଗିବା ଜରୁରୀ। ସେହିପରି ମନକୁ ସୃଜନକ୍ଷମ କରିବା ପାଇଁ ସେଥିରେ ଚରିଯାଇଥିବା ବିଷାଦର ଲୁଣି, ଭୟର ଉଇହୁଙ୍କା ଏବଂ ଗର୍ବର ଗରଡାକୁ ଭାଙ୍ଗିବା ଆବଶ୍ୟକ। ଜୀବନ ଜାଗରଣରେ ପ୍ରତିବନ୍ଧକ ଆଣୁଥିବା କାମ -କ୍ରୋଧ ଆଦିର ବିନାଶ ପାଇଁ ହଳ ରୂପକ ସାଧନାରେ ଆୟୁଧ ବଳଭଦ୍ର ଆମକୁ ବଢ଼ାଇ ଦେବାରେ ତତ୍ପର। ମାତ୍ର ଆମେ କେତେ ତାହା ଗ୍ରହଣ କରୁଛନ୍ତି ? ମନକୁ ମନୋରମ ଉଦ୍ୟାନ କରିବାକୁ ହେଲେ ସେଥିରେ ଜନ୍ମୁଥିବା କ୍ରୁରତାର କଣ୍ଟା, ଘୃଣାର ଘାସ ଏବଂ କୁଟିଳତାର କୃଶ ଉତ୍ପାଟନ ଅପରିହାର୍ଯ୍ୟ।

ଜଗନ୍ନାଥଙ୍କ ବିଗ୍ରହ ହେଉଛି ଶିବର ପ୍ରତୀକ। ତାଙ୍କର ରଙ୍ଗ କଳା। ବିଜ୍ଞାନ ଓ ମନସ୍ତତ୍ତ୍ୱରେ ଗୁଣଗରିମାକୁ ରଙ୍ଗ ମାଧ୍ୟମରେ ପ୍ରକାଶ କରାଯାଏ। ଯେତେବେଳେ କୌଣସି ରଙ୍ଗର ପ୍ରାଧାନ୍ୟ ରହେ ନାହିଁ ଅର୍ଥାତ୍ ସବୁଗୁଣ ନିଜର ଅସ୍ମିତା ହରାଇ ବିଲୀନ ହୋଇ ଯାଆନ୍ତି, ଆପେ ଆପେ ସେତେବେଳ ସୃଷ୍ଟି ହୁଏ କୃଷ୍ଣବର୍ଣ୍ଣ। ପ୍ରକୃତରେ ଏହା ବର୍ଣ୍ଣ ନୁହେଁ ନିବର୍ଣ୍ଣ। ଏଥିରେ ସବୁଥାଏ କିନ୍ତୁ ଏକ ଭିନ୍ନ ମୁଦ୍ରାରେ। ତାହା ହେଉଛି ମଙ୍ଗଳର ମୋହନ ସ୍ଥିତି। ଉଦାରତାର ଆହ୍ଲାଦିତ ଆବେଦନ। କାଳର ରଙ୍ଗ ବି କଳା। ଜଗନ୍ନାଥ ସମସ୍ତଙ୍କର ମଙ୍ଗଳ ମନାସ କରନ୍ତି। ସମସ୍ତ ପାପ ଓ ହତାଶାର ହତ୍ୟା କରି ସେ ପାଳନ କର୍ତ୍ତାର ଭୂମିକା ନିର୍ବାହ କରନ୍ତି। ସେଥିପାଇଁ ପ୍ରାତଃ କାଳରେ ଆମେ ତାଙ୍କୁ ସ୍ମରଣକରୁ ''ତ୍ୱୟି ହୃଷିକେଶ ହୃଦି ସ୍ଥିତେନ ଯଥା ନିଷୁକ୍ତୋସ୍ମି ତଥା କରୋମି'' ଉଚ୍ଚାରଣ କରି।

କାଳ କାହାରି କର୍ତ୍ତୃତ୍ୱକୁ ବରଦାସ୍ତ କରେ ନାହିଁ। କାହାର ଗର୍ବ ଓ ଅହଂକାରକୁ ବଢ଼ିବାକୁ ଦିଏ ନାହିଁ। ମୃତ୍ୟୁ ପରି ତାହା କଠୋର। ବିଭୂ ପ୍ରେମରେ ପୋଡିହେଲା ପରେ ରହେ ଯେଉଁ ବିଜାରିତ ବିଭବ ତାହା ଅଙ୍ଗାର ପରି ଶୁଦ୍ଧତା ପ୍ରଦାନ କରେ। ବିଳାସ ପ୍ରିୟ ଇନ୍ଦ୍ରିୟ ଏବଂ ବିକାରଗ୍ରସ୍ତ ମନକୁ ଦଗ୍ଧକରି ନିରପଦ୍ରୁତ ଚେତନାରେ ବିଚରଣ ଲାଗି ଜଗନ୍ନାଥଙ୍କ କୃଷ୍ଣ ବର୍ଣ୍ଣରେ ରହିଛି ଶାଶ୍ୱତ ପ୍ରେରଣା।

ଜଗନ୍ନାଥଙ୍କର ଚକା ଆଖି। ତାଙ୍କର ଆଦୌ ପତା ପଡେ ନାହିଁ। ବିସ୍ଫାରିତ ନୟନରେ ସେ ସବୁ ଦେଖନ୍ତି। ଯାହା ଅର୍ଥ ହେଉଛି ଭଲ ମନ୍ଦ ଉଭୟ ମଣିଷ ଦେଖୁ। ଦୁଃଖ ସୁଖକୁ ସମାନ ମଣୁ। ସେ ଦେଖୁ କିଏ ଛଡାଇ ନେଉଛି ତାର ଅଧିକାର। ସେ ଚିହ୍ନୁ ତା ମାଟିର ଶତ୍ରୁଙ୍କ ଜାଣୁ ବିଧର୍ମୀ ବିରୋଧୀଙ୍କୁ। ଆଖିବୁଜି କାପୁରୁଷ ଭାବରେ ଅନ୍ୟାୟଅତ୍ୟାଚାରକୁ ସହିଯିବାର ସମୟ ଆଉ ନାହିଁ। ଉତିଷ୍ଠ, ଜାଗ୍ରତ ବନାରୁ ଭବ।



**ଜଗନ୍ନାଥଙ୍କୁ ମଧ୍ୟ ବିନାଶର ବିଗ୍ରହ ବୋଲି ବର୍ଣ୍ଣନା କରାଯାଇଛି ।**

''କାଳସର୍ପ ଆପଣ କବଳରେ ପ୍ରାଣ-ପବନମାନଙ୍କ ସବୁରି''ରେ ତାର ବର୍ଣ୍ଣନା । ବିଜ୍ଞାନ କହେ କୃଷ୍ଣ ବର୍ଣ୍ଣ ହେଉଛି ରହସ୍ୟର ଗନ୍ତାଘର । ଏଥିରେ ଥାଏ ମହାଶକ୍ତି ଶୂନ୍ୟତା ରୂପରେ । ସୃଷ୍ଟିର ସମ୍ଭାବନା ଓ ସାମର୍ଥ୍ୟ କଳାରଙ୍ଗରେ ପ୍ରକାଶିତ ହେଉଥିବାରୁ ଶ୍ରୀଜଗନ୍ନାଥ ସୃଷ୍ଟିର ଆଦିମୂଳ-- କାର୍ଯ୍ୟକାରଣର ନିୟନ୍ତା । ସେ ଧ୍ୱନି ମଧ୍ୟରେ ଓଁକାର । ଭାବ ମଧ୍ୟରେ ରାଗାନୁଗା । ଦ୍ୟୁତି ମଧ୍ୟରେ ଇରମ୍ମଦ ।

ରଥରେ ରଥରେ ସତ୍ୟ-ଶିବ-ସୁନ୍ଦର

ଲୌକିକ ମୁଦ୍ରାରେ ଅଲୌକିକତାର ପରିଚୟ ହେଉଛି ରଥତ୍ରୟ । କାରୁକାର୍ଯ୍ୟମୟୀ ମନ୍ଦିର ପରି ସେଗୁଡିକର ପରିପାଟୀ । ଦେଉଳ ଖିଲାଣରେ ପରୀ, କିନ୍ନରୀ ଖଞ୍ଜା ହେଲା ପରି ବହୁ ଦେବାଦେବୀ ଖଚିତ ହୋଇଛନ୍ତି ରଥର ଗାତ୍ରରେ । ଏପରି କି ଅଦୃଶ୍ୟରେ ଶୋଭାପାଉଛନ୍ତି ବହୁ ପାର୍ଶ୍ୱ ଦେବାଦେବୀ । ନନ୍ଦିଘୋଷରେ ଅଛନ୍ତି ବରାହ, ନୃସିଂହ, କୃଷ୍ଣ,ରାମ ଓ ହନୁମାନ ଆଦି ନଅ ଜଣ ଦେବା । ତାଳଧ୍ୱଜରେ ବିଜେ କରିଛନ୍ତି ଗଣେଶ, କାର୍ତ୍ତିକେୟ, ସର୍ବ ମଙ୍ଗଳା ଓ ସିଦ୍ଧେଶ୍ୱର ପରି ନଅ ଜଣ ଦେବ । ଦେବ ଦଳନ ମଣ୍ଡନ କରିଛନ୍ତି ଚଣ୍ଡୀ, ଚାମୁଣ୍ଡା, ମଙ୍ଗଳା ବିମଳା ପରି ନବ ମାତୃକା ।

ମେଘ ମେଦୁରିତ ଆକାଶ ତଳେ, ଜନ ସମୁଦ୍ର ଟପି ଶଙ୍ଖ-ବାଦ୍ୟ-ମନ୍ତ୍ର ଓ ଭକ୍ତି ସଙ୍ଗୀତର ତାଳେ ତାଳେ ଗତିଶୀଳ ରଥତ୍ରୟ ମନେ ହୁଅନ୍ତି ସତେ ଯେପରି ଲହଡି ମାଡି ଆସନ୍ତି । ଦକ୍ଷିଣରୁ ଉତ୍ତରକୁ ପଛରେ ପଡି ରହେ ଦିଗବଳୟର ପାହାଡ ପରି ଶ୍ରୀମନ୍ଦିର । ବଡଦାଣ୍ଡର ଦୁଇ ପାର୍ଶ୍ୱ ଲାଗେ ବେଳାଭୂମି ପରି ଆନନ୍ଦ ମୁଖର । ରଥଯାତ୍ରାର ଦୃଶ୍ୟ କବିତାର ଧାଡି ଓ ଗଳ୍ପର ପଙ୍କ୍ତି ହୋଇଛି । ନାଟକର ସଂଳାପ ଏବଂ ପ୍ରବନ୍ଧର ବାକ୍ୟ ହୋଇ ନାନ୍ଦନିକ ବୈଭବକୁ ରସାଣିତ କରିଛି । ରଥ ଦଉଡି ଧରି କାହାର ମୋକ୍ଷ ହେଉ କି ନହେଉ ଭିଡ ଭିତରେ ଝାଳ ନାଳ ହୋଇ ଥରେ ସ୍ପର୍ଶ କରି ନିଜକୁ କୃତାର୍ଥ ମଣିଛି । ତା ଜୀବନ ସାର୍ଥକ ହୋଇଛି ବୋଲି ଅନୁଭବିଛି । ନୟନାଭିରାମ ଦୃଶ୍ୟରେ ବିମୋହିତ ହେଉଁ ହେଉଁ ଭକ୍ତିମଗ୍ନ ହୋଇ ବିଭୁ ପଦାରବିନ୍ଦରେ ଆତ୍ମ ସମର୍ପଣ କରିଛି । ଏ ହେଲା ସାଧାରଣ ଭକ୍ତିମାର୍ଗୀଙ୍କ କହାଣୀ, ଯେଉଁମାନେ ଜ୍ଞାନବାଦୀ ସେମାନେ ରଥରେ ଲାଗିଥିବା ଭିନ୍ନ ଭିନ୍ନ ରଙ୍ଗୀନ କପଡାର ରହସ୍ୟ ଭେଦ କରି ଆନନ୍ଦ ଓ ଆଶ୍ଚର୍ଯ୍ୟରେ ବୁଡିଯାଆନ୍ତି ।

ବିଜ୍ଞାନ ବିଚାରରେ ଲୋହିତ, କମଳା ଓ ହରିଦ୍ରା ରଙ୍ଗ ହେଉଛି ଉଷ୍ଣ ପ୍ରକୃତିର ଯାହା ଆବେଗକୁ ଉତ୍ତେଜିତ, ଉଲ୍ଲସିତ ଓ ଉଦାର କରେ । ନୀଳ, ବାଇଗଣୀ ଓ ସବୁଜ ରଙ୍ଗ ଶୀତଳ ପ୍ରକୃତିର ଯାହାର ପ୍ରଭାବରେ ଦୁଃଖ ଓ ଶୋକ ସତ୍ତ୍ୱେ ମନରେ ଆସେ ଶାନ୍ତି । ରଥତ୍ରୟରେ ମୁଖ୍ୟତଃ ଲାଗିଛି ଲାଲ କପଡା । ଏହାର ଅର୍ଥ ହେଉଛି ଦର୍ଶନ-ମାତ୍ରକେ ଯେ କେହି ଅନୁଭବ କରିବେ ଉତ୍ସାହ ଓ ଉନ୍ମାଦନା । ଏହା ମଧ୍ୟ ହେଉଛି ସୌନ୍ଦର୍ଯ୍ୟର ମୂଳ ଲକ୍ଷ୍ୟ ।

ନନ୍ଦିଘୋଷରେ ଲାଲ ସହ ଲାଗିଛି ହଳଦିଆ କପଡା । ଏହାର ଅର୍ଥ ହେଉଛି ଧ୍ୟାନ ଓ କର୍ମରେ ଉତ୍ସାହ ସଂଚାର । ନିଜେ ଜଗନ୍ନାଥ ସ୍ରଷ୍ଟା ଓ ପାଳନ କର୍ତ୍ତା । ତାଙ୍କ ରଥରେ ମଧ୍ୟ ରହିଛି ସେହି ସନ୍ଦେଶ । ଦର୍ଶକ ଏ ରହସ୍ୟ ବୁଝନ୍ତୁ ନ ବୁଝନ୍ତୁ ଜ୍ଞାନୀ ଭାବନ୍ତି-- ରଙ୍ଗ ଭିତରେ ରଙ୍ଗ ଲଗେଇଛି ସେହି ରଙ୍ଗାଧର ।

ତାଳଧ୍ୱଜର ଆବରଣରେ ଲାଲ ସହିତ ସଂଯୁକ୍ତ ହୋଇଛି ନୀଳ ରଙ୍ଗ ଯାହାର ଉଦ୍ଦେଶ୍ୟ ହେଉଛି ଉତ୍ତେଜନାରେ ସରଳ ବିଶ୍ୱାସର ବିସ୍ତାର । ଆତ୍ମନିର୍ଭରଶୀଳତା ସହିତ ଅନ୍ୟକୁ ଅଭୟ ଦେବାର ଏହା ମଧ୍ୟ ପ୍ରତୀକ ।

ଦେବଦଳନରେ ଲାଲ ଏବଂ କଳାର ମିଶ୍ରଣ ଘଟିଛି । କୃଷ୍ଣ ବର୍ଣ୍ଣ ରହସ୍ୟ ସଂଚାରକ । ଅମୃତ ରୂପା ସୁଭଦ୍ରା ଦିବ୍ୟାନନ୍ଦ ମାଧ୍ୟମରେ ସତ୍ୟକୁ ପ୍ରକାଶ କରୁଥିବାରୁ କମ୍‌ବଡ ରହସ୍ୟମୟୀ ନୁହଁନ୍ତି ।

ରଥର ଶିଳ୍ପ ସୌକର୍ଯ୍ୟ ଜ୍ଞାନଯୋଗର ଅନନ୍ୟ ଉଦାହରଣ । ଜ୍ଞାନ ଖାଲି ମଣିଷକୁ ବିଜ୍ଞ କରେ ନାହିଁ ପାରମାର୍ଥିକ ପ୍ରଫୁଲ୍ଲତା ପ୍ରଦାନ କରେ । ସେଥିପାଇଁ ଶ୍ରୀମଦ୍‌ଭାଗବତ ଗୀତାରେ କୁହାଯାଇଛି ''ନ ହି ଜ୍ଞାନେନ ସଦୃଶଂ ପବିତ୍ରମିହ ବିଦ୍ୟତେ/ ତତ୍ ସ୍ୱୟଂ ଯୋଗସଂସିଦ୍ଧଃ କାଳେନାତ୍ମନି ବିନ୍ଦତି ।''

**ଯାତ୍ରାରେ ଯାତ୍ରାରେ ସତ୍ୟ -ଶିବ-ସୁନ୍ଦର**

ଯାତ୍ରା ଗତିଶୀଳତାର ପ୍ରତୀକ । ସବୁ ଯାତ୍ରାର ଆରମ୍ଭ ଯେଉଁଠି ଶେଷ ସେଇଠି । ଏହି ବୃତ୍ତାୟମାନ ପରିକ୍ରମା ଏକ ଧ୍ରୁବ ସତ୍ୟ । ଏହି ସତ୍ୟର ସାକ୍ଷୀ ହେଉଛି ଘୋଷ ଯାତ୍ରା ଯାହାର ଆରମ୍ଭ ଓ ଶେଷ ଶ୍ରୀମନ୍ଦିରରେ, ଖାଲି ଯାହା ନଅ ଦିନର ରହଣୀ ଗୁଣ୍ଡିଚା ପୀଠରେ । ସମୟର ଗତିକୁ ପଢ଼ାଯାଏ ୩୬୦ ଡିଗ୍ରୀ ବୃତ୍ତ ମଧ୍ୟରେ ସେକେଣ୍ଡ, ମିନିଟ୍ ଘଣ୍ଟାର ଏକକରେ । ପଥର ଦୈର୍ଘ୍ୟକୁ ଅତିକ୍ରମ କରାଯାଏ ଅଖ ଯୁକ୍ତ ଚକରେ । ଏହି ପ୍ରବହମାନତାର ସାଂକେତିକ ସ୍ୱୀକାର ରହିଛି ରଥ ସଂଯୁକ୍ତ ଚକ ଏବଂ ତିନିଦିନର ଯାତ୍ରା ଅବଧି ଭିତରେ । ଯାତ୍ରା ଏକ ଜାଗରଣ ପ୍ରକ୍ରିୟା - କର୍ମଯୋଗର ସ୍ମରଣ ଉତ୍ସବ ।

କେହି କେହି ଆଧ୍ୟାତ୍ମିକ ଗୁରୁ ଦକ୍ଷିଣରୁ ଉତ୍ତରକୁ ହେଉଥିବା ଗୁଣ୍ଡିଚା ଯାତ୍ରାକୁ କୁଳକୁଣ୍ଡଳିନୀ ଜାଗରଣ ପ୍ରକ୍ରିୟା ବୋଲି କହନ୍ତି । ସେମାନଙ୍କ





ମତରେ ବଡଦାଣ୍ଡ ଆଉ କିଛି ନୁହେଁ ମଣିଷର ମେରୁଦଣ୍ଡ ସଦୃଶ ଶାୟିତ ଏକ ଯୋଗ-ମାର୍ଗ। ମଣିଷ ଧ୍ୟାନ ମୁଦ୍ରାରେ ବସିଲେ ମସ୍ତିଷ୍କ ରହେ ଉପରକୁ, ତାହାକୁ କୁହାଯାଏ ଉତ୍ତର ଦିଗ ଏବଂ ମେରୁଦଣ୍ଡର ନିମ୍ନାଂଶ ଦକ୍ଷିଣ ଦିଗ। ନିମ୍ନରୁ ଉର୍ଦ୍ଧ୍ୱକୁ ରହିଥିବା ଚକ୍ରଗୁଡିକ ହେଉଛି ମୂଳାଧାର (ରକ୍ତବର୍ଣ୍ଣ), ସ୍ୱାଧିଷ୍ଠାନ (କମଳାବର୍ଣ୍ଣ), ମଣିପୁର (ହରିଦ୍ରାବର୍ଣ୍ଣ), ବିଶୁଦ୍ଧ (ନୀଳ), ଆଜ୍ଞା (ଘନନୀଳ) ଏବଂ ସହସ୍ରାର (ବାଇଗଣୀ)।

ଯାତ୍ରୀଗଣ ନିଜ ନିଜର ଭାବ, ଭକ୍ତି ଓ ଜ୍ଞାନ ନେଇ ଅନୁଭବ କରିପାରିବେ ଚକ୍ର ସାଧାନାର ବିଭୂତି। ପ୍ରତୀକାତ୍ମକ ଭାବରେ ରଥଯାତ୍ରା ମାଧ୍ୟମରେ ଏହି ଜ୍ଞାନ, ଭକ୍ତି ଓ ସମର୍ପଣ ଯୋଗ ସମ୍ପର୍କରେ ସୂଚନା ଦିଆଯାଇଛି।

ଶରୀରକୁ ରଥ ସହିତ ତୁଳନା କରାଯାଇଛି। ଶରୀର-ରଥର ରଥୀ ଆତ୍ମା, ସାରଥୀ ବୁଦ୍ଧି ଏବଂ ଅଶ୍ୱ ଇନ୍ଦ୍ରିୟ। ସାରଥୀ ଯେଉଁ ଲଗାମ ଧରିଥାନ୍ତି ତାହା ହେଉଛି ମନ। ମନ ଇନ୍ଦ୍ରିୟଙ୍କୁ ନିୟନ୍ତ୍ରଣ ନକରି ପାରିଲେ ରଥ ଅଟକି ଯିବ ମଝିରେ। ବିପନ୍ନ ହେବ ଯାତ୍ରା। ତେଣୁ ବୁଦ୍ଧି ପ୍ରବୀଣ ନ ହେଲେ ଇନ୍ଦ୍ରିୟଙ୍କ ନିୟନ୍ତ୍ରଣ କରି ପାରିବ ନାହିଁ। ସେଥିପାଇଁ ତାଳଧ୍ୱଜ, ଦେବୀଦଳନ ଏବଂ ନନ୍ଦିଘୋଷ ରଥର ପରିଚାଳନାର ଦାୟିତ୍ୱ ଯଥାକ୍ରମେ ମାତଳୀ, ଅର୍ଜ୍ଜୁନ ଏବଂ ଦାରୁକ ପରି ଦକ୍ଷ ସାରଥୀଙ୍କୁ ଅର୍ପଣ କରାଯାଇଛି। ଏଥିରୁ ଏହି ଶିକ୍ଷା ମିଳୁଛି ଯେ, ନିଜକୁ ପ୍ରଜ୍ଞାରେ ପ୍ରବୃଦ୍ଧି ଓ ବୁଦ୍ଧିରେ ଦୀପ୍ତ ନ କଲାଯାଏ ସଂଯମ ଶୃଙ୍ଖଳା ସ୍ୱପ୍ନ ହେଉଥିବ। ଇନ୍ଦ୍ରିୟ ଲାଳସା ଓ କାମନା ଭିତରେ କାହାରି ମଙ୍ଗଳ ନାହିଁ। ଅଛି ଖାଲି ଦୁଃଖ ଓ ପରାଭବ।

### ବିଧି ବିଧାନରେ ସତ୍ୟ-ଶିବ-ସୁନ୍ଦର

'ନବ କଳେବର' ଓ ବିଗ୍ରହରେ ଶକ୍ତି ସ୍ଥାପନ ଏକ ରହସ୍ୟମୟ ବିଧି, ଯାହା ଦେହ, ଦେହୀ ଏବଂ ଜଗତ୍ ମଧ୍ୟରେ ଥିବା ଗୂଢ଼ ସମ୍ପର୍କରେ ସତ୍ୟତା ପ୍ରତିପାଦନ କରେ। ମଣିଷ ଜୀର୍ଣ୍ଣ ପୁରାତନ ବସ୍ତ୍ର ପରିତ୍ୟାଗ କଲା ଭଳି ଆତ୍ମା ପୁରୁଣା ଶରୀର ପରିତ୍ୟାଗ କରି କିପରି ନୂତନ ଶରୀର ପ୍ରବେଶ କରୁଛି ତାର ଏକ ସୂକ୍ଷ୍ମ ଓ ସରଳ ନିଦର୍ଶନ ହେଉଛି ଏ ବିଧି।

ଅଣସର ଘରେ ରହିବା ବିଧିରେ ସାଧାରଣ ଲୋକ ଭାବନ୍ତି ଠାକୁରଙ୍କୁ ଜ୍ୱର ହୋଇଛି। ସେ ବିଶ୍ରାମ ନେଉଛନ୍ତି। ଛପନ କୋଟି ଭୋଗ ଛାଡି ପଣା ପିଉଛନ୍ତି। ସ୍ୱର୍ଣ୍ଣରତ୍ନ ଭୂଷଣ ଛାଡି ଖୋଲା ଦେହରେ ରହୁଛନ୍ତି। କିନ୍ତୁ ଆଧାତ୍ମିକ ଦର୍ଶନରେ ଏହାର ଉଦ୍ଦେଶ୍ୟ ଭିନ୍ନ। ଶରୀର ସାଧନାର ପୀଠ। ତାହାରି ମଧ୍ୟ ଦେଇ ସୁଖ, ଆନନ୍ଦ ସୌନ୍ଦର୍ଯ୍ୟ ଭୋଗ କରନ୍ତି ପ୍ରତ୍ୟେକ ମଣିଷ। ତାକୁ ସୁନ୍ଦର, ସଚଳ ଓ ଦୀର୍ଘାୟୁ କରିବା ପାଇଁ ମଧ୍ୟେ ମଧ୍ୟେ ଅଳ୍ପାହାର ଓ ଉପାସ ରହିବା ବିଧେୟ। ଭୋଗ ବସ୍ତୁ ତ୍ୟାଗ କରି ବେଶଭୂଷା ଅଡେଇ ସାଧାରଣ ଜୀବନ ଯାପନରେ ଯେଉଁ ଆନନ୍ଦ ଓ ଖୁସି ମିଳେ ତାହାର ଦୃଷ୍ଟାନ୍ତ ହେଉଛି ଏ ବିଧି।

ସର୍ବୋପରି ନବଯୌବନ ପ୍ରାପ୍ତି ଲାଗି ଏହା ହେଉଛି ଏକ ପ୍ରସ୍ତୁତି ପର୍ବ। ଏଠାରେ ଶିଳ୍ପୀ ବିବିଧ ରଙ୍ଗରେ ମୂର୍ତ୍ତିତ୍ରୟଙ୍କୁ ମନୋରମ କରନ୍ତି। ଅପୂର୍ଣ୍ଣ ରହିଥିବା ସୌଷ୍ଠବକୁ ପୂର୍ଣ୍ଣ କରନ୍ତି। ବିଶ୍ୱ ଦର୍ଶନକୁ ଯିବା ପୂର୍ବରୁ ସ୍ୱୟଂ ମହାପ୍ରଭୁଙ୍କର ଅପୂର୍ବ ବିଧି ଏହା ପ୍ରେରଣା ଦେଉଛି ଯେ ସମସ୍ତେ ଏହିପରି ନୀରବ ନିଶ୍ଚଳ ଗୃହରେ ଆତ୍ମଜ୍ଞାନ ଲାଗି ତପମଗ୍ନ ରହନ୍ତୁ। ଜୀବନକୁ ସରଳ ସୁନ୍ଦର ଓ ମଙ୍ଗଳମୟ କରିବା ପାଇଁ ଏହିପରି ନୈତିକ ସଂସ୍କାରର ଆବଶ୍ୟକତା ରହିଛି। ଏଠାରେ ନିଜେ ନିଜର ଗୁରୁ। ନିଜେ ନିଜର ଶିଷ୍ୟ। ନିଜେ ସ୍ଥପତି ଓ ସ୍ଥାପତ୍ୟ।

ଏବେ ସନ୍ଦେହ ଶକୁନ ଉଡୁଛନ୍ତି ଚାରିଆଡେ। ଅବିଶ୍ୱାସର ଅଜଗର ଶୋଇଛନ୍ତି ରାସ୍ତାରେ' ସର୍ବତ୍ର ଭୟର ଭୂତାଣୁ ସାଲୁବାଲୁ। ଧର୍ମରେ ଧୃତି ନାହିଁ ଅଛି ଧ୍ୱଂସ। ଅସ୍ତେୟ ନାହିଁ ଅଛି ଅନ୍ଧ ବିଶ୍ୱାସ। ଧୀ ନାହିଁ ଅଛି ଧପାବାଜ। ସେତେବେଳେ କିଏ କାହିଁକି କହିବ ଜଗନ୍ନାଥ ହେଉଛନ୍ତି ସାମ, ସୁଭଦ୍ରା ଯଦୁଃ, ସୁଦର୍ଶନ ଅଥର୍ବ ଏବଂ ବଳଭଦ୍ର ଋକ୍ ବେଦର ପ୍ରତୀକ? ଚେତନା ସ୍ତରରେ ମଣିଷ ବାମନ ହେବାକୁ ଆରମ୍ଭ କରିଛି। ଦି ଚାରି ପଦ ଭ୍ରାନ୍ତ ପ୍ରବଚନ ଶୁଣି ଓ ଶୁଣାଇ ନିଜକୁ ପଣ୍ଡିତ ଭାବୁଛି। ମଠ ଓ ମଞ୍ଚ ମଣିଷମାନେ ଅର୍ଥ ଅନର୍ଥ ଭିତରେ ସରଳ ମଣିଷର ମେଧା ହରଣରେ ମତ୍ତ। ଆମେ ସମସ୍ତେ ସମୁଦ୍ରସ୍ନାନରେ ଅଭିପ୍ସା ରଖିଛୁ। ଆମକୁ କୂପମଣ୍ଡୁକ କରିବାର ସ୍ପର୍ଦ୍ଧା କେହି ନ କରନ୍ତୁ। ଆମେ ବଳିୟାର ଭୁଜର ଆଶ୍ରୟୀ। ଆମର ଆହାର ଅବଢା। ନିବାସ ବାଇଶି ପାହାଚ। ଆମେ ବଡଦାଣ୍ଡକୁ ବାଟ ଦେଖିଛୁ। ରତ୍ନବେଦୀ ତଳେ ପ୍ରଣିପାତ କରିବା ଜାଣିଛୁ। ସତ୍ୟ-ଶିବ-ସୁନ୍ଦର ସାନ୍ନିଧ୍ୟ ଲାଗି ଆମେ ଏକା ଏକା ଯଥେଷ୍ଟ। ଆମକୁ ଦିଅଁ ଦେଖାଇ ଦକ୍ଷିଣା କି ରଥ ଚଢ଼ାଇ ପାଉଣା କେହି ନ ମାଗନ୍ତୁ। ଆମେ ସମସ୍ତେ ସତ୍ୟ-ଶିବ-ସୁନ୍ଦରର ଅଂଶ। ତେଣୁ ପୂର୍ଣ୍ଣ ସତ୍ୟ, ଚିର ଶିବ ଏବଂ ପରମ ସୁନ୍ଦରଙ୍କ ଉପାସନା ଆମର ଜନ୍ମଗତ ଅଧିକାର। ଏହି ଅଧିକାର ମୁକ୍ତ ଓ ନିଷ୍କଣ୍ଟକ ରହୁ।

ଉପସଭାପତି
ସିସୋର ସାହିତ୍ୟ ଏକାଡେମୀ
୪୪୩, ଶହୀଦ ନଗର
ଭୁବନେଶ୍ୱର



# ବାଇଶି ପାହାଚ

କୃଷ୍ଣଚନ୍ଦ୍ର ସୁଆର



ଶ୍ରୀକ୍ଷେତ୍ରର ଐତିହ୍ୟ ପରଂପରା ଓ ଧାର୍ମିକ ବିଶ୍ୱାସରେ ବାଇଶି ପାହାଚର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏଇଠି ଅଛି ବ୍ରହ୍ମଲୋକ, ପିତୃଲୋକ, ଧ୍ରୁବଲୋକ ଓ ଅଷ୍ଟବୈକୁଣ୍ଠ । ଏ ସ୍ଥାନ ପାବନ ପବିତ୍ରତାର ପ୍ରତୀକ । ଏଠାରେ ପିଣ୍ଡଦାନ, ଅନ୍ନଦାନ, ବସ୍ତ୍ରଦାନ କଲେ ପିତୃପୁରୁଷ ପାଆନ୍ତି ଏବଂ ମହାପୁଣ୍ୟ ଲାଭ ହୁଏ । ପିତୃଙ୍କ ଉଦ୍ଦେଶ୍ୟରେ ପ୍ରଣାମ ମନ୍ତ୍ର ଅନୁଧ୍ୟେୟ -

''ଦେବଣଭ୍ୟଃ ପିତୃଭ୍ୟଶ୍ଚ ମହାଯୋଗୀଭ୍ୟ ଏବ ଚ
ନମଃ ସ୍ୱାହାୟୈ ସ୍ୱଧାୟେ ନିତ୍ୟମେବ ନମୋ ନମଃ ।''

ଏହାର ଅଧିଷ୍ଠାତ୍ରୀ ଦେବୀଗଣ ହେଲେ-ମାୟା, ଚେତନା, ବୁଦ୍ଧି, ନିଦ୍ରା, କ୍ଷୁଧା, ଛାୟା, ଶକ୍ତି, ତୃଷ୍ଣା, କ୍ଷାନ୍ତି, ଜାତି, ଲଜ୍ଜା, ଶାନ୍ତି, ଶ୍ରଦ୍ଧା, କାନ୍ତି, ବୃତ୍ତି, ସ୍ମୃତି, ଦୟା, ତୁଷ୍ଟି, ଚିନ୍ତା, ମାତୃ, ଭ୍ରାନ୍ତି ଓ ପ୍ରଜ୍ଞା । ଏହାର ମହତ୍ତ୍ୱ ଓ ତାତ୍ତ୍ୱିକ ଅର୍ଥ ବ୍ୟାଖ୍ୟାନ କରିବାକୁ ଯାଇ ଭକ୍ତ ବଳରାମ ଦାସ 'ଗୁପ୍ତଗୀତା'ରେ ଉଲ୍ଲେଖ କରନ୍ତି-

''ବାଇଶି ପାବଚ୍ଛ ଯେ ବୀର, ରହସ୍ୟ ସ୍ଥଳ ନାମ ତାର ।
ଏହାଯେ ବାଇଶି ପାବଚ୍ଛ, ଅଠରକୋଟି ଶିବଲୋକ ।
ରହିଅଛନ୍ତି ପୃଷ୍ଠ ଭାଗେ, ତାଙ୍କୁ କହିବି ତୋର ଆଗେ ।''

ସିଂହଦ୍ୱାର ଦେଇ ଆମେ ଆରାଧ୍ୟ ଠାକୁର ଶ୍ରୀଜଗନ୍ନାଥଙ୍କୁ ଦର୍ଶନ ନିମନ୍ତେ ଶ୍ରୀମନ୍ଦିର ଭିତରକୁ ପ୍ରବେଶ କଲେ ଏକ ପାବଚ୍ଛ ଶ୍ରେଣୀ ଅତିକ୍ରମ କରିବାକୁ ହୁଏ । ଏହି ପାବଚ୍ଛ ବା ପାହାଚ ଶ୍ରେଣୀକୁ'ବାଇଶି ପାହାଚ' କୁହାଯାଏ । ଜଗନ୍ନାଥଙ୍କର ବଡ଼ଦେଉଳ, ବଡପଣ୍ଡା, ବଡଦାଣ୍ଡ, ବଡଭୋଗ ପରି ବଡ଼ପାବଚ୍ଛ ହେଉଛି ବାଇଶି ପାବଚ୍ଛ । କୂର୍ମବେଢ଼ା, ରୋଷଶାଳ, ଆନନ୍ଦ ବଜାର ଏହି ପାହାଚ ଦେଇ ଯିବାକୁ ହୋଇଥାଏ । ବହିଃସ୍ଥ ପାବଚ୍ଛ ଅର୍ଥାତ୍ ବାହାର ପାହାଚ ଶବ୍ଦରୁ ଅପଭ୍ରଂଶ ହୋଇ ବାଇଶି ପାହାଚ ହୋଇଛି ବୋଲି କେହି କେହି ମତବ୍ୟକ୍ତ କରନ୍ତି ।

ଶ୍ରୀମନ୍ଦିରର ଅଧିକାର-ଅଭିଲେଖରେ ପ୍ରଦତ୍ତ ନକ୍ସାନୁସାରେ ୧୫୭(କ)ରେ ବାଇଶି ପାହାଚ ଅବସ୍ଥିତ । ଏହା ବଉଳମାଳ ପଥରରେ ତିଆରି । ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ପ୍ରକୃତରେ ବାଇଶିଗୋଟି ପାହାଚ ନାହିଁ, ଏହାର ସଂଖ୍ୟା ଅଠର । ହୁଏତ ଅତୀତରେ ପାହାଚମାନଙ୍କ ମରାମତି ବା ସଂପ୍ରସାରଣ କରାଯିବା ଫଳରେ ଏହା ନ୍ୟୂନାଧିକ ହୋଇଯାଇଛି । ଅନୁମାନ କରାଯାଏ ସିଂହଦ୍ୱାର ପୂର୍ବରୁ ଚାରିଟି ପାହାଚ ଥିଲା, ତାହା ଅରୁଣ ଚକଡ଼ାରେ ପୋତି ହୋଇଯାଇଛି । ଏଣୁ କେତେକ ଆଲୋଚକ ଭିତର ଗୁମୁଟକୁ ଯିବାକୁ ଥିବା ଦୁଇଟି ପାହାଚ ଓ ଆନନ୍ଦ ବଜାରକୁ ଯିବାକୁ ପଡିଥିବା ଦୁଇଟି ପାହାଚକୁ ମିଶାଇ ମୋଟ ବାଇଶି କହନ୍ତି । ତେବେ କେଉଁ ଅନାଦି କାଳରୁ 'ବାଇଶି ପାହାଚ' ନାମରେ ଏହି ପାହାଚ ଶ୍ରେଣୀ ପ୍ରଚଳିତ ଓ କଥିତ । ଜନଶ୍ରୁତିରୁ ଶୁଣାଯାଏ ରାଜା ଭାନୁଦେବ ଏହାକୁ ନିର୍ମାଣ କରିଥିଲେ । ଏହାର ଲମ୍ବ ୭୦ ଫୁଟ, ଉଚ୍ଚତା ୬ଇଞ୍ଚରୁ ୭ ଇଞ୍ଚ । ଓସାର ୬ ଫୁଟ । ଏହାର ଆୟତନ ଏକ ପ୍ରକାର ନୁହେଁ, ଅଷ୍ଟାଦଶ ପାହାଚଟି ସବୁଠାରୁ ଓସାରିଆ । ପ୍ରସ୍ଥ ପ୍ରାୟ ୧୫ ଫୁଟ ହେବ । ଏହା ପଥରରେ ତିଆରି

ହେଲେ ହେଁ ଏହା ସାମାନ୍ୟ ପାବଚ୍ଛ ନୁହେଁ । ଏହି ପାବଚ୍ଛରେ ରହିଛି ଅନେକ ପବିତ୍ରତା ଓ ତତ୍ତ୍ୱ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର କରୁଣା ନହେଲେ ଭକ୍ତ ବାଇଶି ପାବଚ୍ଛ ଅତିକ୍ରମ କରିପାରିବ ନାହିଁ କି ଠାକରଙ୍କୁ ଦର୍ଶନ କରିପାରିବ ନାହିଁ । ସେଥିପାଇଁ ଲୋକେ କହନ୍ତି, କାଳିଆର ଡ଼ୋରି ନଲାଗିଲେ କେହି ଶ୍ରୀକ୍ଷେତ୍ରକୁ ଯାଇପାରନ୍ତି ନାହିଁ ।

ରଥକୁ ପହଣ୍ଡି ହୋଇ ଆସିବା ସମୟରେ ପ୍ରଭୁ ଏହି ପାହାଚ ଅତ୍ରିକମ କରି ଆସନ୍ତି । ବାଇଶି ପାହାଚରେ ଶ୍ରୀଜୀଉଙ୍କ ଦେବୋପମ ପହଣ୍ଡି ହେଲାବେଳେ ଏଠାରେ ଅବସ୍ଥିତ ପିତୃଶିଳା ନିକଟରେ ପିତୃପୁରୁଷଗଣ ଯମଶିଳା ନିକଟରେ ଚିତ୍ରଗୁପ୍ତ ଓ ଯମଦୂତଗଣ, ତେତ୍ରିଶ କୋଟି ଦେବଗଣ, ଗନ୍ଧର୍ବ, କିନ୍ନର, ଦେବନର୍ତ୍ତକୀ ସମସ୍ତେ ଉପସ୍ଥିତଥାନ୍ତି ଦର୍ଶନ ପାଇଁ । ପ୍ରଭୁ ନିତ୍ୟଲୋକରୁ ଭୂଲୋକକୁ ଆଗମନ କରନ୍ତି ଏହି ବାଇଶି ପାହାଚ ଦେଇ । ନବକଳେବର ସମୟରେ ଦଇତାପତିମାନେ ନବମୂର୍ତ୍ତି ଗଠନ ପରେ ପୁରୁଣା ମୂର୍ତ୍ତିମାନଙ୍କୁ କୋଇଲି ବୈକୁଣ୍ଠରେ ବିସର୍ଜନ ଦେବା ପରେ ଶୁଦ୍ଧି ହୁଅନ୍ତି । ସେଦିନ କ୍ଷୌର ପରେ ସ୍ନାନ କରିସାରି ନୂତନ ବସ୍ତ୍ର ପରିଧାନ କରିବା ପରେ ବାଇଶି ପାହାଚକୁ ଆସନ୍ତି । ସେଠାରେ ମୁଣ୍ଡିଆ ମାରି ଶାନ୍ତି ଉଦକ ପାଆନ୍ତି । କାରଣ ବାଇଶି ପାହାଚ ହେଉଛି ପବିତ୍ର ଓ ମୁକ୍ତିର ସ୍ଥାନ । ଭକ୍ତ ବାଇଶି ପାହାଚ ନିକଟରେ ପହଞ୍ଚି ପାଦଦେବା ପୂର୍ବରୁ ମୁଣ୍ଡିଆଟି ମାରି ବାଇଶି ପାହାଚର ଧୂଳିଟିକେ ମୁଣ୍ଡରେ ମାରି ଜୟ ଜଗନ୍ନାଥ ଡାକ ଦେଇ ଚାଲେ ତା ଆରାଧ୍ୟ ଠାକୁରଙ୍କ ସାନିଧ୍ୟ ଲାଭ ପାଇଁ କେତେ ଭାବ ପ୍ରବଣତା ଆଉ ଭକ୍ତି ଭାବ ବିହ୍ୱଳ ହୋଇ ସେତେବେଳେ ତାର ମନ ଅପାର ଆନନ୍ଦରେ ନାଚି ଉଠେ । ବାଇଶି ପାହାଚର ପ୍ରଥମ ପାହାଚର ବାମ ପାର୍ଶ୍ୱରେ ପଶ୍ଚିମାଭିମୁଖୀ କାଶୀ ବିଶ୍ୱନାଥ ମନ୍ଦିର ଅବସ୍ଥିତ । ଯୋଗ ସାଧନାର ନିୟମାନୁସାରେ ପ୍ରଥମେ ଯୋଗେଶ୍ୱର ଶିବ ବା ବିଶ୍ୱନାଥଙ୍କୁ ଦର୍ଶନ କରିବା ପରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଉଚିତ । କାଶୀ ବିଶ୍ୱନାଥ ହେଉଛନ୍ତି ବାଇଶି ପାହାଚର ପ୍ରଥମ ଦେବତା । ଭକ୍ତମାନେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ପରେ ବାଇଶି ପାହାଚରେ କିଛି ସମୟ ବସନ୍ତି । ବିଳମ୍ବରେ ସନ୍ତାନସନ୍ତତି ପ୍ରାପ୍ତ ହୋଇଥିବା କେତେକ ମାନସିକଧାରି ଦମ୍ପତ୍ତି ଛୋଟ ପିଲାଙ୍କୁ ପ୍ରଭୁଙ୍କ ଆଶୀର୍ବାଦ ପାଇବା ନିମିତ୍ତ ସେଠି ଗଡାଇ ଦିଅନ୍ତି ।

ବାଇଶି ପାହାଚରେ ପିତୃପୁରୁଷଙ୍କୁ ଯେଉଁ ଶ୍ରାଦ୍ଧ ଦିଆଯାଏ ସେ ସମ୍ବନ୍ଧରେ ଏକ କିମ୍ବଦନ୍ତୀ ଅଛି । ପୂର୍ବେ ରାଜା ଦର୍ପନାରାୟଣ ଶ୍ରୀଜଗନ୍ନାଥଙ୍କୁ ଦୈନିକ ଦର୍ଶନ କରିବା ସଙ୍ଗେ ସଙ୍ଗେ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଶ୍ରାଦ୍ଧ କରୁଥିଲେ । ତାଙ୍କର ସେବାରେ ସନ୍ତୁଷ୍ଟ ହୋଇ ଆରାଧ୍ୟ ଠାକୁର ଶ୍ରୀଜଗନ୍ନାଥ ଦିନେ ତାଙ୍କୁ ବ୍ରାହ୍ମଣ ବେଶରେ ଦେଖାଦେଇ ଆଶୀର୍ବାଦ କରିଥିଲେ । ସେହି ଦିନଠାରୁ ବାଇଶି ପାହାଚରେ ଶ୍ରାଦ୍ଧକର୍ମ କରାଯାଉଥିବା ଜଣାଯାଏ । ମହାଳୟା ଦିନ ବାଇଶି ପାହାଚରେ ଶ୍ରାଦ୍ଧ ଦେବାପାଇଁ ବହୁତ ଭିଡ଼ ହୁଏ । ଦୀପାବଳି ଅମାବାସ୍ୟା ଦିନ ପିତୃପୁରୁଷଙ୍କ ଉଦ୍ଦେଶ୍ୟରେ ଲୋକେ ପିଣ୍ଡଦାନ କରନ୍ତି । ଓଡ଼ିଆ ସାହିତ୍ୟରେ ବହୁ ଗୀତିକାର, କବି, ନାଟ୍ୟକାର, ଔପନ୍ୟାସିକ, କାବ୍ୟକାର ବାଇଶି ପାହାଚର ଭୂୟସୀ ବର୍ଣ୍ଣନା କରିଛନ୍ତି । ପୂର୍ବେ ବାଇଶି ପାହାଚରେ ମହାପ୍ରସାଦ ବିକ୍ରୀ ଓ ସେବନର ବ୍ୟବସ୍ଥା ଥିବା କଥା ପ୍ରାଚୀନ ମହାମନା କବିମାନଙ୍କ ରଚନାରେ ଉଲ୍ଲେଖ କରିଛନ୍ତି । ଉଦାହରଣତଃ ଭକ୍ତକବି ସାଲବେଗ କହନ୍ତି-

''ବାଇଶି ପାହାଚ ଗଲି ସୁଖେ/ କୈବଲ୍ୟ ପସରା ବେନି ପାଖେ/ବ୍ରାହ୍ମଣ, ଚଣ୍ଡାଳ, କ୍ଷତ୍ରୀ ବୀରବର/କୈବଲ୍ୟ ଦିଅନ୍ତି ମୁଖେ ମୁଖେ ।'' ଭକ୍ତକବି ସାରିଆ ଭିକଙ୍କ ଜନପ୍ରିୟ ଭଜନ 'ଥକାମନ ଚାଲଯିବା'ରେ ''ବାଇଶି ପାହାଚେ ବିକା/ହେଉଛି କୈବଲ୍ୟ ଚୋଖା/ହାଣ୍ଡିକ ପଡେ ସିଉକା/ମନରଙ୍କା ଛଡ଼ାଇବା/ଥକାମନ ଚାଲଯିବା । କବି ପୁରୁଷୋତ୍ତମ ଦାସ ଅଠରନଳା ବୋଲିରେ- ''କେ ବୋଲଇ ଆଲୋ ତରାଲୋ/ମୁହଁକୁ ପଡୁଛି ଖରାଲୋ/ ବାଇଶି ପାହାଚେ ଯାଇଣ କିଣିମା/ପୋଡ଼ପିଠା ଦୁଇସରା ଲୋ'' 'ନାମସାର ଗୀତା'ର ପ୍ରଣେତା କବି ମଣିଦାସ ମୁଖକୁ ସିଂହଦ୍ୱାର ରୂପେ କଳ୍ପନା କରି ତା'ଭିତରେ ଭୋଗମଣ୍ଡପ, କଳ୍ପବଟ, ବାଇଶି ପାହାଚ, ଗରୁଡ଼ ସ୍ତମ୍ଭ ପ୍ରଭୃତିର ଚମତ୍କାର ଅବତାରଣା କରିଛନ୍ତି- ''ମୁଖକୁ ସିଂହଦ୍ୱାର କହି/ଭୋଗମଣ୍ଡପ ଅଟେ ସେହି/ଜିହ୍ୱାରସ ଯେ ନାରାୟଣ/ବାଇଶି ପାବଚ୍ଛ ଦନ୍ତେଣ/ନାସା ଗରୁଡ଼ ସ୍ତବ କହି/ ଦେବନାଶନ ବଟ ତହିଁ ।'' ଗଜପତି ବୀରକିଶୋରଦେବ- ''ଶ୍ରୀକ୍ଷେତ୍ର ନବରେ ମହାଐଶ୍ୱର୍ଯ୍ୟରେ/ଥିଲେ ହେଁ କମଳାସାଇଁ/ ବାଇଶି ପାବଚ୍ଛ ନଉଠିବା ଯାଏଁ/ଆନନ୍ଦ ନପାଏ କାହିଁ ।'' ଏତଦ୍‌ବ୍ୟତୀତ କଥାସାହିତ୍ୟ ଶିଳ୍ପୀ ସୁରେନ୍ଦ୍ର ମହାନ୍ତିଙ୍କ ନୀଳଶୈଳ ଓ ନିଳାଦ୍ରୀ ବିଜୟ ଉପନ୍ୟାସ ସମେତ 'ବାଇଶି ପାହାଚ' ଆଧୁନିକ କବି ଦୃଷ୍ଟିରେ ସ୍ୱତନ୍ତ୍ର ଆସନରେ ଆସୀନ ହୋଇରହିଛି ।

କେତେକଙ୍କ ମତରେ ଦଶଅବତାରଗୁଡିକର ଗୋଡସଂଖ୍ୟା ମିଶି ବାଇଶି ହୋଇଥିବାରୁ ସେହି ଅନୁସାରେ ବାଇଶି ପାହାଚ ହୋଇଛି । ଅଷ୍ଟବୈକୁଣ୍ଠ ଓ ଚଉଦ ଭୁବନ ମିଶି ବାଇଶି, ବାଇଶି



ପାହାଚର ପ୍ରତୀକ ଏ ଉଭୟଦେଇ ରତ୍ନବେଦୀ ନିକଟକୁ ଯିବାକୁ ହୁଏ । ଦ୍ୱାଦଶଖଣ୍ଡ ଓଡ଼ିଆ ଭାଗବତ ସହିତ ବାସୁଦେବ, ନୃସିଂହ, ରାମକୃଷ୍ଣ ନାରାୟଣ, ଗୋବିନ୍ଦ, ମାଧବ, ମଦନମୋହନ, ଶ୍ରୀଦେବୀ, ଭୂଦେବୀ, କମଳା ଓ ଭୁବନେଶ୍ୱରୀ ଦେବଦେବୀ ମିଶି ବାଇଶି, ଏହା ବାଇଶି ପାହାଚର ପ୍ରତିଫଳନ । ପଞ୍ଚମାତ୍ରା, ପଞ୍ଚଭୂତ, ପଞ୍ଚବୀଜ, ପଞ୍ଚଦେବଙ୍କ ସହିତ ଜୀବ ଓ ପରମ ଦୁଇମିଶି ବାଇଶି, ଏହାର ପ୍ରତୀକାତ୍ମକ ହେଉଛି ବାଇଶି ପାହାଚ । କେତେକ କହନ୍ତି-ବାଇଶିଟି ତୀର୍ଥଭୂମିର ସ୍ୱରୂପ ବାଇଶି ତତ୍ତ୍ୱର ପ୍ରତୀକ ଓ ବାଇଶିଟି ଭାବର ପ୍ରତୀକ ହେଉଛି ବାଇଶି ପାହାଚ । ପଞ୍ଚରସ, ଅଷ୍ଟତାତ୍ତ୍ୱିକ ଭାବ, ତ୍ରିବୀଜ, ତ୍ରିଶକ୍ତି, ତ୍ରିଗୁଣର ସମାହାର ହେଉଛି ବାଇଶି । ଯାହାକି ବାଇଶି ପାହାଚରେ ପ୍ରତିଫଳିତ ।

ପରିଶେଷରେ କ୍ରୋଧକୁ ଦମନ କରିଥିବା ଆସକ୍ତି ନଥିବା ଜିତେନ୍ଦ୍ରିୟ ହୋଇଥିବା କ୍ଷମା ତଥା ଦୟାଗୁଣ ସମ୍ପୂର୍ଣ୍ଣ ହୋଇଥିବା ନିର୍ଲୋଭ ଦାନୀ, ଭୟହୀନ, ଶୋକହୀନ ଏଇ ଦଶଗୁଣ ଭରପୂର ଥିବା ବ୍ୟକ୍ତି ଭକ୍ତ ପଦବାଚ୍ୟ ବୋଲି ଭଗବାନ ଉଦ୍ଧବଙ୍କୁ କହିଛନ୍ତି । ପ୍ରକୃତରେ ଏହି ଭକ୍ତମାନେ ଉଚ୍ଚସ୍ତରର ମଣିଷ । ଭକ୍ତିପ୍ରିୟ ଠାକୁରଙ୍କୁ ନିଜର କରିବାକୁ ହେଲେ ଦଶଇନ୍ଦ୍ରିୟ, ପଞ୍ଚମନ ଓ ସପ୍ତବିକାର ଭଳି ଖରାପ ଗୁଣ ତ୍ୟାଗ କରିବାକୁ ପଡେ । କାରଣ ଏହାର ପ୍ରତୀକାତ୍ମକ ରୂପ ହେଉଛି ବାଇଶି ପାହାଚ । ନିର୍ମଳମନ, ଖୋଲା ଉତ୍ସର୍ଗୀକୃତ ହୃଦୟରେ ଏହି ବାଇଶି ପାହାଚକୁ ଅତିକ୍ରମ କଲେ ଭକ୍ତ ପ୍ରିୟମାଧବ ଶ୍ରୀଜଗନ୍ନାଥଙ୍କ ନିକଟରେ ପହଞ୍ଚିପାରିବ । ଆତ୍ମା ଓ ପରମାତ୍ମାଙ୍କର ମଧୁର ମିଳନ ହେବା ସଙ୍ଗେ ସଙ୍ଗେ ତାଙ୍କରି ସ୍ପର୍ଶରେ ପାପ ବିନାଶ ହୋଇଯିବ । ପବିତ୍ର ବାଇଶି ପାହାଚଙ୍କୁ ମୋର କୋଟି କୋଟି ପ୍ରଣାମ ।

ଏମ୍.ଆଇ.ଜି.ଓ୍ୱାନ୍ ୪୨/୧,
ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ଼ କଲୋନୀ,
ଭୁବନେଶ୍ୱର-୧୬

---

# ଇଚ୍ଛାମୟ

ଡାକ୍ତର ସରୋଜିନୀ ଷଡଙ୍ଗୀ

ସହସ୍ର ସୂର୍ଯ୍ୟର ଦ୍ୟୁତି
ତୁମ ଜ୍ୟୋତି ସମ୍ମୁଖରେ
ଲାଗେ କେତେ ନିଷ୍ପ୍ରଭ ମଳିନ
ସହସ୍ରର ଚନ୍ଦ୍ର କିରଣ
ତୁମ ସ୍ନିଗ୍ଧ ଜୋଛନା ଆଗରେ
ଦେଖାଯାଏ ଫିକା ଫିକା
ଶ୍ରୀହୀନ ଶ୍ରୀହୀନ
ସହସ୍ର ଆଖିର ଦୃଷ୍ଟି
ତୁମ ଦୁଇ ଚକା ଆଖି
ଅପଲକ ଚାହାଣୀ ସାମ୍ନାରେ
ହୋଇଯାଏ ପଲକେ ନିଷ୍ପ୍ରାଣ
ସହସ୍ର ରଂଗରେ ମଖା ଇନ୍ଦ୍ରଧନୁ
ତୁମ ଶ୍ରୀଅଙ୍ଗ ସାମ୍ନାରେ
ଦିଶୁଥାଏ ବିରସ, ବିବର୍ଣ୍ଣ
ସହସ୍ର ପୂର୍ଣ୍ଣ ଚନ୍ଦ୍ରର
ଅପୂର୍ବ ଆଲୋକଠାରୁ
ଅନିର୍ବଚନୀୟ ତୁମ
ଘନଶ୍ୟାମ ରୂପ ଲାଗେ
ଅହର୍ନିଶି ଉଜ୍ଜ୍ୱଳ ଉଜ୍ଜ୍ୱଳ
ତୁମେ ମୋର ବନ୍ଧୁ ପୁଣି
ତୁମେ ମୋର ସଖା ବୋଲି
ଭକ୍ତିମୟ ଆବେଗରେ
ଦୁଇ ହାତ ଯୋଡି-ଦେଲା ବେଳେ
ବରଦ ମୁଦ୍ରାରେ ତୁମେ
ଉଭାହୁଅ ଦିବ୍ୟ ଇଚ୍ଛାମୟ
ତୁମଠି ଉଦ୍‌ଗତ ପ୍ରାଣ
ତୁମେ ମୋର ଅଭୟ ଆଶ୍ରୟ
ତୁମ ପାଇଁ ପରିପୂର୍ଣ୍ଣ
ଅର୍ଘ୍ୟଟିଏ
ଅର୍ପି ଦେଲାବେଳେ
ଜୀବନର ପ୍ରତିଟି ଶୂନ୍ୟତା ମୋର
ହୋଇଯାଏ ଅନୁରାଗମୟ

ଲିଙ୍କ ରୋଡ
କଟକ - ୧୨



# ପୁରୁଷୋତ୍ତମ କ୍ଷେତ୍ର ଓ ପଞ୍ଚତୀର୍ଥ

ଶ୍ରୀନିବାସ ଆଚାର୍ଯ୍ୟ



ଭାରତ କାହିଁକି ସମଗ୍ର ବିଶ୍ୱଦରବାରରେ କ୍ଷେତ୍ର, ପୀଠ ତଥା ଧାମମାନଙ୍କ ମଧ୍ୟରେ ଓଡ଼ିଶାର ପୁରୁଷୋତ୍ତମ କ୍ଷେତ୍ର ଅତୀବ ମହାନ । ଏହି କ୍ଷେତ୍ରର ସଂସ୍କୃତି, ପରମ୍ପରା, କଳା ତଥା ଭାସ୍କର୍ଯ୍ୟ ଆକର୍ଷିତ କରିପାରିଛି ବିଶ୍ୱର ଆଧ୍ୟାତ୍ମିକ ପ୍ରେମୀମାନଙ୍କୁ । ଏଠାରେ ଥିବା ଶତଶତ ମନ୍ଦିର, ଆଶ୍ରମ, ମଠ, ଗାଦି ଓ ତୀର୍ଥକ୍ଷେତ୍ରମାନ ସୃଷ୍ଟି କରିପାରିଛି । ଐଶ୍ୱର୍ଯ୍ୟପୁରୀ ପରି ପବିତ୍ର ପରିବେଶ । ବିଭିନ୍ନ ଧର୍ମଗୁଡିକ ମଧ୍ୟରେ ଭିନ୍ନ ମତବାଦ ଥିଲେ ମଧ୍ୟ କିନ୍ତୁ ସବୁଧର୍ମର ସମନ୍ୱୟ ଘଟିଛି ଏହି ଦେବକ୍ଷେତ୍ରରେ । ଏହି ପୁରୁଷୋତ୍ତମ ପୀଠର ବଡ଼ଠାକୁର ଜଗତରନାଥ ଶ୍ରୀଜଗନ୍ନାଥ ତଥା ଅଶେଷ କରୁଣାର ସାଗର ଓ ବ୍ରହ୍ମାଣ୍ଡପତି ବଡ଼ ଭାଇ ବଳଭଦ୍ର, ଭଉଣୀ ସୁଭଦ୍ରାଙ୍କ ସହ ବିରାଜିତ ଶ୍ରୀମନ୍ଦିରର ରତ୍ନ ସିଂହାସନରେ । ସେ କେହି ନୁହନ୍ତି, ସେ ଅଟନ୍ତି ସାକ୍ଷାତ ପରଂବ୍ରହ୍ମ ବିଷ୍ଣୁ ।

ଶ୍ରୀବିଷ୍ଣୁଙ୍କ ସହସ୍ର ନାମ ମଧ୍ୟରେ ଶ୍ରୀପୁରୁଷୋତ୍ତମ ନାମ ଅନ୍ୟତମ, ଠିକ୍ ସେପରି ଅଶେଷ କ୍ଷେତ୍ରାନୁସାରେ ପୁରୁଷୋତ୍ତମ କ୍ଷେତ୍ର ମଧ୍ୟ ଅନ୍ୟତମ । ପୁରୁଷୋତ୍ତମ କ୍ଷେତ୍ରର ଅନ୍ୟନାମଗୁଡିକ ହେଲା, ଶ୍ରୀକ୍ଷେତ୍ର, ନୀଳାଚଳକ୍ଷେତ୍ର, ଶଙ୍ଖକ୍ଷେତ୍ର, ଶ୍ରୀଜଗନ୍ନାଥକ୍ଷେତ୍ର, ପତିତପାବନ କ୍ଷେତ୍ର, ଦାରୁକ୍ଷେତ୍ର, ମୁକ୍ତିକ୍ଷେତ୍ର, ଦଶଅବତାର କ୍ଷେତ୍ର, କମ୍ବୁକ୍ଷେତ୍ର, ଦିବ୍ୟକ୍ଷେତ୍ର, ଭୋଗକ୍ଷେତ୍ର ଇତ୍ୟାଦି ।

ପୁରୁଷୋତ୍ତମ କ୍ଷେତ୍ରର ମହିମା ଓ ଗୁଣଗାରିମା ପୃଥିବୀର ଅନ୍ୟ କୌଣସି ଧର୍ମପୀଠରେ ଦେଖିବା ବିରଳ । ଏହି କ୍ଷେତ୍ରର ତଥ୍ୟ ଓ ତତ୍ତ୍ୱକୁ ହୃଦୟଙ୍ଗମ କରିବା କୌଣସି ଜ୍ଞାନୀ, ଗୁଣୀ, ବୁଦ୍ଧିଜୀବୀ, ସାଧୁ, ସନ୍ଥ ଓ ମୁନିଋଷିମାନଙ୍କ ପକ୍ଷରେ ସମ୍ପୂର୍ଣ୍ଣ ଅସମ୍ଭାବୀ । ନୀଳ ଆକାଶର ପରିସୀମା ତଥା ଆକୃତି ଯେପରି ଅନନ୍ତ, ଅସୀମ, ଠିକ୍ ସେପରି ପୁରୁଷୋତ୍ତମ କ୍ଷେତ୍ରର ସଂସ୍କୃତି, ପୂଜାପଦ୍ଧତି ଓ ବେଶଭୂଷା ମଧ୍ୟ ବୈଚିତ୍ରମୟ । ଏହି କ୍ଷେତ୍ରର ମହତ୍ତ୍ୱର ଗଭୀରତା ଅମାପ ଓ ଅତୁଳନୀୟ ଅଟେ । ଆତ୍ମିକ ଚେତନା ରୂପରେ ଏହି କ୍ଷେତ୍ରର ରାଜ ଶ୍ରୀପୁରୁଷୋତ୍ତମ ସବୁଠାରେ ବିରାଜିତ । ସେ ସବୁଠାରେ ଅଛନ୍ତି, ପୁଣି କେଉଁଠାରେ ନାହାଁନ୍ତି । ସେ ଧନୀର ଦେବତା ଓ ଗରିବର ମଧ୍ୟ ଦେବତା । ପରମଭକ୍ତ ତାଙ୍କୁ ଯେପରି ଡାକନ୍ତି, ସେ ସେପରି ଦର୍ଶନ ଦେଇଥାନ୍ତି । ସେ ଦୁଷ୍ଟ, ଗର୍ବ, ଅହଂକାରୀ ଲୋକମାନଙ୍କ ପାଖରୁ ଦୂରେଇ ଯାଆନ୍ତି ଓ ଭଦ୍ର, ନମ୍ର, ଭକ୍ତି ଓ ସତ୍ୟମାନଙ୍କ ପାଖରେ ସର୍ବଦା ଥାଆନ୍ତି । ତେଣୁ ଯେଉଁ କ୍ଷେତ୍ରରେ ଅଧିଷ୍ଠିତ ଦେବ ପୁରୁଷୋତ୍ତମ, ସେହି କ୍ଷେତ୍ରର ପବିତ୍ରତା ତଥା ମହନୀୟତା କେତେ, ଏଥିରୁ ଅନୁମେୟ ।

ଶ୍ରୀପୁରୁଷୋତ୍ତମଙ୍କର ସଂସ୍କୃତି ଓ ପରମ୍ପରା ରହସ୍ୟମୟ । ଏହି କ୍ଷେତ୍ରରେ ଥିବା ଅନ୍ୟାନ୍ୟ ମନ୍ଦିର, ମଠ, ଗାଦି ଓ ତୀର୍ଥକ୍ଷେତ୍ରଗୁଡିକର ମାହାତ୍ମ୍ୟ ଓ ଗୁରୁତ୍ୱ ମଧ୍ୟ ବିଚିତ୍ରମୟ । ଏହି କ୍ଷେତ୍ରକୁ ଅଶେଷ ଧାମ ନାମରେ ପୁରାଣ ଓ ଶାସ୍ତ୍ରଗୁଡିକରେ ସୂଚିତ ହୋଇଅଛି । ବିଭିନ୍ନ ଯୁଗରେ ସ୍ୱୟଂ ବିଷ୍ଣୁ ଭିନ୍ନ ଭିନ୍ନ ରୂପରେ ଅବତାର ଗ୍ରହଣ କରିଥିଲେ । କାରଣ ଯେତେବେଳେ ଧରାପୃଷ୍ଠରେ ପାପଭାର ପୂରିଯାଇଥାଏ ଓ ଅନ୍ୟାୟ ଅତ୍ୟାଚାରରେ ସାଧୁ ସନ୍ଥମାନେ ନିଷ୍ପେସିତ ହୁଅନ୍ତି, ସେତେବେଳେ ଭଗବାନ ମାନବ ରୂପରେ ମର୍ତ୍ତ୍ୟମଣ୍ଡଳରେ ଦୁଷ୍ଟମାନଙ୍କୁ ନିପାତ କରି ସନ୍ଥମାନଙ୍କୁ ପାଳନ କରିଥାନ୍ତି ।

ଶ୍ରୀପୁରୁଷୋତ୍ତମ ପୁଣ୍ୟଭୂମି ଭାରତବର୍ଷରେ ତାଙ୍କର ନିତ୍ୟଲୀଳା ସମ୍ବରଣ କରିବା ପାଇଁ ୪ଟି ସ୍ଥାନ ଅଛି । ଏହି ଚତୁର୍ଦ୍ଧାମ ମଧ୍ୟରେ



ପୁରୁଷୋତ୍ତମ ଧାମ ଶ୍ରେଷ୍ଠ ରୂପେ ବିବେଚିତ । କାରଣ ଭଗବାନ ଶ୍ରୀପୁରୁଷୋତ୍ତଙ୍କର ନିତ୍ୟଲୀଳା ଭୂମି ରୂପେ ପୁରାଣରେ ପ୍ରସିଦ୍ଧି ଲାଭ କରିଅଛି । ଭାରତର ଉତ୍ତର ଦିଗରେ ବଦ୍ରିନାଥ-ସ୍ନାନପୀଠ, ପଶ୍ଚିମରେ ଦ୍ୱାରିକା ବେଶଭୂଷା ପୀଠ, ଦକ୍ଷିଣରେ ରାମେଶ୍ୱରଠାରେ ଶୟନପୀଠ ଓ ପୂର୍ବରେ ପୁରୁଷୋତ୍ତମରେ ଭୋଜନପୀଠ ରୂପେ ବିରାଜିତ । ଭାଗବତରେ ଉଦ୍ଧୃତ:

''ସକଳ ତୀର୍ଥ ତୋ ଚରଣେ
ବଦ୍ରିକା ଯିବି କି କାରଣେ ।''

ଅଖିଳ ବ୍ରହ୍ମାଣ୍ଡ ସୃଷ୍ଟି ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ର ମର୍ତ୍ତ୍ୟଲୋକରେ ବୈକୁଣ୍ଠପୁରୀ ନାମରେ ବିବେଚିତ । କାରଣ ଭଗବାନ ବିଭିନ୍ନ ରୂପରେ ଓ ସମୟରେ ଏହି ଦେବପୀଠ ଉପରେ ମାନବ ରୂପେ ଜନ୍ମଲାଭ କରି ତାଙ୍କର ଲୀଳା ପ୍ରକଟ କରିଥାନ୍ତି । ଏହି ପବିତ୍ର ଭୂମି ତାଙ୍କର ବାସସ୍ଥାନ ଅଟେ । ସ୍କନ୍ଦ ପୁରାଣରେ ବର୍ଣ୍ଣିତ ଅଛି ସ୍ୱୟଂ ଭଗବାନ ଏହି କ୍ଷେତ୍ରରେ ଦଶାବତାର ହୋଇଥିଲେ । ତେଣୁ ସେ ସଦାସର୍ବଦା ଏହି କ୍ଷେତ୍ରରେ ବିରାଜିତ । ପରମଭକ୍ତ ଜୟଦେବଙ୍କ ଦ୍ୱାରା ଲିଖିତ ''ଗୀତଗୋବିନ୍ଦ'' କାବ୍ୟରେ ଦଶାବତାର ସମ୍ପର୍କରେ ବିସ୍ତୃତ ସ୍ଥାନ ପାଇଅଛି । ଯଥା- ମତ୍ସ୍ୟ, କଚ୍ଛପ, ବରାହ, ନୃସିଂହ, ବାମନ, ପର୍ଶୁରାମ, ରାମ, କୃଷ୍ଣ, ବୁଦ୍ଧ ଓ କଲ୍‌କୀ ଅବତାର ।

ଏଠାରେ ଥିବା ଶତ ଶତ ମଠମାନଙ୍କ ମଧ୍ୟରେ ଦଶାବତାର ନାମରେ ଏକମଠ ବିଦ୍ୟମାନ । ଅତୀତରେ ଏହି ମଠ ଥିଲା ଶ୍ରୀଜଗନ୍ନାଥଙ୍କର ପରମଭକ୍ତ ଜୟଦେବଙ୍କର ଆଶ୍ରମ, ଯାହାକି ଆଜି ସେହି ଆଶ୍ରମ ଦଶାବତାର ମଠରେ ପରିଣତ ହୋଇଅଛି ।

କଥାରେ ଅଛି ତୀର୍ଥମୟୀ ଶ୍ରୀକ୍ଷେତ୍ର । ସେହି ଶତ ଶତ ତୀର୍ଥମଧ୍ୟରେ ପଞ୍ଚତୀର୍ଥର ଆଧ୍ୟାତ୍ମିକ ମହିମା ଓ ଗୁଣଗାରିମାର ମହାନ୍ ଗୁରୁତ୍ୱ ବହନ କରିଛି । ଦେଶବିଦେଶରୁ ଅସଂଖ୍ୟ ଭକ୍ତ ଓଡ଼ିଶାର ବଡଠାକୁର ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ସଙ୍ଗେ ସଙ୍ଗେ ଏହି କ୍ଷେତ୍ରରେ ଥିବା ପଞ୍ଚତୀର୍ଥ ଦର୍ଶନ କରିବାର ସୌଭାଗ୍ୟ ଅର୍ଜନ କରିଥାନ୍ତି । ଚତୁର୍ଦ୍ଦଶ ଶତାବ୍ଦୀରେ ରଚିତ ଶ୍ରୀକ୍ଷେତ୍ର ମାହାତ୍ମ୍ୟ ସମ୍ୱଳିତ ବ୍ରହ୍ମପୁରାଣରେ ପଞ୍ଚତୀର୍ଥ ସମ୍ବନ୍ଧରେ ସୂଚନା ଦିଆଯାଇଅଛି ।

ଶ୍ରୀପୁରୁଷୋତ୍ତମ ଠାକୁରଙ୍କ ସହିତ ଏହି ପାଞ୍ଚଟି ତୀର୍ଥର ନିବିଡ ସମ୍ପର୍କ ରହିଅଛି । ପରସ୍ପର ମଧ୍ୟରେ ଥିବା ଏହି ସମ୍ପର୍କ ସୃଷ୍ଟି କରିପାରିଛି ପରମ ଭକ୍ତମାନଙ୍କ ହୃଦୟ ମନ୍ଦିରରେ ଆଧ୍ୟାତ୍ମିକର ଚେତନାଶକ୍ତି ଓ ଐଶ୍ୱରିକ ପ୍ରେମ । ଆଉ ମଧ୍ୟ ଶ୍ରୀପୁରୁଷୋତ୍ତମ ଧର୍ମ ସ୍ରୋତରେ ଏହି ପଞ୍ଚତୀର୍ଥର ମହତ୍ୱ ମିଶି ସୃଷ୍ଟି କରିଛି ଏକ ମହାନ୍ ଧର୍ମନଦୀର ସ୍ରୋତ । କଥିତ ଅଛି ଏହି ମହାନ୍ ଧର୍ମସ୍ରୋତକୁ ଯେଉଁ ଭକ୍ତ ସ୍ପର୍ଶ କଲା, ତାର ସମସ୍ତ ପାପକ୍ଷୟ ହେବା ସଙ୍ଗେ ସଙ୍ଗେ ପୁର୍ନଜୀବନ ପର୍ଯ୍ୟନ୍ତ ଧର୍ମ ଅର୍ଜନ କରିଥାଏ । ଏତଦ୍‌ବ୍ୟତୀତ ଶରୀରର ସମସ୍ତ ରୋଗରୁ ମୁକ୍ତ ହୋଇଥାଏ । ପୂର୍ବପୁରୁଷଙ୍କୁ ଏଠାରେ ପିଣ୍ଡଦାନ ଦେଲେ, ସେମାନଙ୍କର ଆତ୍ମା ମୁକ୍ତିଲାଭ କରିଥାଏ । ସେହି ପଞ୍ଚତୀର୍ଥଗୁଡିକର ନାମ ଯଥା- ୧- ମାର୍କଣ୍ଡେୟ ପୁଷ୍କରିଣୀ, ୨-ଶ୍ୱେତଗଙ୍ଗା, ୩- ରୋହିଣୀକୁଣ୍ଡ, ୪- ମହୋଦଧି, ୫-ଇନ୍ଦ୍ରଦ୍ୟୁମ୍ନ ସରୋବର ।

**ମାର୍କଣ୍ଡେୟ ପୁଷ୍କରିଣୀ**

ପଞ୍ଚତୀର୍ଥ ମଧ୍ୟରେ ମାର୍କଣ୍ଡେୟ ପୁଷ୍କରିଣୀ ତୀର୍ଥଟି ସର୍ବପ୍ରଥମ । ଶ୍ରୀଜଗନ୍ନାଥ ମନ୍ଦିରର ଉତ୍ତରରେ ମାର୍କଣ୍ଡେଶ୍ୱର ସାହିରେ ଏହି ପୁଷ୍କରିଣୀଟି ଅବସ୍ଥିତ । ଏହାର କ୍ଷେତ୍ରଫଳ ୧.୬ ହେକ୍ଟର । ଏହାର ତୀରଦେଶରେ ମାର୍କଣ୍ଡେଶ୍ୱର ଶିବ ମନ୍ଦିର ଓ ଅଷ୍ଟଶମ୍ଭୁ ମନ୍ଦିର ଦଣ୍ଡାୟମାନ । ଏହାର ଉତ୍ତରପଟେ ଏକ ବଟବୃକ୍ଷ ତଳେ ଅଷ୍ଟମାତୃକା ମୂର୍ତ୍ତି ଓ ମୃତ୍ୟୁଞ୍ଜୟ ଲିଙ୍ଗଅଛି । ପୁରାଣଶାସ୍ତ୍ର ମାନଙ୍କରେ ବର୍ଣ୍ଣିତ ବ୍ରହ୍ମାଣ୍ଡ ପ୍ରଳୟ ସମୟରେ ସମସ୍ତ ଜୀବଜଗତ ଜଳରେ ବିଲୀନ ହୋଇଯାଇଥିଲେ । ସେତେବେଳେ ମାର୍କଣ୍ଡେୟ ନାମକ ଏକ ମହର୍ଷି ଜଳରେ ଭାସି ଭାସି ଶ୍ରୀକ୍ଷେତ୍ରରେ ଥିବା ଏକ ବଟକଳ୍ପ ପାଖରେ ପହଞ୍ଚି ଦେଖିଲେ ସ୍ୱୟଂ ଭଗବାନ ବିଷ୍ଣୁ ଗଛର ଏକ ପତ୍ରରେ ଅଙ୍ଗୁଷ୍ଠ ପ୍ରମାଣ ପୁରୁଷ ରୂପେ ଶୟନ କରିଛନ୍ତି । ସିଦ୍ଧ ମହର୍ଷି ସ୍ୱୟଂ ପରଂବ୍ରହ୍ମଙ୍କୁ ଦର୍ଶନ କରିବା ସଙ୍ଗେ ସଙ୍ଗେ ତାଙ୍କ ପାଟିମାଧ୍ୟମରେ ଗର୍ଭଗୃହ ଭିତରକୁ ନେଇଗଲେ । କିଛି କାଳ ତାଙ୍କ ପେଟ ଭିତରେ ଅବସ୍ଥାପନ କରିବା ପରେ ପଦାକୁ ଆସି ଭଗବାନଙ୍କୁ ପ୍ରାର୍ଥନା କଲେ । ଯଦିଓ ଋଷି ପ୍ରତୀମ ଭଗବାନଙ୍କ ପେଟ ଗହ୍ୱରରେ ବିଭିନ୍ନ ଅଲୌକିକ ଘଟଣା ଦର୍ଶନ ଓ ଆହରଣ କରିଥିଲେ, କିନ୍ତୁ ଆତ୍ମଜ୍ଞାନ ଲାଭ କରିପାରିନଥିଲେ । ତେଣୁ ଋଷି କିଛି କାଳ ତପସ୍ୟାମଗ୍ନ ହୋଇ ରହିଥିଲେ । ଋଷିଙ୍କ ତପସ୍ୟାରେ ପ୍ରୀତ ହୋଇ ଭଗବାନ କହିଥିଲେ, ଏହି ପୁରୁଷୋତ୍ତମ ପୀଠଟି ହେଉଛି ଏକ ପବିତ୍ର ଓ ଧର୍ମ ଆହରଣ କରିବାର ପ୍ରକୃତ ପୀଠ । ଆଉ ମଧ୍ୟ ମୋର ନିତ୍ୟଲୀଳା ପୀଠ । ଏଠାରେ ପ୍ରଳୟ ହୁଏ ନାହିଁ । ତୁମପାଇଁ ମୁଁ ଗୋଟିଏ ବାସସ୍ଥଳୀ କରିଦେବି । ତେଣୁ ତୁମେ ଏଠାରେ ବସତି ସ୍ଥାପନ କର । ସେହି ସତ୍ୟଲୀଳାସ୍ଥଳୀ ତଥା ମାର୍କଣ୍ଡେୟ ପୁଷ୍କରିଣୀ ତଟରେ ରହି ମୋର ଦ୍ୱିତୀୟ ତନୁ ଶିବଙ୍କୁ ଆରାଧନା କର । ଫଳରେ ତୁମେ ମୃତ୍ୟୁକୁ ଜୟକରି ପାରିବ । ସେହିଦିନଠାରୁ ସେହି ଗର୍ଭଟି ମାର୍କଣ୍ଡେୟ ଋଷିଙ୍କ ନାମାନୁସାରେ ମାର୍କଣ୍ଡେୟ ପୁଷ୍କରିଣୀ ରୂପେ

ସୁବିଦିତ । ଯାହାକି ଆଜି ଏହି ପୀଠଟି ଏକ ମହାନ୍ ତୀର୍ଥକ୍ଷେତ୍ର ରୂପେ ବିବେଚିତ । କଥିତ ଅଛି ଏହି ଜଳରେ ସ୍ନାନକରି ଶିବଙ୍କୁ ଦର୍ଶନ କଲେ ଶତଶତ ଜନ୍ମର ପାପ ନାଶ ହେବା ସଙ୍ଗେ ସଙ୍ଗେ ପୁଣ୍ୟ ଅର୍ଜନ ହୋଇଥାଏ ।

**ଶ୍ୱେତଗଙ୍ଗା**

ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଥିବା ତୀର୍ଥକ୍ଷେତ୍ରମାନଙ୍କ ମଧ୍ୟରେ ଶ୍ୱେତଗଙ୍ଗା ଅନ୍ୟତମ ଅଟେ । ଏହା ଶ୍ରୀଜଗନ୍ନାଥ ମନ୍ଦିର ତଥା ଓଡ଼ିଶାର ବଡ଼ମନ୍ଦିରର ଦକ୍ଷିଣରେ ଓ ବାଲିସାହିରେ ଅବସ୍ଥିତ । ଏହି ଧର୍ମକ୍ଷେତ୍ରରେ ଉତ୍ପତ୍ତି ସମ୍ପର୍କରେ ବିଭିନ୍ନ ମତ ଥିଲେ ମଧ୍ୟ ପୌରାଣିକ ମତବାଦାନୁସାରେ ଏକଦା ଶ୍ୱେତ ନାମକ ସତ୍ୟସନ୍ଧ ମହାରାଜା ରାଜତ୍ୱ କରୁଥିଲେ । ସେହି ରାଜ୍ୟରେ କପାଳ ଗୌତମୀ ନାମକ ଏକ ମହର୍ଷି ବାସ କରୁଥିଲେ । ସେହି ମହର୍ଷିଙ୍କର ଏକମାତ୍ର ପୁତ୍ରର ମୃତ୍ୟୁରେ ମହର୍ଷି ଦୁଃଖ ଓ ବିଷାଦରେ ମ୍ରିୟମାଣ ହୋଇପଡିଥିଲେ । ଋଷିଙ୍କ ଦୁଃଖରେ ରାଜା ମଧ୍ୟ ଭାଙ୍ଗି ପଡିଥିଲେ । ତେଣୁ ଋଷିଙ୍କ ଦୁଃଖ ମୋଚନ କରିବା ପାଇଁ ରାଜା ଶ୍ୱେତ ଯମପୁରକୁ ଯାଇ ମୃତ୍ୟୁପୁତ୍ରଙ୍କୁ ଫେରାଇ ଆଣିବା ପାଇଁ ଶିବଙ୍କ ପାଖରେ କଠୋର ତପସ୍ୟା କରିଥିଲେ । ରାଜାଙ୍କ ନିଷ୍ଠାପର ତପସ୍ୟାରେ ଶିବ ମୁଗ୍ଧ ହୋଇ ମହର୍ଷିଙ୍କର ମୃତ ପୁତ୍ରକୁ ଯମରାଜାଙ୍କ ପାଖରୁ ଫେରାଇ ଆଣିଥିଲେ ।

ତତ୍‌ପରେ ରାଜା ଶ୍ୱେତ ଦକ୍ଷିଣ ମହୋଦଧି ତୀରରେ ଏକ ଶ୍ୱେତ ମାଧବଙ୍କ ବିଗ୍ରହ ବସାଇ ପୂଜା କରିଥିଲେ । ଏତଦ୍‌ବ୍ୟତୀତ ରାଜା ବଡ଼ଭାଇ ବଳଭଦ୍ର, ଭଉଣୀ ସୁଭଦ୍ରାଙ୍କ ସମେତ ଓଡ଼ିଶାର ବଡ଼ଠାକୁର ତଥା ସାନଭାଇ ଶ୍ରୀଜଗନ୍ନାଥଙ୍କୁ ମଧ୍ୟ ଶୁଦ୍ଧପୂତ ମନରେ ପୂଜା କରୁଥିଲେ । ଏହି ପୂଜାରେ ଖୁସି ହୋଇ ସ୍ୱୟଂ ଭଗବାନ ବିଷ୍ଣୁ ଚତୁର୍ଦ୍ଧା ମୂର୍ତ୍ତିରେ ରାଜାଙ୍କୁ ଦର୍ଶନ ଦେଇଥିଲେ । ଏହି ଦର୍ଶନରେ ରାଜା ନିଜକୁ ଧନ୍ୟ ମନେ କରିବା ସଙ୍ଗେ ସଙ୍ଗେ ପରମ ମୁକ୍ତିପଦ ବୈଷ୍ଣବ ଭୂମି ଦାନ କରିବା ପାଇଁ ବର ମାଗିଥିଲେ । ରାଜାଙ୍କର ଭକ୍ତିରେ ସ୍ୱୟଂ ଭଗବାନ ଅତ୍ୟନ୍ତ ପ୍ରୀତହୋଇ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଏକ ପବିତ୍ର ଭୂମି ଅର୍ପଣ କରିଥିଲେ । ଭଗବାନ ରାଜାଙ୍କୁ କହିଥିଲେ ତୁମେ ଏହି ଭୂମିରେ ବାସ କରି ବୈଷ୍ଣବତ୍ୱ ପ୍ରାପ୍ତ ହୁଅ । କାଳକ୍ରମେ ଏହି ସ୍ଥାନଟି ଶ୍ୱେତଗଙ୍ଗା ନାମରେ ଏକ ତୀର୍ଥ ପୁଷ୍କରିଣୀରେ ପରିଣତ ହୋଇଥିଲା ।

ବର୍ତ୍ତମାନ ଏହି ତୀର୍ଥର ତଟଦେଶରେ ଶ୍ୱେତମାଧବ, ମତ୍ସ୍ୟମାଧବ, ଗଙ୍ଗାମାତା ମଠ, କୁକ୍ତିଶୀଳ ଓ ବାସୁଦେବ ସର୍ବଭୌମ୍ୟ ମଠ ପ୍ରତୀୟମାନ । କଥିତ ଅଛି ଭକ୍ତମାନେ ଏହି ତୀର୍ଥ ଜଳରେ ସ୍ନାନ କରି ଶ୍ୱେତମାଧବଙ୍କୁ ଦର୍ଶନ କଲେ ସ୍ୱୟଂ ଭଗବାନଙ୍କୁ ପ୍ରାପ୍ତ ହୁଅନ୍ତି । ଏହି ତୀର୍ଥ କ୍ଷେତ୍ରରେ ମାନସିକ ଥିବା ପିଲାମାନଙ୍କର ମୁଣ୍ଡର ବାଳ କଟା ହେବାର ବିଧିବିଧାନମାନ ଅଛି । ଏହି ପୀଠରେ ପୂର୍ବପୁରୁଷ ପିତା, ପିତାମହ ଓ ପ୍ରପିତାମହମାନଙ୍କର ପିଣ୍ଡଦାନ ଦିଆଯାଇଥାଏ । ଆଉ ମଧ୍ୟ ଏହି ଜଳରେ ସ୍ନାନକଲେ ଶତ ଶତ ଜନ୍ମର ପାପ ନାଶ ହେବା ସଙ୍ଗେ ସଙ୍ଗେ ଧର୍ମ ତଥା ପୁଣ୍ୟ ଅର୍ଜନ ହୋଇଥାଏ ।

**ରୋହିଣୀ କୁଣ୍ଡ**

ଲୋକାନୁବାଦରେ ରୋହିଣୀ କୁଣ୍ଡକୁ କେହି କେହି ଗୁପ୍ତଗଙ୍ଗା କହିଥାନ୍ତି । ଗବେଷକଙ୍କ ମତରେ ଶ୍ରୀଜଗନ୍ନାଥଙ୍କ ମନ୍ଦିର ପ୍ରତିଷ୍ଠା ପରେ ପରେ ଏହି କୁଣ୍ଡ ନିର୍ମାଣ ହୋଇଅଛି । ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଏହି କୁଣ୍ଡର ଗୁରୁତ୍ୱ ଅତି ମହାନ୍ । ଯେହେତୁ ଏହି ତୀର୍ଥଟି ଶ୍ରୀଜଗନ୍ନାଥଙ୍କ ବେଢ଼ା ଭିତରେ ଅଛି । ସ୍କନ୍ଦ ପୁରାଣରେ ଏହି ତୀର୍ଥ ସମ୍ପର୍କରେ ବିଶେଷଭାବରେ ବର୍ଣ୍ଣିତ ହୋଇ ଭକ୍ତମାନଙ୍କର ବିଶ୍ୱାସ ଭାଜନ ହୋଇପାରିଛି । ଏହି କୁଣ୍ଡ ଭିତରେ ପଥରରେ ନିର୍ମିତ ଏକ ଚତୁର୍ଭୁଜ ବିଶିଷ୍ଟ ପକ୍ଷୀ ଖଚିତ ହୋଇଅଛି । ଏହି ପକ୍ଷୀର ଆଗରେ ଏକ ଚକ୍ରଚିହ୍ନ ଅଛି । ଯାହାକି କାକର ହସ୍ତରେ ଦୁଇଟି ଶଙ୍ଖ ଓ ଚକ୍ର ଚିହ୍ନ ଧରିଥିବା ପରି ଦେଖାଯାଇଥାଏ । ପ୍ରଳୟ ସମୟରେ ଏହି କୁଣ୍ଡର ଜଳ ପ୍ଳାବିତ ହୋଇଥାଏ ଓ ସୃଷ୍ଟି ସମୟରେ ସମସ୍ତ ଜଳକୁ ଧାରଣ କରିଥାଏ ।

ଏହି କୁଣ୍ଡର ଜଳକୁ ସ୍ପର୍ଶ କଲେ ସମସ୍ତ ପ୍ରକାର ପାପରୁ ମୁକ୍ତି ମିଳିଥାଏ । ତେଣୁ ଭକ୍ତମାନେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା ଅବସରରେ ଏହି କୁଣ୍ଡର ପବିତ୍ର ଜଳକୁ ସ୍ପର୍ଶ କରିଥାନ୍ତି ।

**ମହୋଦଧି**

ସମସ୍ତ ପ୍ରକାର ମହୋଦଧିଠାରୁ ଶ୍ରୀକ୍ଷେତ୍ର ତଥା ଦେବପୀଠ ସଂଲଗ୍ନ ମହୋଦଧି ଏକ ସ୍ୱତନ୍ତ୍ର ଗୁରୁତ୍ୱ ବହନ କରିଆସିଅଛି । ଏହା ଦକ୍ଷିଣ ମହାସାଗରର ଏକ ଅଂଶବିଶେଷ । ଏହି ତଟର ଜଳରାଶି ପବିତ୍ର ଅଟେ । ପୌରାଣିକ ମତରେ ଏହି ଜଳରେ ସ୍ନାନ କଲେ ମନ ପବିତ୍ର ହୋଇଥାଏ ଓ ଜୀବନର ସମସ୍ତ ପାପକୁ ଏହି ଜଳରାଶି ଧୌତ କରିଥାଏ । ତେଣୁ କାର୍ତ୍ତିକ ମାସରେ ଭାରତ କାହିଁକି ପୃଥିବୀର କୋଣଅନୁକୋଣରୁ ଶତ ଶତ ଭକ୍ତ ଏହି ତୀର୍ଥର ଜଳରେ ବୁଡ ପକାଇଥାଆନ୍ତି । ଚନ୍ଦ୍ରଭାଗା ଶ୍ରୀକ୍ଷେତ୍ରର ଏକ ଅଂଶବିଶେଷ ଓ ଏକ ପବିତ୍ର ଧର୍ମପୀଠ । ତେଣୁ ମାଘସପ୍ତମୀର ପ୍ରଭାତରେ ଲକ୍ଷ ଲକ୍ଷ ଭକ୍ତ ଚନ୍ଦ୍ରଭାଗାଠାରେ ସମୁଦ୍ର ଜଳରାଶିରେ ବୁଡ ପକାଇଥାଆନ୍ତି ଓ ସେମାନଙ୍କର ମାନସିକ ପୂରଣ କରିଥାନ୍ତି ।



ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ସମୁଦ୍ର ଜଳକୁ ଜୀବନରେ ଥରେ ସ୍ପର୍ଶ କଲେ ସ୍ୱର୍ଗାରୋହଣ ହୋଇଥାଏ । କାରଣ ଏଠାରେ ସ୍ୱର୍ଗଦ୍ୱାର ନାମରେ ଏକ ଶ୍ମଶାନ ପ୍ରତୀୟମାନ । ତେଣୁ ପ୍ରତ୍ୟହ ଏଠାରେ ଅସଂଖ୍ୟ ଶବସତ୍କାର ହୋଇଥାଏ । ସ୍କନ୍ଦ ପୁରାଣରୁ ଉଦ୍ଧୃତ ଏଠାରେ ଜଗନ୍ନାଥ ମନ୍ଦିର ପ୍ରତିଷ୍ଠା କରିବା ପାଇଁ ରାଜା ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମାଙ୍କୁ ଆଣି ଏହିଠାରେ ସ୍ୱର୍ଗରୁ ଅବତରଣ କରିଥିଲେ । ତେଣୁ ଏହାର ନାମ ସ୍ୱର୍ଗଦ୍ୱାର ହୋଇଅଛି । ଏହି ପୀଠର ଜଳରାଶି ଓ ଜଳବାୟୁ ପବିତ୍ର ଓ ସ୍ୱାସ୍ଥ୍ୟପ୍ରତି ହିତକର । ଏହି ସ୍ଥାନଟି ପ୍ରାକୃତିକ ସୌନ୍ଦର୍ଯ୍ୟ ଓ ଶୋଭାର ଭଣ୍ଡାର । ବିଶେଷତଃ ପ୍ରଭାତ ଓ ସାନ୍ଧ୍ୟସମୟରେ ଦୃଶ୍ୟ ଅତ୍ୟନ୍ତ ମନୋହର ଓ ଅପରୂପା ଶୋଭାର ଭଣ୍ଡାର । ତେଣୁ ପୃଥିବୀର କୋଣଅନୁକୋଣରୁ କୋଟି କୋଟି ଭକ୍ତ ଏହି ତୀର୍ଥସ୍ଥାନ ଦର୍ଶନ, ସ୍ନାନ ଓ ଉପଭୋଗ କରି ସେମାନଙ୍କର ପାପନାଶ, ଧର୍ମଅର୍ଜନ, ଆନନ୍ଦ ଉପଭୋଗ ଓ ରୋଗମୁକ୍ତ ହୋଇଥାନ୍ତି ।

ରାମାୟଣରେ ବର୍ଣ୍ଣିତ ଅଛି ପୂର୍ବକାଳରେ ସାଗର ବଂଶର ବୀର ଯୋଦ୍ଧାମାନେ ଏହାକୁ ଖନନ କରିଥିବାରୁ ଏହାର ନାମ ସାଗର ଅଟେ । ପୁରାଣରେ ବର୍ଣ୍ଣିତ ଅଛି ମହୋଦଧି ମଧ୍ୟରେ ସ୍ୱୟଂ ବିଷ୍ଣୁ ଚତୁର୍ଭୁଜ ରୂପରେ ଲକ୍ଷ୍ମୀଠାକୁରାଣୀଙ୍କ ସହିତ ବିରାଜମାନ କରିଥିଲେ । ତେଣୁ ଏହା ଏକ ଧର୍ମପୀଠ ରୂପେ ବିବେଚିତ ହୋଇଆସିଅଛି । ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ ତଥା କବିରାଜ ଜୟଦେବଙ୍କ ଦ୍ୱାରା ଲିଖିତ ଗୀତଗୋବିନ୍ଦ କାବ୍ୟରେ ଉଦ୍ଧୃତ ଅଛି, ଶ୍ରୀବିଷ୍ଣୁଙ୍କର ଦଶାବତାର ମଧ୍ୟରେ ମତ୍ସ୍ୟ ଅବତାର ଜଳରାଶିରେ ହୋଇଥିଲା । ସତ୍ୟଯୁଗରେ ଦେବତାମାନେ ସମୁଦ୍ର ମନ୍ଥନ କରିବା ଅବସରରେ ଜଗତର ମାତା ମହାଲକ୍ଷ୍ମୀଙ୍କୁ ଏହି ପବିତ୍ର ଜଳରାଶିରୁ ଉଦ୍ଧାର କରିଥିଲେ । ସ୍ୱୟଂ ବିଷ୍ଣୁ ମହାଲକ୍ଷ୍ମୀଙ୍କୁ ବିବାହ କରିଥିଲେ । ମହାଲକ୍ଷ୍ମୀ ସମୁଦ୍ରରୁ ଜାତ ହୋଇଥିବାରୁ, ସେ ସମୁଦ୍ରର ରାଜା ବରୁଣଙ୍କ କନ୍ୟା । ବରୁଣ ହେଲେ ସମୁଦ୍ର ଦେବତା । ତେଣୁ ପୁରୁଷୋତ୍ତମ କ୍ଷେତ୍ରର ମହୋଦଧିର ସ୍ଥାନ ତଥା ଜଳ କେତେ ପବିତ୍ର ଓ ପୁଣ୍ୟ ତାହା ସହଜରେ ଅନୁମେୟ ।

**ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ**

ପଞ୍ଚତୀର୍ଥମାନଙ୍କ ମଧ୍ୟରେ ପୁରୁଷୋତ୍ତମ କ୍ଷେତ୍ରର ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ଅନ୍ୟତମ । ଏହାର ଐତିହ୍ୟ ବିଭିନ୍ନ ପୁରାଣ, ଶାସ୍ତ୍ର ଓ ବେଦ ଇତ୍ୟାଦିରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇଅଛି । ଏହି ସରୋବରଟି ପୁରୀର ପ୍ରାଚୀନତମ ତୀର୍ଥକ୍ଷେତ୍ର । ପ୍ରକାଶଥାଉ କି, ଶ୍ରୀପୁରୁଷୋତ୍ତମ କ୍ଷେତ୍ରର ଶ୍ରୀଜଗନ୍ନାଥଙ୍କ ମନ୍ଦିର ପ୍ରତିଷ୍ଠା ପାଇଁ ଶ୍ରୀବିଷ୍ଣୁଙ୍କର ପରମ ଭକ୍ତ ତଥା ମହର୍ଷି ନାରଦଙ୍କ ପରାମର୍ଶକ୍ରମେ ରାଜା ଇନ୍ଦ୍ରଦ୍ୟୁମ୍ନ ଅଶ୍ୱମେଧ ଯଜ୍ଞ କରାଇବା ସଙ୍ଗେ ସଙ୍ଗେ ମନ୍ଦିର ପ୍ରତିଷ୍ଠା କରାଇବା ପାଇଁ ସ୍ୱର୍ଗରେ ଥିବା ବ୍ରହ୍ମାଙ୍କୁ ନିମନ୍ତ୍ରଣ କରି ଏହି ସ୍ଥାନରୁ ସ୍ୱର୍ଗାରୋହଣ କରିଥିଲେ । ଏହି ସରୋବରର ଦୈର୍ଘ୍ୟ ୪୮୫ ଫୁଟ୍ ଓ ଓସାର ୩୯୬ ଫୁଟ ଅଟେ । ଏହାର ପୂର୍ବରେ ନୀଳକଣ୍ଠେଶ୍ୱର ମନ୍ଦିର ଅବସ୍ଥିତ ।

ଏହି ତୀର୍ଥସ୍ଥାନଟି ନିର୍ମାଣ ସମ୍ପର୍କରେ ବିଭିନ୍ନ ମତବାଦ ଥିଲେ ମଧ୍ୟ ଅଶ୍ୱମେଧ ଯଜ୍ଞ ସମୟରେ ଅନେକ ଗୋଦାନ ପ୍ରଦାନ କରାଯାଇଥିଲା । ସେହି ସବୁ ଗାଭୀମାନଙ୍କର ଖୁରାରେ ଗୋଟିଏ ବୃହତ୍ ଗର୍ତ୍ତ ସୃଷ୍ଟି ହେଲା । ବର୍ତ୍ତମାନ ଅତୀତର ସେହି ପ୍ରଶସ୍ତ ଓ ଗଭୀର ଗାତକୁ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ରୂପେ କୁହାଯାଉଅଛି । ଏଥିରେ ବଡ ବଡ କୂର୍ମ ରହୁଥିଲେ । ଲୋକାଚାରରେ ଏହି କୂର୍ମମାନେ ହେଲେ, ଶ୍ରୀଜଗନ୍ନାଥଙ୍କ ମନ୍ଦିର ନିର୍ମାଣ ପାଇଁ ଶହ ଶହ ପଥୁରିଆ ପଥର ବୋହି ବୋହି କୂର୍ମ ହୋଇଯାଇଥିଲେ । କାଳକ୍ରମେ ସେମାନେ ଏହି ପୋଖରୀରେ ବସବାସ କରୁଥିଲେ । ଏହି ଧର୍ମପୀଠରେ ପିଣ୍ଡଦାନଠାରୁ ଆରମ୍ଭ କରି ଯଜ୍ଞମାନ କରାଯିବାର ବିଧିବିଧାନମାନ ଖଞ୍ଜି ଦିଆଯାଇଛି ।

ସର୍ବୋପରି ଏହି ପାଞ୍ଚଟି ତୀର୍ଥର ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଏକ ଅଟେ । ଜ୍ୟେଷ୍ଠମାସର ଶୁକ୍ଳପକ୍ଷ ଦଶମୀଠାରୁ ସ୍ନାନ ପୂର୍ଣ୍ଣିମା ଦିନ ପର୍ଯ୍ୟନ୍ତ ଓ କେହି କେହି କାର୍ତ୍ତିକ ମାସର ଶୁକ୍ଳପକ୍ଷ ଦଶମୀଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତ ପଞ୍ଚତୀର୍ଥ ବ୍ରତ ପାଳନ କରିଥାନ୍ତି । ଏହିସବୁ ପବିତ୍ର ଦିବସରେ ଭକ୍ତମାନେ ପଞ୍ଚତୀର୍ଥ ଦର୍ଶନ, ସ୍ନାନ, ଜଳସ୍ପର୍ଶ କରିସାରି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ପଞ୍ଚତୀର୍ଥ ବ୍ରତ ପାଳନ ସିଦ୍ଧିଲାଭ ହୋଇଥାଏ । କେହି କେହି ଏହି ପଞ୍ଚତୀର୍ଥ ଦିନକୁ ପଞ୍ଚୁକ ବୋଲି କହିଥାନ୍ତି । ଶ୍ରୀପୁରୁଷୋତ୍ତମଙ୍କର ଧର୍ମସ୍ରୋତରେ ଏହି ପଞ୍ଚତୀର୍ଥର ଧର୍ମସ୍ରୋତ ସମ୍ମିଶ୍ରଣ ହୋଇ ସୃଷ୍ଟି କରିପାରିଛି ଏକ ମହାନ୍ ସଂସ୍କୃତି ଓ ପରମ୍ପରା । ତେଣୁ ବହୁ ଅନାଦି କାଳରୁ ଅଖିଳ ବ୍ରହ୍ମାଣ୍ଡର ଶ୍ରୀଜଗନ୍ନାଥ ଏହି ପଞ୍ଚତୀର୍ଥକୁ କୋଳରେ ଧାରଣ ପୂର୍ବକ ସମଗ୍ର ମାନବଜାତି ତଥା ଜୀବଜଗତର କଲ୍ୟାଣ କରୁଛନ୍ତି ।

---

ପ୍ଲଟ ନଂ-୭୮୫/୧୨୪୦
ଦୁର୍ଗାମାଧବ ନଗର, ଭରତପୁର
ଭୁବନେଶ୍ୱର

# ଦେହି ପଦ ପଲ୍ଲବମୁଦାରମ୍

ମଧୁସୂଦନ ପଟ୍ଟନାୟକ

ଭୁବନେଶ୍ୱରଠାରୁ ୨୫ କି.ମି ଦୂରବର୍ତ୍ତୀ ବାଲିଅନ୍ତା ଥାନା ଅନ୍ତର୍ଗତ ପୁଣ୍ୟତୋୟା ପ୍ରାଚୀ ନଦୀ ତୀରରେ ନିଆଳି ଓ ବ୍ରହ୍ମପୁର ଶାସନଦ୍ୱୟ ମଧ୍ୟବର୍ତ୍ତୀ ଅଞ୍ଚଳରେ କେନ୍ଦୁ ଓ ବେଲ ବୃକ୍ଷ ପରିପୂର୍ଣ୍ଣ କିନ୍ଦୁବିଲ୍ୱ ନାମକ ବ୍ରାହ୍ମଣ ଶାସନରେ ପିତା ଭୋଜଦେବ ଓ ମାତା ବାମାଦେବୀଙ୍କ କୋଳମଣ୍ଡନପୂର୍ବକ ବୈଶାଖ ଶୁକ୍ଳ ଅକ୍ଷୟ ତୃତୀୟାରେ ଜନ୍ମଗ୍ରହଣ କରିଥିଲେ ଗୀତଗୋବିନ୍ଦର କବି ଜୟଦେବ । ବାଲ୍ୟାବସ୍ଥାରୁ ସେ ଥିଲେ ଶାନ୍ତ ଓ କୋମଳ ସ୍ୱଭାବର । ପିତାଙ୍କଠାରୁ ସଂସ୍କୃତ ଭାଷାରେ ଶିକ୍ଷା ଗ୍ରହଣ ପରେ ସଂସ୍କୃତ ଭାଷାର କାବ୍ୟ, ସାହିତ୍ୟ, ଜ୍ୟୋତିଷ ଓ ବ୍ୟାକରଣ ଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଲାଭ କରିପାରିଥିଲେ । ଏଗାର ବର୍ଷ ବୟସବେଳକୁ ପିତାମାତାଙ୍କୁ ହରାଇ ଗମ୍ଭୀର ଓ ଉଦାସୀନ ପୂର୍ବକ ବହୁ ଆର୍ଥିକ ଅନଟନର ଦୁରବସ୍ଥା ମଧ୍ୟରେ ଜୀବନ ଅତିବାହିତ କରିଥିଲେ । ମୃତ୍ୟୁପୂର୍ବରୁ ପିତା ଘର ବନ୍ଧକ ଦେଇ କରିଥିବା ଋଣ ପରିଶୋଧ କରି ନପାରିବାରୁ ସର୍ତ୍ତାନୁଯାୟୀ ବାସଗୃହ ଛାଡିବାକୁ ପଡିବାରୁ ସେ ସନ୍ୟାସୀ ହେବାକୁ ବାହାରିଲେ । କିନ୍ତୁ ଆଶ୍ଚର୍ଯ୍ୟ କଥା ଋଣଦାତାଙ୍କର ଗୃହ ହୁ ହୁ ଜଳିବାରୁ ଓ ସେଠାରେ ଜୟଦେବଙ୍କର ଉପସ୍ଥିତିରେ ଆପେ ଆପେ ଅଗ୍ନି ଲିଭିଯିବାରୁ ଋଣଦାତା ବନ୍ଧକ ଗୃହଟିକୁ ଫେରାଇ ଦେଲେ ମଧ୍ୟ ଜୟଦେବ ତାହା ଗ୍ରହଣ କଲେ ନଥିଲେ । ପ୍ରଭୁଙ୍କର କି ଅଲୌକିକ ଲୀଳା ।



ଜୟଦେବ ଜଗନ୍ନାଥଙ୍କୁ ମାଧବ ବା ରାଧାମାଧବ ସମ୍ମିଳିତ ବିଗ୍ରହ ରୂପେ ପରିକଳ୍ପନା କରି ରାଧାମାଧବଙ୍କର ଲୀଳାଗାନ କଲେ । ଦିନେ ହଠାତ୍ ତାଙ୍କ ସମ୍ମୁଖରେ ଶ୍ରୀକୃଷ୍ଣ ଆବିର୍ଭାବ ହେଲେ । ଧ୍ୟାନବଳରେ ଭଗବାନଙ୍କର ଦଶବିଧ ଅବତାର ଲୀଳା ଦର୍ଶନ କରି ସେ ଗୀତଗୋବିନ୍ଦ ଗ୍ରନ୍ଥ ରଚନା ଆରମ୍ଭ କଲେ ।

ପୂର୍ବ ନିର୍ଦ୍ଧାରିତ ଶପଥ ଅନୁସାରେ ସର୍ତ୍ତ ମୁତାବକ ଦାକ୍ଷିଣାତ୍ୟର ଦେବଶର୍ମା ନାମକ ଜନୈକ ବ୍ରାହ୍ମଣ ଶ୍ରୀଜଗନ୍ନାଥଙ୍କ ବରପ୍ରସାଦରୁ ଲାଭ କରିଥିବା ନିଜର ପ୍ରଥମ କନ୍ୟା ପଦ୍ମାବତୀଙ୍କୁ ଶ୍ରୀକ୍ଷେତ୍ର ଆଗମନ ପୂର୍ବକ ମହାପ୍ରଭୁଙ୍କ ନିକଟରେ ତାଙ୍କର ସେବାପାଇଁ ଉତ୍ସର୍ଗ କରିଥିଲେ ।କିନ୍ତୁ ଶ୍ରୀଜଗନ୍ନାଙ୍କ ସ୍ୱପ୍ନାଦେଶ ପ୍ରାପ୍ତ ହୋଇ ତାଙ୍କର ପ୍ରିୟ ଭକ୍ତ ଜୟଦେବଙ୍କୁ ସ୍ୱକନ୍ୟା ଅର୍ପଣ କରିଥିଲେ । ତାଙ୍କ ସହିତ ପରିଣୟ ଫାନ୍ଦରେ ଆବଦ୍ଧ ହେବାପାଇଁ ଅନିଚ୍ଛା ପ୍ରକାଶ କରିଥିଲେ ମଧ୍ୟ ପରେ ଶ୍ରୀଜଗନ୍ନାଥଙ୍କ ଆଦେଶ ଶିରୋଧାର୍ଯ୍ୟ କରି ତାଙ୍କର ପାଣିଗ୍ରହଣ କରିଥିଲେ । ପଦ୍ମାବତୀ ଥିଲେ ସୁଶ୍ରୀ, ସର୍ବଗୁଣସମ୍ପନ୍ନା ନୃତ୍ୟପଟ୍ଟୟସୀ ରମଣୀ । ତାଙ୍କ ପ୍ରେରଣାରେ ଜୟଦେବ ରଚନା କଲେ 'ଗୀତଗୋବିନ୍ଦ' ।

ଗୀତଗୋବିନ୍ଦରେ ଜଗନ୍ନାଥଙ୍କ ଦଶାବତାର ବର୍ଣ୍ଣନା ଅନନ୍ୟ ସାଧାରଣ । କାବ୍ୟରେ ମାଧବଙ୍କର ଆଶୀର୍ବାଦ ଭିକ୍ଷା କରିବା ସଙ୍ଗେ ସଙ୍ଗେ ଜଗତର କଲ୍ୟାଣ ମନାସିଛନ୍ତି । ରାଧାମାଧବ ଉପାସନା ସ୍ୱକୀୟ ପ୍ରେମର ପରକୀୟା ଭାବପ୍ରକାଶ । ଏହା ଆତ୍ମା ପରମାତ୍ମାର ଅବ୍ୟକ୍ତ ତତ୍ତ୍ୱଲୀଳା । ଈଶ୍ୱର ହିଁ ସୃଷ୍ଟିର ଏକମାତ୍ର ପୁରୁଷ । ଏକ ହିଁ ପରମାତ୍ମା । ଏକ ହିଁ ପ୍ରେମିକ ଯାହାର ପ୍ରେମିକା ହେଲେ ପ୍ରତ୍ୟେକ ଜୀବାତ୍ମା । ରାଧା ଜୀବାତ୍ମାମାନଙ୍କ ପ୍ରତିନିଧି । ସକଳ ଗୋପକାମିନୀ ଇନ୍ଦ୍ରିୟ ବିକାରଗ୍ରସ୍ତ ଜୀବାତ୍ମା । କାମ ଭାବରେ ଦେଖୁଥିବା ପର୍ଯ୍ୟନ୍ତ ରାଧା କୃଷ୍ଣଙ୍କୁ ପାଇପାରୁନାହାନ୍ତି । ବିରହ ବିପ୍ରଲମ୍ଭର ଅନଳରେ ଦଗ୍ଧିଭୂତ ହୋଇ ଦେହାଭିମାନ ତ୍ୟାଗ କଲେ ହିଁ ରାଧାଙ୍କର ମିଳନ କୃଷ୍ଣଙ୍କ ସହିତ ସମ୍ଭବ ହୋଇପାରୁଛି । ଆତ୍ମା ପରମାତ୍ମାଙ୍କ ପାଖରେ ପହଞ୍ଚିବାକୁ ଯେତିକି ବ୍ୟାକୁଳ, ପରମାତ୍ମା ମଧ୍ୟ ଆତ୍ମାର ସାନ୍ନିଧ ଲାଭ ଓ ଉଦ୍ଧାର ପାଇଁ ସେତିକି ବ୍ୟାକୁଳ ଓ



ଅନୁକୂଳ । 'ପ୍ରଥମେ ମୋ ପାଖକୁ ପାଦେ ଆସିଲେ ମୁଁ ତୁମ ପାଖକୁ ଦଶପାଦ ଆଗେଇ ଆସିବି ।' ଏହାହିଁ ରାଧାମାଧବଙ୍କର ଯମୁନା କୂଳ କୁଞ୍ଜରେ ଗୋପନ କେଳିରହସ୍ୟ ।

ଗୀତଗୋବିନ୍ଦ ଦ୍ୱାଦଶ ଶତାବ୍ଦୀର ଗୀତିକାବ୍ୟ । ଖ୍ରୀ.ଅ. ୧୧୫୦ ପାଖାପାଖି । ଏଥିରେ ୧୨ଟି ସର୍ଗ, ୭୨ଟି ଶ୍ଳୋକ ଓ ୨୪ଟି ଗୀତକୁ ନେଇ ରଚିତ । ସରଳଭାଷା ଓ ସାବଲୀଳ ଶୈଳୀରେ ରାଧାକୃଷ୍ଣ ଅପାର୍ଥିବ ପ୍ରେମଲୀଳା, ମାନଅଭିମାନ, ବିରହମିଳନ, ଆଦି ଭାବାବେଶକୁ ନେଇ କାବ୍ୟଟି ରସୋତୀର୍ଣ୍ଣ । ଏହାର ଅନୁପମ ଭାଷା, ଶୈଳୀ, ଭାବ, ଛନ୍ଦ ଭାରତର କଳା, ସ୍ଥାପତ୍ୟ, ସଂସ୍କୃତି, ସାହିତ୍ୟ, ସଙ୍ଗୀତକୁ ଯୁଗ ଯୁଗ ଧରି ପ୍ରଭାବିତ କରି ଆସୁଛି ।

ପ୍ରଳୟ-ପୟୋଧିଜଳେ ଧୃତବାନସି ବେଦଂ

ବିହିତ-ବହିତ୍ର-ଚରିତ୍ରମଖେଦମ୍

କେଶବ-ଧୃତ ମୀନ ଶରାର, ଜୟ ଜଗଦୀଶ ହରେ ।

ଗୀତଗୋବିନ୍ଦରେ ଜଗନ୍ନାଥଙ୍କ ଦଶାବତାର ବର୍ଣ୍ଣନା ଅନନ୍ୟ ସାଧାରଣ । ଏହି ଦଶାବତାର କ୍ରମାନ୍ୱୟ ବିଜ୍ଞାନସମ୍ମତ ଅଟେ । ମହାପ୍ରଳୟକାଳରେ ଭଗବାନ ବିଷ୍ଣୁ ମୀନ ରୂପ ଧାରଣ କରିଥିଲେ । ଯଥା-ମତ୍ସ୍ୟ, କୂର୍ମ, ଶୂକର, ନରସିଂହ, ବାମନ, ଭୃଗୁପତି, ରାମ, ହଳଧର, ବୁଦ୍ଧ ଓ କଳ୍କୀର କ୍ରମାନ୍ୱୟ ପୃଥିବୀର ବିବର୍ତ୍ତନବାଦର ପ୍ରତୀକ ଅଟେ । ଅଷ୍ଟାଦଶ ଶତାବ୍ଦୀର ବିଶିଷ୍ଟ ବୈଜ୍ଞାନିକ ଡାରଉଇନ୍ ଇଭୋଲ୍ୟୁସନ୍ ଥିଓରୀରେ ବହୁତ ପୂର୍ବରୁ ଦ୍ୱାଦଶ ଶତାବ୍ଦୀର କବି ଶ୍ରୀ ଜୟଦେବଙ୍କ ରଚିତ ଦଶାବତାର କ୍ରମାନ୍ୱୟ ବିଜ୍ଞାନ ସମ୍ମତ ଅଟେ । ସେ ସୃଷ୍ଟିର ଆରମ୍ଭ ଜଳରୁ ମତ୍ସ୍ୟକୂର୍ମ ଉଭୟରେ (କଚ୍ଛପ), ସ୍ଥଳଚର(ଶୂକର), ଅଧା ପଶୁ ଅଧା ମାନବ(ନରସିଂହ), ଖର୍ବାକୃତି ମଣିଷ(ବାମନ), ସଂହାରକାରୀ ମାନବ(ପରଶୁରାମ), ମର୍ଯ୍ୟାଦାପୁରୁଷ(ଶ୍ରୀରାମ), କୃଷିଜୀବୀ ବଳରାମ ହଳଧର, କରୁଣାସାଗର(ବୁଦ୍ଧ)ଓ ପରିଶେଷରେ ମ୍ଲେଚ୍ଛ ସଂହାରକାରୀ (କଲ୍‌କୀ) ଅବତାର ଦର୍ଶାଇଛନ୍ତି । ଏହି ପ୍ରକୃତିପ୍ରେମୀ କବି ଭକ୍ତି ଓ ଶୃଙ୍ଗାର ଛଡା ଋତୁ ଆଗମନରେ 'ଲଳିତ ଲବଙ୍ଗ ଲତା' ବସନ୍ତ ଓ ଗ୍ରୀଷ୍ମ ଋତୁ ଆଗମନରେ 'ଚନ୍ଦନ ଚର୍ଚ୍ଚିତରେ', ରାସେ ହରିମିହରେ ବର୍ଷାଋତୁର ଶୋଭା ବର୍ଣ୍ଣନା କରିଛନ୍ତି । ପୁନଶ୍ଚ ଭକ୍ତି, ଶୃଙ୍ଗାର, ବୀର, କରୁଣ, ରୌଦ୍ର, ହାସ୍ୟ, ଭୟାନକ,ବିଭତ୍ସ ଓ ଶାନ୍ତ ଏଗୁଡିକ ନବରସ । ଶୃଙ୍ଗାର ରସକୁ ଛାଡିଦେଲେ ଏହି କାବ୍ୟକୁ କଳ୍ପନା କରାଯାଇନପାରେ ।

ଗୀତଗୋବିନ୍ଦର:-

ପ୍ରଥମ ସର୍ଗରେ: ଲଳିତ ଲବଙ୍ଗ ଲତା ପରିଶୀଳନ କୋମଳ ମଳୟସମୀରେ

ମଧୁକର ନିକରକରମ୍ବିତ କୋକିଳ-କୂଜିତ କୁଞ୍ଜ କୁଟୀରେ

ବିହରତି ହରିରିହ ସରସ ବସନ୍ତେ

ନୃତ୍ୟନ୍ତି ଯୁବତୀ ଜନେନ ସମଂ ସଖୀ ବିରହୀଜନସ୍ୟ ଦୂରନ୍ତେ ।

ଶ୍ରୀରାଧା ବାସନ୍ତୀ କୁସୁମରେ ତନୁ ଲତିକାକୁ ସଜ୍ଜିତ କରି କୃଷ୍ଣଙ୍କୁ ପାଇନାହାନ୍ତି । ଅନେକ ନାରୀଗହଣରେ କ୍ରୀଡାମଗ୍ନ ଥିବା କୃଷ୍ଣଙ୍କୁ ସଖୀ ରାଧାଙ୍କୁ ଦେଖାଇଛନ୍ତି । ଜୀବାତ୍ମା ପରମାତ୍ମାଙ୍କ ସହ ମିଳିତ ହେବାକୁ ଇଚ୍ଛା କରୁଛି । କିନ୍ତୁ କାହାନ୍ତି ସେ ହରି ?

୨ୟ ସର୍ଗରେ: ଅନ୍ୟ ନାୟିକାମାନଙ୍କ ପ୍ରତି ସମାନ ଭାବରେ ଆଗ୍ରହୀ କୃଷ୍ଣଙ୍କ ପ୍ରତି ଅଭିମାନ କରି ରାଧା ଚାଲିଗଲେ କୌଣସି ଲତାମଣ୍ଡପକୁ କିନ୍ତୁ ସେଠି ମଧ ରକ୍ଷା ନାହିଁ । ଭଗବାନଙ୍କୁ ଅଭିମାନ କରି ତାଙ୍କୁ ସ୍ମରଣ ନ କରିବା ବଡ ଅପରାଧ । ସବୁ କିଛି ବାଧାବନ୍ଧନ ନ ମାନି ଜୀବାତ୍ମାଙ୍କ ଲାଗି ପାଗଳ ନ ହୁଏ, ତେବେ ଈଶ୍ୱର କଣ ମିଳିବେ?

୩ୟ ସର୍ଗରେ: ଅନୁରାଗିଣୀ ରାଧାଙ୍କର ଅଭିମାନଜନିତ ରାସସ୍ଥଳୀ ତ୍ୟାଗରେ ରାଧା ପ୍ରାପ୍ତି ପାଇଁ କୃଷ୍ଣ ଇତସ୍ତତଃ ଅନ୍ୱେଷଣ କରି ଯମୁନା କୂଳରେ କୌଣସି କୁଞ୍ଜରେ ଅନୁତାପ ଦଗ୍ଧ ହୃଦୟର ଉପବିଷ୍ଟ ହୁଅନ୍ତି । ମାନବ ପରି ରାଧାଙ୍କର ବିରହରେ କୃଷ୍ଣଙ୍କର ବିରହ ଜଣାଇ ଅର୍ଥାତ୍ ଜୀବାତ୍ମା ପ୍ରତି ପରମାତ୍ମାଙ୍କ ଅନୁରାଗ ସ୍ପଷ୍ଟ ପ୍ରତୀୟମାନ ହୁଏ । କାମ ମାଧମରେ କାମକୁ ଜୟ ଅର୍ଥାତ୍ ଦେହଜ କାମର ଊର୍ଦ୍ଧ୍ୱସୀମା ଟପିଲେ ବିଭୁ ସାକ୍ଷାତକାର ସମ୍ଭବ ହୁଏ ।

୪ର୍ଥ ସର୍ଗରେ: ଶ୍ରୀ କୃଷ୍ଣଙ୍କୁ ରାଧିକାଙ୍କର ସଖୀ ମାଧମରେ ବିରହଦଶା ବର୍ଣ୍ଣନା ଅତି ଚମତ୍କାର ଭାବେ ପ୍ରସ୍ଫୁଟିତ ହୋଇଅଛି ।

ସ୍ତନବିନିହିତ ମପି ହାର ମୁଦାରମ୍

ସା ମନୁତେ କୃଶତନୁରତି ଭାରମ୍

ରାଧିକା ତବ ବିରହେ କେଶବ ।





ହେ ହରି ! ତୁମ କଥା ଭାବି ରାଧିକାଙ୍କ ହୃଦୟରେ କମ୍ପନ ଜାତ ହେଉଛି । ବିଳାପ କରୁଛନ୍ତି, ଆଖିବୁଜି ପଡି ରହିଛନ୍ତି, ପୁଣି ଉଠି ଅସ୍ଥିର ହେଉଛନ୍ତି । ଏପରି କନ୍ଦର୍ପପୀଡିତା ରାଧା ବଞ୍ଚିପାରିବେ ତ!

୫ମ ସର୍ଗରେ: ଦୂତୀ ମୁଖରେ ଶ୍ରୀକୃଷ୍ଣଙ୍କ ବିରହ ବର୍ଣ୍ଣନା ଶ୍ରୀରାଧାଙ୍କ ସମ୍ମୁଖରେ କରାଯାଇଛି ଏବଂ ସଖୀ ରାଧିକାଙ୍କୁ ଶ୍ରୀକୃଷ୍ଣଙ୍କ ନିକଟକୁ ଅଭିସାରରେ ଯିବାକୁ ପ୍ରେରଣ କରିଛନ୍ତି ।

ରତି ସୁଖସାରେ ଗତମଭିସାରେ ମଦନମନୋହର ବେଶମ୍

ନ କୁରୁ ନିତମ୍ବିନୀ ଗମନବିଲମ୍ବନମନୁସରତଂ ହୃଦୟେଶମ୍

ଧୀର- ସମୀରେ ଯମୁନାତୀରେ ବସତୀ ବନେ ବନମାଳୀ

ପାନପୟୋଧର ପରିସର ମର୍ଦ୍ଦନ ଚଞ୍ଚଳ କରଯୁଗଶାଳୀ ।

୬ଷଷ୍ଠ ସର୍ଗରେ: ମୋର ଜୀବନ ତାଙ୍କ ପାଇଁ ଉଦ୍ଦିଷ୍ଟ । ମୁଁ ହିଁ କୃଷ୍ଣ । କୃଷ୍ଣଙ୍କ କଥା ଭାବି ଭାବି ଏମିତି ସମୟ ଆସେ । ଭକ୍ତ- ମୁଁ ନିଜେ ହିଁ ସେ ଭଗବାନ-ବୋଲି ଭାବେ ।

ପଶ୍ୟତି ଦିଶି ଦିଶି ରହସି ଭବନ୍ତମ୍

ତଦଧର ମଧୁରମଧୁନି ପିବନ୍ତମ୍

ନାଥ ହରେ, ସୀଦତି ରାଧା ବାସଗୃହେ ।

୭ମ ସର୍ଗରେ: ବୃନ୍ଦାବନରେ ରାତ୍ରି ଓ ରାଧାଙ୍କର କାତର ବିଳାପ ଏବଂ ଅନ୍ୟନାରୀ ସମ୍ଭୋଗର ଛବି ଶ୍ରୀରାଧାଙ୍କ ଆଗରେ । ରାଧାଙ୍କର ବିପ୍ରଲବ୍ଧ ହେବାର ଦୁଃଖରେ ବିପ୍ରଲମ୍ଭ ଶୃଙ୍ଗାର ।

୮ମ ସର୍ଗରେ: କୃଷ୍ଣଙ୍କୁ ରାଧାଙ୍କର ତିରସ୍କାର ସର୍ଗ । କୃଷ୍ଣଙ୍କ ଅବୟବରେ ଛାପିଥିବା ଅନ୍ୟ ନାରୀ ସମ୍ଭୋଗ ଜନିତ ଚିହ୍ନ ଅଧିକ ଲଜ୍ଜାକର ବୋଲି କୃଷ୍ଣଙ୍କୁ ଉପାଲମ୍ଭ ହେଉଛନ୍ତି ।

୯ମ ସର୍ଗରେ: ଏଠାରେ ରାଧା କଳହାନ୍ତରିତା ନାୟିକା ଭାବରେ ଉପସ୍ଥାପିତ ହୋଇଛନ୍ତି । ଅପରାଧୀ ପ୍ରିୟ କୃଷ୍ଣଙ୍କୁ ଶ୍ରୀମତୀ ଅଭିମାନରେ ଫେରାଇ ଦେଲେ ମଧ ଅନୁତାପ କରି ମନେ ମନେ ଧ୍ୟାନ କଲେ ।

୧୦ମ ସର୍ଗରେ: ରାଧିକାଙ୍କୁ ସଖୀମାନଙ୍କ ଉପଦେଶକ୍ରମେ ଭର୍ତ୍ସନା ଏବଂ ପ୍ରିୟ ଫେରି ଆସିଛନ୍ତି ଦେଖି ପ୍ରେମବନ୍ୟାରେ ରାଧାଙ୍କ ଅନ୍ତର ପ୍ଳାବିତ । ଅବସର ଚାଟୁକ୍ତି ଆରମ୍ଭିଲେ ମଧୁସୂଦନ ।

ବଦସି ଯଦି କିଞ୍ଚିଦପି ଦନ୍ତରୁଚି କୌମୁଦୀ

ହରତିଦର ତିମିରମତି ଘୋରମ୍

ସ୍ଫୁରଦର ଧର, ସୀଧବେ ତବ ବଦନଚନ୍ଦ୍ରମା

ରୋଚୟିତୁ ଲୋଚନ ଚକୋରମ ।

ପ୍ରିୟେ ଚାରୁଶୀଳେ ! ମୁଞ୍ଚ, ମୟିମାନ ମନିଦାନମ୍

ସପଦି ମଦନାନଳୋ ପହତି ମନମାନସମ୍

ଦେହି ମୁଖକମଳ ମଧୁପାନମ୍

ଏହାପରେ କୃଷ୍ଣ କହୁଛନ୍ତି, ହେ ସୁଦନ୍ତୀ! ତୁମେ ମୋର ଜୀବନ । ଏହିଠାରେ ଗୀତଗୋବିନ୍ଦର ସବୁଠାରୁ ଲୋକପ୍ରିୟ ପଦର ଯୋଜନା । ଭଗବାନ ହେଉଛନ୍ତି ଭକ୍ତର ଅଧୀନ । ପ୍ରିୟମାର୍ଗେ ପ୍ରିୟାର ଚିରକାଂକ୍ଷିତ ଚରଣପରଶ ।

ସ୍ମରଗରଳଖଣ୍ଡନଂ ମମସିରସିମଣ୍ଡନଂ

ଦେହି ପଦପଲ୍ଲବମୁଦାରମ୍

ଜ୍ୱଳତିମୟି ଦାରୁଣୋ ମଦନକଦନାନଳୋ

ହରତୁ ତଦୁପାହିତ ବିକାରମ୍

୧୧ଶ ସର୍ଗରେ: ସମଗ୍ର ବିଶ୍ୱବ୍ରହ୍ମାଣ୍ଡ ଯାହାକୁ ଖୋଜିଲେ ପାଏ ନାହିଁ, ସେହି ପରମ ପ୍ରେମମୟ ଭଗବାନ ଶ୍ରୀକୃଷ୍ଣ ରୂପରେ ଅଭିମାନିନୀ ଶ୍ରୀମତୀଙ୍କ ପଦତଳେ ନତଜାନୁ ହୋଇ କହିଲେ ଦେହି ପଦପଲ୍ଲବ ମୁଦାରମ୍' ଏବଂ ସ୍ୱୟଂ ଜଗନ୍ନାଥ ଏହି ପଦ ଗୀତଗୋବିନ୍ଦରେ ପୂରଣ କଲେ । ଏଥିରେ କେଉଁ ମାନିନୀର ଧୈର୍ଯ୍ୟ ରହିବ? ଅଭିମାନ ଦୂର ହେଲା । ଅଭିସାର ଅଭିମୁଖେ ପ୍ରସ୍ତୁତ କେଶରକୁଞ୍ଜ ଶେଯରେ ଶ୍ରୀରାଧାଙ୍କର ଅପେକ୍ଷାରେ ଜୀବାତ୍ମା ଓ ପରମାତ୍ମାର ମିଳନ ଉତ୍ସବ ସଂଘଠିତ ହେଲା ।

୧୨ଶ ସର୍ଗରେ: କେଳୀକୁଞ୍ଜର ଶଯ୍ୟାନିକଟରେ କାମ ପ୍ରବଣା କାମିନୀ ଶିରୋମଣି ଶ୍ରୀମତୀଙ୍କୁ ପାଇ କୃଷ୍ଣ ଦେଖିଲେ ପ୍ରିୟାଙ୍କ ମନରୁ ଅଭିମାନର କାଳିମା ଦୂର ହୋଇଛି । ରାଧାଙ୍କ ମୁଖର ସଲଜ୍ଜ ଫୁଟି ଉଠିଛି । ଶ୍ରୀକୃଷ୍ଣ ମିଳନ ପାଇଁ ରାଧିକାଙ୍କୁ ଅନୁରୋଧ କରିବା ପରେ ଶ୍ରୀମତୀଙ୍କର ଅନୁକୂଳତା ହେତୁ ସମ୍ଭୋଗ ଆରମ୍ଭ ହୋଇ ଜୀବାତ୍ମା ପରମାତ୍ମାରେ ବିଲୀନ ହୋଇଛି ।



ଏକ ହୃଦୟ ସ୍ପର୍ଶୀ କାହାଣୀରୁ ଅନୁମିତ ହୁଏ ଯେ ଯେଉଁ ସ୍ଥାନରେ ଗୀତଗୋବିନ୍ଦ ଗାନ କରାଯାଏ, ସେଠାରେ ସ୍ୱୟଂ ଜଗନ୍ନାଥ ଆବିର୍ଭାବ ହୋଇ ତାହା ଶ୍ରବଣ କରି ଗାୟିକାକୁ ସପ୍ରେମ ଆଲିଙ୍ଗନ କରିଥାଆନ୍ତି । ଏକଦା ମନ୍ଦିର ଭିତର ପରିସରସ୍ଥ ଉପବନରେ ଏକ କୋଣରେ କୁଡିଆ କରି ରହୁଥିବା ମାଳି ପରିବାରର କନ୍ୟା,ମାଳିନୀ ଆତ୍ମହରା ହୋଇ ଗୀତଗୋବିନ୍ଦ ଗାଇ ଗାଇ ଏକ କୋଣରୁ ଅନ୍ୟକୋଣକୁ ବୁଲୁ ବୁଲୁ ଶୁଣିବାକୁ ପାଇଲା ଯେ କେହି ଜଣେ ରୁଣୁ ଝୁଣୁ ଶବ୍ଦ କରି ତା ଗୀତରେ ତାଳ ପକାଇ ନାଚୁଛି । ରେଶମୀ ଡୋରରେ ବନ୍ଧା ହୋଇ ପ୍ରଭୁଙ୍କର ରାତି ପିନ୍ଧା ବସ୍ତ୍ର ଶୁଖିବା ଅବସ୍ଥାରେ ହଠାତ୍ ପବନ ବହିବାରୁ ତାହା ଉଡିଆସି ମାଳିନୀର ବକ୍ଷ, ଜାନୁ ଓ କଟି ଦେଶରେ ଗୁଡାଇ ହୋଇଗଲା । ସେ ତାକୁ ବାହାର କରି ଶୁଖାଇ ଦେଇ ଆସିଲା । ବଡ ସିଂହାର ବେଶ ସମୟରେ ସେବକମାନଙ୍କ ଦୃଷ୍ଟିରେ ପଡିଲା ଯେ ଲୋଚା କୋଚା କଣ୍ଟାଦାଗ ଓ କେତେକ ଧଳା ଦାଗ ଉପରେ ଠାକୁରଙ୍କର ପରିଧାନ ମାରା ହୋଇଛି । ରାଜାଙ୍କ କାନକୁ କଥା ଗଲା । ରାଜା ମାଳିନୀକୁ ବନ୍ଦୀଶାଳାରେ ରଖିଲେ । ରାତ୍ରରେ ଜଗନ୍ନାଥ ଗଜପତିଙ୍କୁ ସ୍ୱପ୍ନରେ କହିଲେ- ଯୌବନର ମାଦକତାରେ ଆତ୍ମହରା ହୋଇ ଗୀତଗୋବିନ୍ଦ ଗାଉଥିବା ସମୟରେ ମୋର ଅଦୃଷ୍ଟ ମୂର୍ତ୍ତି ପାଟବସ୍ତ୍ର ସହ ତା ପଛରେ ଘୂରି ବୁଲି ତାକୁ ଆଲିଙ୍ଗନ ପୂର୍ବକ ଉପଭୋଗ କରିଛି । ପରିଧାନ ବସ୍ତ୍ରର ସେ ଚିହ୍ନ ଓ ଦାଗ ଲାଗିଯାଇଛି । ମାଳିନୀର କିଛି ଦୋଷ ନାହିଁ । ମାଳିନୀ ବନ୍ଦୀମୁକ୍ତ ହେଲା ଏବଂ ତାର ସ୍ୱାମୀ, ଶାଶୁ, ଶ୍ୱଶୁରଙ୍କୁ ଶ୍ରୀକ୍ଷେତ୍ରକୁ ଅଣାଗଲା, ମାଳିନୀ ପ୍ରଭୁଙ୍କର ସେବାକାର୍ଯ୍ୟରେ ନିଯୁକ୍ତ ହେଲା ।

କିମ୍ବଦନ୍ତୀ କହେ- ଠାକୁରଙ୍କର ବଡସିଂହାର ବେଶ ସରିଛି । ରାତ୍ରର ତୃତୀୟ ପ୍ରହର ଆସି ହେଲାଣି । ଦେବଦାସୀ ନାଚି ଚାଲିଛି ରତ୍ନ ସିଂହାସନ ସମ୍ମୁଖରେ । କବାଟ ପଡିଯାଇଛି । ଏହି ସେବା କେହି ଦେଖିବା ନିଷେଧ । ବାହାରେ ତଳୁଛ, ମୁଦୁଲି, ପାଳିଆ, ଅପେକ୍ଷାରତ । ନୃତ୍ୟପରେ କବାଟ ବନ୍ଦ କରାଯିବ । ଗାଏଣୀ ଏପର୍ଯ୍ୟନ୍ତ ନାଚ ସାରି ଫେରିନି । ସମସ୍ତେ କୁହାକୁହି ହେଲେ । ଆଉ ପ୍ରହରକେ ସକାଳ ହେବ । ଦେବଦାସୀ ଫେରିଲେ ସଂପୂର୍ଣ୍ଣ ବସ୍ତ୍ରହୀନ ଅବୟବରେ । ଦେହରେ ତାର ମିଳନର ସଙ୍କେତ । ଯୌବନଭରା ଅବୟବରେ କେବଳ ଚନ୍ଦନ, କର୍ପୂର, ତୁଳସୀର ଗନ୍ଧ ବାସନାରେ ଚମକି ଉଠୁଛି । ବେଖାତିର ଭାବ । କାହାଆଡେ ତାର ଦୃଷ୍ଟି ନାହିଁ । ପ୍ରଭୁଙ୍କର ସାନ୍ନିଧ୍ୟ ଲାଭ କରି ଅନନ୍ତ ମାୟାରୁ ମୁକ୍ତ ସେ । ଲୋକାଚାର ତାର ମନରେ ନାହିଁ ସିନା, ସୁନ୍ଦରୀର ପ୍ରତିବିମ୍ବ ସମସ୍ତଙ୍କ ଆଖିରେ । କୁହାକୁହି ହେଲେ ଦେଶକୁ ଅମଙ୍ଗଳ ଆସିଗଲା । ସିଂହଦ୍ୱାର ବନ୍ଦକରି ସମସ୍ତେ ଗଜପତିଙ୍କୁ ଜଣାଇଲେ । ରାଜା ଚିନ୍ତାଗ୍ରସ୍ତ ହୋଇ ଗାଢ ନିଦ୍ରାଗଲେ । ରାଜାଙ୍କୁ ସ୍ୱପ୍ନାଦେଶ ହେଲା- ଗଜପତି! ମୋର ପଲକ ନାହିଁ ବୋଲି ଭାବିଛୁ ମୁଁ ଅନ୍ଧ । ଦେଖ, ଦେବଦାସୀ ନର୍ତ୍ତକୀର ନଗ୍ନ ନୃତ୍ୟ ମୁଁ ପରିଷ୍କାର ଦେଖିଛି । ଇଚ୍ଛା କରିଥିଲେ ସେ ଦଣ୍ଡିତ ହୋଇଥାନ୍ତା । ମୋର କାଞ୍ଚି ଅଭିଯାନ ମନେ ପକା । ମୋ ରୁଚି ଉପରେ ତୁ ମୁଣ୍ଡ ଖେଳାଉଛୁ କାହିଁକି? ମୁଁ ସେହି ଗୋପାଙ୍ଗନାର ପରା ବସ୍ତ୍ର ହରଣ କରିଥିଲି । ମୁଁ ସେହି ଗୋପୀନାଥ । ଇଚ୍ଛାହେଲା ତାର ନଗ୍ନ ନୃତ୍ୟର ତାଳେ ତାଳେ ନାଚିବାକୁ । ଏଇମାତ୍ର ମୁଁ ନିଜହାତରେ ନେଇ ସେ ବସ୍ତ୍ର ଦେବଦାସୀକୁ ପିନ୍ଧାଇ ଦେଇ ଆସିଲି ।

ରାଜାଙ୍କ ଉପସ୍ଥିତିରେ କବାଟ ଫିଟାଗଲା । ସେବକମାନେ ଖୋଜୁଥିଲେ ମାହାରୀର ଛଡା ଲୁଗା । ଗଜପତି ଦେବଦାସୀ ନାଚୁଥିବା ସ୍ଥାନରେ ଲମ୍ବ ହୋଇପଡି କ୍ଷମା ମାଗୁଥିଲେ । ରତ୍ନ ସିଂହାସନ ଉପରେ ବସି ଫୁଙ୍ଗୁଳା ଦେହରେ ହସୁଛନ୍ତି, ପ୍ରଭୁ ଜଗନ୍ନାଥ । ସମସ୍ତଙ୍କ ନୟନରୁ ଝରି ପଡୁଥିଲା ଆନନ୍ଦାଶ୍ରୁ । ଧନ୍ୟପ୍ରଭୁ! ଧନ୍ୟ ତୁମ ମହିମା !

---

କୈବଲ୍ୟ, ଦଉଡୋଟା, ପୁରୀ







# କେଡେ ବିଚିତ୍ର ଠାକୁର ସତେ !

ବସନ୍ତ କୁମାର ଦାସ

ଅନନ୍ତ ବ୍ରହ୍ମାଣ୍ଡର କର୍ତ୍ତା ଦେବ ଦେବ ଶ୍ରୀଜଗନ୍ନାଥ ସମସ୍ତ ସୃଷ୍ଟିରୁ ଭୃଭଙ୍ଗୀ ବିଳାସରେ ସଂପାଦନ କଲେ ମଧ୍ୟ, ସ୍ୱବିଗ୍ରହକୁ ଏଭଳି ଭାବେ ଗଠନ କରିଛନ୍ତି, ଯାହା ଦର୍ଶନ ଦାର୍ଶନିକଙ୍କୁ ରହସ୍ୟର ଅସମାଧିତ ଦିଗ ଦିଗନ୍ତକୁ ଟାଣିନିଏ ।



ବେଦର ନେତି ଏହା ଇତି ବା ଶେଷ ନୁହେଁ ଅର୍ଥାତ୍ ଏହି ବ୍ୟକ୍ତି ଭିତରେ ବହୁ ଅବ୍ୟକ୍ତ ତତ୍ତ୍ୱ ।

ବିଜ୍ଞ ମାନବୀୟ ବିଚାରରେ ସୁରମ୍ୟ ଶ୍ରୀବତ୍ସ ଖଣ୍ଡଶାଳ ମନ୍ଦିରରେ ଶତ ଶତ ରମଣୀୟ ମୂର୍ତ୍ତିରେ ନିର୍ମାଣ କ୍ଷମ ଦକ୍ଷ ଶିଳ୍ପୀ କେଉଁ କାରଣରୁ ସମଗ୍ର ଆକର୍ଷଣ ଓ ଉପାସନାର କେନ୍ଦ୍ରବିନ୍ଦୁ ତିନି ବିଗ୍ରହଙ୍କୁ ଏଭଳି ରୂପ ପ୍ରଦାନ କଲା, ତାହା ଜାଣିବା କିମ୍ବା ଏକ ସର୍ବସମ୍ମତ ନିଷ୍ପତ୍ତି ଭାବେ ଗ୍ରହଣ କରିବାର ଅବକାଶ ଏ ପର୍ଯ୍ୟନ୍ତ ସମ୍ଭବ ହୋଇ ପାରିନାହିଁ । ଏହି ଅନିସନ୍ଧିତ୍ସୁ ରହସ୍ୟକୁ ମନୁଷ୍ୟ ତାର ସୀମିତ ପ୍ରଜ୍ଞା ଅଧ୍ୟୟନ ଅନୁମାନ ଏବଂ ଅନୁଭୂତି ପ୍ରେକ୍ଷାପଟରେ କିଛି କାରଣ ଆବିଷ୍କାର କରିଛି । ମାତ୍ର ଏହାକୁ ସର୍ବଯୋଗ୍ୟ... ବୋଲି ଦାବି କରାଯାଇପାରିନାହିଁ । ଏହି ଆବିଷ୍କୃତ କାରଣଗୁଡ଼ିକ ଆଲୋଚନା ପାଇଁ ପୌରାଣିକ/ ଐତିହାସିକ/ ଆଧ୍ୟାତ୍ମିକ/ ଦାର୍ଶନିକ/ ଭକ୍ତିକି ବିଚାରଧାରା ବୋଲି କୁହାଯାଇପାରିବ ।

କେତେକ ଆଲୋଚନା କରିଥାନ୍ତି ଯେ... ମନ୍ତ୍ର ଜପ କରି ପଞ୍ଚ ସପ୍ତାତ୍ମିକ ଭଜନ କଲେ ଜଗନ୍ନାଥ ସାନ୍ନିଧ୍ୟ ଲାଭ ହୋଇଥାଏ । ପାଞ୍ଚକୁ ପାଇବାକୁ ହେଲେ ସାତକୁ ଏକ କରିବାକୁ ହେବ । ଯଥା ଦୁଇ ଚକ୍ଷୁ, ଦୁଇ ନାସାଭାଗ ଏକ ପାଟି ଏବଂ ଦୁଇ କର୍ଣ୍ଣକୁ ଏକ ଭାବରେ ନିବଦ୍ଧ ରଖିଲେ ରତ୍ନ ସିଂହାସନରେ ବିରାଜିତ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ସିଂହାସନ ଏବଂ ସୁଦର୍ଶନର ପ୍ରତ୍ୟକ୍ଷ ଫଳପ୍ରାପ୍ତ ହୋଇଥାଏ ।

ବର୍ତ୍ତମାନର ଶ୍ରୀମନ୍ଦିରରେ ସପ୍ତାବରଣ ମୂର୍ତ୍ତି ଶ୍ରୀବଳଭଦ୍ର ଶ୍ରୀଜଗନ୍ନାଥ, ଶ୍ରୀସୁଭଦ୍ରା, ଶ୍ରୀ ସୁଦର୍ଶନ, ଶ୍ରୀ ମାଧବ, ମହାଲକ୍ଷ୍ମୀ (ଶ୍ରୀଦେବୀ) ସରସ୍ୱତୀ(ଭୂଦେବୀ) ଆଦି ଅର୍ଚ୍ଚିତ। ଲୋକ ବିଶ୍ୱାସରେ ପ୍ରଚଳିତ ନୀଳମାଧବଙ୍କ ସ୍ଥାନରେ ଏହି ବିଗ୍ରହମାନେ ବର୍ତ୍ତମାନ ପୂଜିତ ହେଉଛନ୍ତି । ନୀଳମାଧବଙ୍କ ଧ୍ୟାନ ଅନୁସାରେ ଏହି ଚତୁର୍ଭୂଜରେ ବିଭିନ୍ନ ଆୟୁଧ ଧାରଣ କରିଥାନ୍ତି । ଏହି ଚତୁର୍ଭୁଜ ବିଗ୍ରହ ସତ୍ୟଯୁଗରେ ପୂଜିତ ହେଉଥିଲେ । ଭୂଷଣ୍ଡକାଳ ଏହି ବିଗ୍ରହକୁ ଦର୍ଶନ ଓ ଚିନ୍ତନ କରିବାରୁ ରାଜା ଗାଲ ମାଧବଙ୍କ ଅସତ୍ୟ ବାକ୍ୟ ସହି ନପାରି ସେ ରୋହିଣୀ କୁଣ୍ଡରେ ଆତ୍ମ ବିସର୍ଜନ କରି ଚତୁର୍ଭୁଜ ମୁକ୍ତି ହୋଇଥିଲେ ।

ସେଥିପାଇଁ ଏକଦା ଏହି ରତ୍ନ ସିଂହାସନରେ ଭୈରବୀ ମୂର୍ତ୍ତି ଖୋଦିତ ଓ ଉପାସିତ ହେଉଥିଲେ ଓ ଏବେ ମଧ୍ୟ ମନ୍ଦିର ବେଢାରେ ଶ୍ୱାନ ଭୈରବୀ ବିଗ୍ରହ ତଥା ପ୍ରତୀକାତ୍ମକ ଭାବେ ପଞ୍ଚମକାର ପୂଜା ପ୍ରଣାଳୀ ପ୍ରଚଳିତ ।

କିମ୍ବଦନ୍ତୀର ଇତିହାସରେ ପୁଣି ସ୍ମୃତି ଓ ପରମ୍ପରାରେ ଶ୍ରୀଜଗନ୍ନାଥ ଓଡିଆ ଜାତିର ପରମ ଆତ୍ମୀୟ । ବିଦେଶରେ ଓଡିଆ ପରିଚୟ ପୁଣି ଜଗନ୍ନାଥ ।

କିନ୍ତୁ ଏ ଜଗନ୍ନାଥ କିଏ? ଶ୍ରୀଜଗନ୍ନାଥଙ୍କର ଅନ୍ୟନାମ ପୁରୁଷୋତ୍ତମ ଓ ଶ୍ରୀକ୍ଷେତ୍ର ପୁରୀ ପୁରୁଷୋତ୍ତମ କ୍ଷେତ୍ର ନାମରେ ବିଦିତ ।

ମନୁଷ୍ୟର ଆଧ୍ୟାତ୍ମିକ ସାଧନାରେ ଶ୍ରୀଜଗନ୍ନାଥଙ୍କ ପରି ଏକ ପରିକଳ୍ପନା ଓ ଅନୁଷ୍ଠାନ ବିଶ୍ୱରେ ଏକ ଓ ଅଦ୍ୱିତୀୟ । ପାଶ୍ଚାତ୍ୟ ଦାର୍ଶନିକମାନଙ୍କ କଳନାରେ ବିଧାତା ମନୁଷ୍ୟଙ୍କୁ ନିଜ ଛାଞ୍ଚରେ ଯେପରି ପରିକଳ୍ପନା କରିଅଛି, ତାହାର ସଂକେତ ଶ୍ରୀଜଗନ୍ନାଥ



ଏପରି ମଧ୍ୟ କୁହାଯାଇଛି । ଶ୍ରୀଜଗନ୍ନାଥ ଜଣେ ରକ୍ତ ମାଂସ ଦେହି ମଣିଷ । ସମୁଦ୍ର ଉପକୂଳବର୍ତ୍ତୀ ଉତ୍କଳର ଆର୍ଦ୍ରତା ପୀଡିତ ଗ୍ରୀଷ୍ମୋତାପରେ ଜଗନ୍ନାଥ ସାଧାରଣ ଓଡିଆଙ୍କ ପରି ସ୍ୱେଦସିକ୍ତ ହୁଅନ୍ତି । ଅଣସର ଗୁଳୁଗୁଳିରେ ଅନ୍ୟମାନଙ୍କ ପରି ଜଗନ୍ନାଥ ମଧ୍ୟ ପୀଡିତ ହୁଅନ୍ତୁ । ସେଥିପାଇଁ ତାଙ୍କ ଦେହରେ ଚନ୍ଦନ ପ୍ରଲେପର ବ୍ୟବସ୍ଥା ହୁଏ । ଅତିରିକ୍ତ ସ୍ନାନ ଫଳରେ ସାଧାରଣ ମଣିଷଙ୍କ ପରି ଜଗନ୍ନାଥ ମଧ୍ୟ ଜ୍ୱରାକ୍ରାନ୍ତ ହୋଇ ପଡନ୍ତି । ସେଥିପାଇଁ ତାଙ୍କୁ ବୈଦ୍ୟଙ୍କ ଠାରୁ ଚେର ମୂଳି ପାଚନ ପ୍ରଭୃତି ଔଷଧ ସେବନ କରିବାକୁ ପଡେ । ଶୀତ ହେଲେ ଉଷ୍ମନାଭି ବସ୍ତ୍ରା ଜଗନ୍ନାଥ ହୁଅନ୍ତୁ ପଛେ ବିଶ୍ୱପତି ପୁରୁଷୋତ୍ତମ, ମାତ୍ର ଶ୍ୱଶୁରାଳୟ ମହୋଦଧିରେ ଶ୍ୱଶୁର ଅନ୍ନରେ ପ୍ରତିପାଳିତ ହେବାକୁ ତାଙ୍କୁ କମ ଗଞ୍ଜଣା ଭୋଗିବାକୁ ପଡିନଥିଲା । ସେଥିପାଇଁ ନିଜ ମର୍ଯ୍ୟାଦା ଜଗି ସେ ମହୋଦଧି ଛାଡି ନୀଳାଚଳରେ ଆସି ରହିଲେ । ଜଗନ୍ନାଥ ପୁରୁଷୋତ୍ତମ ତଥାପି ଇର୍ଷାନ୍ୱିତା ଲକ୍ଷ୍ମୀଙ୍କ ଠାରୁ କମ ଗଞ୍ଜଣା ଭୋଗିବାକୁ ପଡିନାହିଁ । ଯେକୌଣସି ସାଧାରଣ ସ୍ୱାମୀ ସ୍ତ୍ରୀଙ୍କ ପରି ପୁରୁଷୋତ୍ତମ ପରିବାରରେ କମ ଝଗଡା ଲାଗେ ନାହିଁ । ଶ୍ରୀଜଗନ୍ନାଥଙ୍କଠାରେ ମଣିଷ ଦେବତା ହୋଇଛି । ପୁଣି ଦେବତା ମଣିଷ ହେଉଛି । ଲକ୍ଷ୍ମୀଙ୍କ ଦୁର୍ଜ୍ଜୟ ଅଭିମାନରେ ଦୁଇଭାଇ ବାରବର୍ଷ ଲକ୍ଷ୍ମୀ ଛଡାହୋଇ ବୁଲିଛନ୍ତି । ଶେଷକୁ ଲକ୍ଷ୍ମୀଙ୍କ କ୍ଷମା ପ୍ରାର୍ଥୀ ହୋଇ ଶ୍ରୀ ମନ୍ଦିରକୁ ଶ୍ରୀମଣ୍ଡନ କରିଛନ୍ତି, ଯେଉଁଥିପାଇଁ ଲକ୍ଷ୍ମୀପୁରାଣର ସୃଷ୍ଟି ।

ବଡ ବିଚିତ୍ର ଏ ଜଗନ୍ନାଥ, ଯେତେବେଳେ ଆମେ ତାଙ୍କୁ ପ୍ରତିମା ରୂପେ ଗ୍ରହଣ କରୁ ଦେଖୁ, ଦେବ ଦେବୀଙ୍କ ପ୍ରତିମା ସଦୃଶ ଜଗନ୍ନାଥଙ୍କ ଅଙ୍ଗରେ ମସ୍ତକ, ବକ୍ଷ, ଉଦର ଓ ଅଣ୍ଟା ସମେତ ଅଧଃଦେଶ ନାହିଁ । ଚକ୍ଷୁ ନାଶା କର୍ଣ୍ଣ ପାଟି ଗ୍ରୀବା ଓ ହସ୍ତ ଆଦି ଅବୟବ ମଧ୍ୟ ନାହିଁ । ଅବୟବ ତଥା ଇନ୍ଦ୍ରିୟ ହିନ ଏବଂ ବିଧ ଜଗନ୍ନାଥଙ୍କ ଅଙ୍ଗମାତ୍ର ଦୁଇଗୋଟି ଭାଗରେ ଶୋଭିତ ଅଧଃ ଓ ଉର୍ଦ୍ଧ୍ୱ । ଅଧଃ ବା ନିମ୍ନ ଭାଗରେ ରହିଛି କେବଳ ଗୋଟିଏ ସୁପ୍ତାକୃତି ଗର୍ଭ, ଯାହା ମଝିରେ ରକ୍ଷିତ ହୋଇଛି ବିଶ୍ୱର ସବୁଠାରୁ ରହସ୍ୟମୟ ପଦାର୍ଥ । ଉର୍ଦ୍ଧ୍ୱ ବା ଉପରିଭାଗ ଗୋଟିଏ ପଟା ସଦୃଶ । ଏହା ଉପରେ ଅଙ୍କିତ ହୋଇଛି, ଶୂନ୍ୟର ସଂକେତ ମହାଯାନ ସଂପ୍ରଦାୟର ନିଶାପଶ୍ୱେତ ମଣ୍ଡଳ । ଶ୍ୱେତ ମଣ୍ଡଳ ମଧ୍ୟରେ କୃଷ୍ଣ ବୃତ୍ତ, ଲୋକାଚାରରେ କୁହାଯାଇଥାଏ ଚକାଡୋଳା । ଗୋଟିଏ ପ୍ରଜ୍ଞା ଅପରଟି କରୁଣା ଦ୍ୟୋତକ ।

ଏହି ପରିପ୍ରେକ୍ଷୀରେ ବିଚାର କଲେ ପୁରୀ ଜଗନ୍ନାଥ କି ଦେବତା ଭାବେ ଗୃହୀତ କରିହୁଏ ନାହିଁ । ଏହାର ରହସ୍ୟ ଅଦ୍ୟାପି ଅନୁଦ୍ ଘାଟିତ କାରଣ ଏ ପାର୍ଥୀବ ଦେବତା ନୁହନ୍ତି କିମ୍ବା ଅପାର୍ଥୀବ ଦେବତା ନୁହନ୍ତି । ଏ କୌଣସି ପିତାମାତାଙ୍କ ଠାରୁ ଉତ୍ପନ୍ନ ହେବା କୁତ୍ରାପି ବର୍ଣ୍ଣିତ ହୋଇନାହିଁ ।

ଆଲୋଚିତ ଗଠନ ପ୍ରଣାଳୀ ଦେଖିଲେ ସବୁ ଓଲଟା କେଉଁ ଦେବ ଦେବୀଙ୍କ ଆଖି ଡୋଳା କେଭେ ଚକା ନୁହେଁ । ଜଗନ୍ନାଥଙ୍କ ଆଖିକୁ ତ ଚକାଡୋଳା କୁହାଯିବ ନାହିଁ । କେବଳ ଡୋଳା ଦୁଇଟା ମାତ୍ର । କିନ୍ତୁ ଚକାଡୋଳା କହିଲେ ପୃଥିବୀର ଅନ୍ୟ କୌଣସି ଦେବାଦେବୀଙ୍କୁ ନ ବୁଝାଇ କେବଳ ଜଗନ୍ନାଥଙ୍କୁ ବୁଝାଯାଏ । ଅଥଚ ଧ୍ୟାନ ବା ସ୍ତୁତି କଲାବେଳେ ତାଙ୍କୁ କେଉଁ ଦେବତା ରୂପେ ସ୍ତୁତି କରାଯାଇଛି ତାହା ନୁହେଁ । କେବଳ ଆଖି ଦୁଇଟିକୁ କେନ୍ଦ୍ରକରି ଯେତେକ ବ୍ୟଞ୍ଜନା ଯେତେକ ଉପମା ଯେତେକ ଭାବନା ଅନ୍ତନାହିଁ ତାର ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ପଦ୍ମବେଶ ବେଳକୁ ସେ ବୈକୁଣ୍ଠପତି । ହରିହର ବେଶ ବେଳେ ଅର୍ଦ୍ଧାଙ୍ଗ ହର ଓ ଅର୍ଦ୍ଧାଙ୍ଗ ହରି । ହାତୀ ବେଶରେ (ସ୍ନାନ)ଗଜାନନ ଗଣେଶ । ଏ ସମସ୍ତେ ଅପାର୍ଥବ ଦେବ । କିନ୍ତୁ ରଘୁନାଥ ବେଶରେ ସୀତାପତି ରାମ କାଳୀୟ ଦଳନ ବେଳକୁ ନନ୍ଦ ନନ୍ଦନ କୃଷ୍ଣ । ଦଶ ଅବତାର ମଧ୍ୟରେ ପଦ୍ମପାଣି ବୃଦ୍ଧ । ସେତିକି ନୁହେଁ କେତେବେଳେ ନାଗାର୍ଜ୍ଜୁନ ପର୍ଣ୍ଣ ପରିହିତ ବର୍ଣ୍ଣ ଶବର ତ ସୁନାବେଶ ବେଳକୁ ସର୍ବାଳଙ୍କାର ମଣ୍ଡିତ ରାଜାଧିରାଜ ରୂପ ।

ହେ ନୀଳାଚଳ ନାଥ ଜଗନ୍ନାଥ ତୁମେ ଜଗତର ଆନନ୍ଦାକନ୍ଦ ଓ ଭକ୍ତମାନଙ୍କ ଦୁଃଖହାରୀ । ତୁମକୁ ମୁଁ ଭକ୍ତିପୂତ ପ୍ରଣାମ କରେ । ବାସ୍‌ସେତିକି । ସେତିକିରେ ସବୁଧର୍ମ ସଂପ୍ରଦାୟର ଅନ୍ତିମ ଭାବନା ଅନ୍ତର୍ଗର୍ଭିତ, ସମସ୍ତଙ୍କ ଆଖିରେ ବିଚାର ଭକ୍ତି ପ୍ରାର୍ଥନା ଲୁକ୍କାୟିତ । ଏଥିରେ ବିଦ୍ୱେଷର ସ୍ଥାନ ନାହିଁ । ବିରୋଧରେ ଅବକାଶ ନାହିଁ । ହିନ୍ଦୁ, ଜୈନ, ଖ୍ରୀଷ୍ଟ, ଇସଲାମ ଜୋରାଷ୍ଟ୍ରୀୟ ସମସ୍ତଙ୍କ ପାଇଁ ଏବଂ ସମାନ ଧର୍ମ କାର୍ଯ୍ୟର ଏହାହିଁ ଐକେନ୍ଦ୍ରିକତା ।

କେବଳ ସେତିକି ନୁହେଁ ଦେବତାଙ୍କ ଚଳଣି କଥା ବିଚାର କଲେ ମଧ୍ୟ ସେଇଆ । ଚଳଣି ମାନେ ଆବାହମାନ କାଳରୁ ଚଳି ଆସୁଥିବା ବିଧିବ୍ୟବସ୍ଥା ଅନ୍ୟନାମ ପରମ୍ପରା ସମାଜରେ ଯେପରି ଭିନ୍ନ ଭିନ୍ନ ଚଳଣି ରହିଥାଏ । ଦେବାଦେବୀ ପୀଠରେ ମଧ୍ୟ ସେହିପରି ତାହା ପ୍ରଚଳିତ ଥାଏ । ଦେବତାଙ୍କ ସେବା ପୂଜା ଭୋଗରାଗ ପର୍ବପର୍ବାଣି ଅନୁସାରେ ସଂପାଦନ ହୋଇଥାଏ ମାତ୍ର ଜଗନ୍ନାଥଙ୍କ ମନ୍ଦିରରେ ତାହାର ମଧ୍ୟ ବ୍ୟତିକ୍ରମ ।

ଅନ୍ୟପକ୍ଷରେ ଶାସ୍ତ୍ରୀୟ ବ୍ୟବସ୍ଥାଥିବା ଚଳଣୀ ମାନ ଯେ ଶ୍ରୀମନ୍ଦିରରେ ଅନୁସୃତ ତାବି ନୁହେଁ । ବଡ ଦେଉଳର ଚଳଣୀମାନ ପ୍ରାୟତଃ ସ୍କନ୍ଦ ପୁରାଣ ଏବଂ ନୀଳାଦ୍ରି ମହୋଦୟ ଅନୁଯାୟୀ ପାଳିତ ହୁଏନାହିଁ । କୁହାଯାଇଥାଏ କିନ୍ତୁ ଆପାତତଃ ଲୋକକଥା ପରାମର୍ଶ ଭାକ୍ତିକ ମାନସିକତା ଏଠାରେ ବହୁଳ ଭାବେ ପ୍ରଚଳିତ । ପ୍ରଥମେ ଦେଖିବା ଭୋଗରାଗ । ଏଚଳଣୀ ବେଢା ମଧ୍ୟରେ ଅବସ୍ଥିତ ସବୁ ଦେବାଦେବୀ ମନ୍ଦିରରେ ବିଦ୍ୟମାନ କିନ୍ତୁ କାହାରି ସହିତ କାହାର ମେଳ ନଥାଏ । କେଉଁଠି ଶଙ୍ଖୁଡିତ କେଉଁଠି ନିଶଙ୍ଖୁଡି କେଉଁଠି ଆମିଷ (କେବଳ ଗୋଟିଏ ନିର୍ଦ୍ଦିଷ୍ଟ ଦିନ) କେଉଁଠି କନ୍ଦା କୋଳିତ କେଉଁଠି ପାଚିଲା କଦଳୀ ଏସବୁ ସତ୍ତ୍ୱେ ଗୋଟିଏ ଜିନିଷ ଲକ୍ଷ୍ୟ କରିବାର କଥା ବିଭିନ୍ନତା ମଧ୍ୟରେ ଏକତାର ଯେଉଁ ନିର୍ଯ୍ୟାସ ତାହା ପ୍ରତିଫଳିତ ଏହି କ୍ଷେତ୍ରରେ । ଯେତେ ଯାହା ହେଲେ ମଧ୍ୟ ତାହା ମହା ପ୍ରସାଦ ନାମରେ ନାମିତ ଏବଂ ଆଦୃତ ।

ଦେବତାଙ୍କ ପାଇଁ ନିର୍ମଳ ସାତ୍ତ୍ୱିକ ଆହାର ପୂର୍ଣ୍ଣ ନିରାମିଶ ଏପରିକି ତାମସ ରାଜସ ଗୁଣ ସମ୍ପନ୍ନ ପନିପରିବାର ବ୍ୟବସ୍ଥା ବି ନାହିଁ ସେଥିରେ ତାହାହିଁ ଭୋଗ୍ୟ କିନ୍ତୁ ଉପଯୁକ୍ତ ପ୍ରଣାଳୀରେ ତାହା ସିଦ୍ଧ ହେବା ପ୍ରୟୋଜନ । ଶୁଦ୍ଧପୂତ ପରିବେଶ ଓ ଲୋଲୁପ ଦୃଷ୍ଟିର ଅନ୍ତରାଳରେ ମହାପ୍ରସାଦ ପ୍ରସ୍ତୁତି ହେବା ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ଦିଆଯାଇଥାଏ । ବ୍ୟତିକ୍ରମ ହେଲେ ପୁନଶ୍ଚ ସଂସ୍କାର-ପୁନଶ୍ଚପାକ । ଏତାଦୃଶ ବିଚିତ୍ର ଚଳଣୀ ଜଗନ୍ନାଥଙ୍କ ଦେଉଳ ଛଡା ଅନ୍ୟତ୍ର ଦେଖାଯାଏ ନାହିଁ ।

ସେ ବିଚିତ୍ର ଠାକୁରର କେଉଁ ଦିଗକୁ ଆଲୋଚନା କରିବାକୁ ଧୃଷ୍ଟତା କରିବ? ଯେଉଁ ଦିଗକୁ ଯିବ ତାର ଆଦି ଅନ୍ତ ପାଇବ ନାହିଁ । ସେଥିପାଇଁ ସେ ରହସ୍ୟମୟ । କାଷ୍ଠ ବିଗ୍ରହର ସ୍ୱରୂପ ଧାରଣ କରି ତାଙ୍କ ଦିବ୍ୟଲୀଳା ସମୂହର ଅନ୍ତ ନାହିଁ । ଶ୍ରୀମଦ ବାଲ୍ମୀକିୟ ରାମାୟଣରେ ଶ୍ରୀଜଗନ୍ନାଥଙ୍କୁ ଶ୍ରୀରାମଙ୍କ ଅବତାର ରୂପରେ ସ୍ୱୀକାର କରାଯାଇଛି ।

ଯେତେବେଳେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମ ତାଙ୍କ ଲୀଳା ଶେଷରେ ପରମଧାମ ଗମନ କରିବାର ସମୟ ଆସିଗଲା ସେ ସମୟରେ ଭଗବାନ ଶ୍ରୀରାମଙ୍କୁ ତାଙ୍କର ପରମଭକ୍ତ ବିଭୀଷଣାଦି ପ୍ରାର୍ଥନା କଲେ, ହେ ପ୍ରଭୁ ଆପଣଙ୍କ ଦିବ୍ୟ ଲୀଳା ସମ୍ବରଣ ପରେ ଆମେ କାହାକୁ ଆରଧାନା କରିବୁ ସେତେବେଳେ କୃପାବତାର ପୂର୍ଣ୍ଣବ୍ରହ୍ମ ପ୍ରଭୁ ଶ୍ରୀରାମ ସେମାନଙ୍କୁ ଅନ୍ତିମ ଉପଦେଶ ପ୍ରଦାନକରି ଥିଲେ ।

ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ବିଭୀଷଣଙ୍କ ଦ୍ୱାରା କରାଯାଉଥିବା ଶ୍ରୀଜଗନ୍ନାଥଙ୍କ ଆରଧନାର ପରମ୍ପରା ଆଜି ପର୍ଯ୍ୟନ୍ତ ବି ପ୍ରଚଳିତ ହେଉଅଛି । ରଥଯାତ୍ରା ଦିନ ରଥ ଆରୋହଣ ସମୟରେ ବିଭିଷଣଙ୍କୁ ଦର୍ଶନ ଦେବା ଉଦ୍ଦେଶ୍ୟରେ ସ୍ୱୟଂ ପ୍ରଭୁ ଦକ୍ଷିଣାଭିମୁଖୀ ହୋଇ ରଥାରୁଢ ହୋଇଥାଆନ୍ତି ।

ଶ୍ରୀଜଗନ୍ନାଥ ଯେ ଶ୍ରୀ କୃଷ୍ଣଙ୍କ ବିକଳ୍ପ ସେଥିପାଇଁ ବହୁ ପୁରାଣର ବର୍ଣ୍ଣନା ଶତମୁଖ । ସେହି ଯୁକ୍ତିକୁ ପ୍ରତିଷ୍ଠିତ କରେ ୧୧୯୮ ଖ୍ରୀଷ୍ଟାବ୍ଦରେ ଉତ୍କୀର୍ଣ୍ଣ ତାମ୍ର ଶାସନର ପ୍ରଥମ ମଙ୍ଗଳାଚରଣ ଶ୍ଳୋକରେ ଲକ୍ଷ୍ମୀ ପତି ଜଗନ୍ନାଥ ଶ୍ରୀକୃଷ୍ଣ ରୂପେ ଆରାଧିନ ହୋଇଛନ୍ତି ।

ଉତ୍‌କୀର୍ଣ୍ଣ ଶିଳାଲିପିରେ ଜଗନ୍ନାଥ ଶ୍ରୀକୃଷ୍ଣ ରୂପେ ବର୍ଣ୍ଣିତ ଥିବାର ଦେଖାଯାଇଛି । କୃଷ୍ଣଙ୍କ ଶରୀରରେ ଆପୋଡା ଅଂଶ ଜଗନ୍ନାଥଙ୍କ ବ୍ରିହ୍ମରୂପ ବିଦିତ ଏବଂ ପୂଜିତ । ଏହି ଯୁକ୍ତିକୁ ପ୍ରତିଷ୍ଠିତ କରିବାକୁ ଯାଇ ଶୂଦ୍ରମୂନି ସାରଳା ଦାସ ତାଙ୍କ ରଚିତ ମହାଭାରତରେ ସ୍ପଷ୍ଟ କରିଦେଇଛନ୍ତି । ଜାରା ଶବର ଶରରେ ଶ୍ରୀକୃଷ୍ଣଙ୍କ ମହାପ୍ରୟାଣ ହେବାପରେ ପରେ ତାଙ୍କ ପାର୍ଥୀବ ଶରୀରକୁ ଦାହ କରାଗଲା ମାତ୍ର ତାଙ୍କ ଶରୀରର ଏକ ଅଂଶ ଅଗ୍ନିରେ ଅପୋଡା ରହିବାରୁ ସେ ଅଂଶକୁ ଶୂନ୍ୟବାଣୀ ଅନୁସାରେ ମହୋଦଧିରେ ମେଲି ଦିଆଗଲା । ଶ୍ରୀ କୃଷ୍ଣଙ୍କ ସେହି ଅପୋଡା ଅଂଶ ହିଁ ଜଗନ୍ନାଥଙ୍କ ନାଭି ଦେଶରେ ସ୍ଥାପିତ ଏବଂ ପୂଜିତା ।

ପରବର୍ତ୍ତୀ ଅବସ୍ଥାରେ ବହୁ ଗବେଷକ ଏବଂ ଐତିହାସିକ ଏହାକୁ ଗ୍ରହଣ କରିଥିବା ଜଣାଯାଇଥାଏ । ତଥାପି ଏହା ମଧ୍ୟ ରହସ୍ୟାବୃତ୍ତ ଏ ସବୁ ସତ୍ତ୍ୱେ ମଧ୍ୟ ସଂପ୍ରତି ଜଗନ୍ନାଥ ସଂସ୍କୃତିର ମୂଳ ଉତ୍ସ, ରୂପ, ତତ୍ତ୍ୱ, ପ୍ରଭାବର ପ୍ରତିଷ୍ଠା ବିଷୟରେ ନାନା ମୁନିଙ୍କର ନାନାମତ ନ୍ୟାୟରେ ବିଭିନ୍ନ ଦିଗରୁ ଯେଉଁ ଆଲୋଚନା ବା ପ୍ରତ୍ୟାଲୋଚନା ଚାଲିଛି ତାହାର ପୂର୍ଣ୍ଣତା ବା ଶେଷ ସିଦ୍ଧାନ୍ତ ତଥାପି ସୁଦୂର ପରାହତ ପରି ମନେ ହୁଏ । ଏଠାରେ ଲକ୍ଷ୍ୟ କରିବାର କଥା ଜଗନ୍ନାଥଙ୍କ ପୂଜା ପଦ୍ଧତିରେ ଶ୍ରୀ କୃଷ୍ଣଙ୍କ ପ୍ରାଧାନ୍ୟ ପ୍ରତିଷ୍ଠିତ ହୋଇଥିବାର ଜଣାଯାଏ ।

ଓଁ କ୍ଳୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପିଜନ ବଲ୍ଲଭାୟ ନମଃ

ନାମକ ଅଷ୍ଟାଦଶ ଶବ୍ଦମାତ୍ରା ବା ଉଚ୍ଚାର୍ଯ୍ୟ ମନ୍ତ୍ରରେ ଜଗନ୍ନାଥଙ୍କ ବିଗ୍ରହ ପୂଜିତ ହୁଅନ୍ତି ।



ସମୟର ବିବର୍ତ୍ତନ ମଧ୍ୟରେ ଜଗନ୍ନାଥ କେଉଁ କାଳୁ ଉକ୍ତ ମନ୍ତ୍ର ଦ୍ୱାରା ପୂଜିତ ହୋଇ ଆସୁଛନ୍ତି ତାହାର କୌଣସି ଐତିହାସିକ କାଳ ନିର୍ଣ୍ଣୟ କରିବା ସହଜ ସାଧ୍ୟ ହୋଇପାରୁ ନାହିଁ । କିନ୍ତୁ ଗବେଷକମାନଙ୍କ ମତାନୁସାରେ କୃଷ୍ଣ ହିଁ କଳି ଯୁଗରେ ନୀଳାଚଳ ଧାମରେ ଅବତୀର୍ଣ୍ଣ ହୋଇଥିବାରୁ ତାଙ୍କୁ ହିଁ ଏହି ମନ୍ତ୍ରରେ ପୂଜା କରାଯାଇଛି ।

ଶ୍ରୀ ମନ୍ଦିରରେ ଭାଦ୍ରବ କୃଷ୍ଣ ସପ୍ତମୀ ଦିନ ଶ୍ରୀକୃଷ୍ଣଙ୍କ ଜନ୍ମୋତ୍ସବ ବିଧିରୁ ଶ୍ରୀଜଗନ୍ନାଥ ଓ ଶ୍ରୀକୃଷ୍ଣଙ୍କ ମଧ୍ୟରେ ଅଭିନ୍ନତା ପ୍ରତିପାଦନ ହୋଇଥାଏ । ଶ୍ରୀମନ୍ଦିରରେ ପାଳିତ ପର୍ବମାନ ଅନୁଧ୍ୟାନ କଲେ କାଳୀୟ ଦଳନ ଅନୁକାସୁର ବଧ, ପ୍ରଲମ୍ବାସୁର ବଧ, ନନ୍ଦୋତ୍ସବ ଇତ୍ୟାଦି ଅନେକ ଲୀଳା ପାଳନ ଏହି ଯୁକ୍ତିକୁ ଅଧିକ ପ୍ରତିଷ୍ଠିତ କରିଥାଏ ।

ଏହି ଭାବନାର ପଞ୍ଚସଖା ଯୁଗରୁ ଅଧିକ ବିସ୍ତାର ଲାଭ କରିଥିଲା । କବି ଯଶୋବନ୍ତ ଦାସଙ୍କ ପ୍ରେମ ଭକ୍ତି ତତ୍ତ୍ୱ ଗୀତା, ଜଗନ୍ନାଥ ଦାସଙ୍କ ନାମରେ ଭଣିତା ଷୋଳ ଚଉପଦୀ, ପରବର୍ତ୍ତୀ ଅବସ୍ଥାରେ କବି ଦିବାକର ଦାସଙ୍କ ଜଗନ୍ନାଥ ଚରିତାମୃତ ଦୀନକୃଷ୍ଣ ଦାସଙ୍କ ନାମରତ୍ନ ଗୀତା ଇତ୍ୟାଦି ଶେଷକୁ ପଞ୍ଚସଖା ପରିବାରର ଅନ୍ୟତମ ସଖା ଭାଗବତକାର ଜଗନ୍ନାଥ ଦାସ ଭାଗବତରେ ସ୍ପଷ୍ଟ କରି ଦେଇଛନ୍ତି ଯେ

ଦ୍ୱାପର ଯୁଗ ଶେଷକାଳେ
କଳି ଆଗମ ଅନ୍ତରାଳେ ।।
ରୂପ ପ୍ରକାଶେ ଚକ୍ରପାଣି
ଯେସନେ ଇନ୍ଦ୍ର ନୀଳମଣି ।।

କଳିର ଆଗମନ ହେଲା ରୂପାନ୍ତରିତ ହେଲେ ସେହି ଅପୋଡା ଭୂଇଁରେ ଜଗନ୍ନାଥ ଭାବେ ।

ଜଗନ୍ନାଥ ଯେ ଷୋଳକଳା
ତହୁଁ କଳାଏ ନନ୍ଦବଳା ।

ଯେଉଁ କଳାକି ବ୍ରହ୍ମରୂପରେ ବିରାଜିତ । ସେଇଥିପାଇଁ ରଥଯାତ୍ରାରେ ଜଗନ୍ନାଥଙ୍କ ସହ ମହାଲକ୍ଷ୍ମୀ ଯୋଗ ଦେବାର କିଛି ତାତ୍ତ୍ୱିକ ବିଚାର ମଧ୍ୟ ଅଛି ଯାହା ଚୈତନ୍ୟ ଚରିତ୍ରା ମୃତରେ କିଛି ଉପଲବ୍ଧ ହୋଇଥାଏ ।

ଏଥିରେ ଜଗନ୍ନାଥ ସ୍ୱୟଂ ରସିକ ଶେଖର ମୂରଲୀଧର ଶ୍ରୀକୃଷ୍ଣ ନୀଳାଚଳ ହେଉଛି ଦ୍ୱାରିକା ଏବଂ ଗୁଣ୍ଡିଚା ମନ୍ଦିର ହେଉଛି ବୃନ୍ଦାବନ । ବୃନ୍ଦାବନରେ କେବଳ ମାତ୍ର ଗୋପୀ ମାନଙ୍କର ଲୀଳାବିଳାସ ହୋଇଥାଏ । କୃଷ୍ଣ ଦ୍ୱାରିକାରେ ପୂର୍ଣ୍ଣ ମଥୁରାରେ ପୂର୍ଣ୍ଣତର ଏବଂ ବୃନ୍ଦାବନରେ ପୂର୍ଣ୍ଣତମ । କୃଷ୍ଣ ହେଉଛନ୍ତି ମାଧୁର୍ଯ୍ୟ ସ୍ୱରୂପ । କୃଷ୍ଣ ଦ୍ୱାରିକାରେ ଅବସ୍ଥାନ କରୁଥିବା ସମୟରେ ଐଶ୍ୱର୍ଯ୍ୟ ସ୍ୱରୂପ ଅଟନ୍ତି । ତାଙ୍କର ଏହି ଐଶ୍ୱର୍ଯ୍ୟ ରୂପର ସହାୟିକା, ରୁକ୍ମଣୀ ସତ୍ୟଭାମା ପ୍ରଭୃତି ମହିଷୀବୃନ୍ଦ । ଏଠାରେ ଲକ୍ଷ୍ମୀଙ୍କର କୌଣସି ଭୂମିକା ନାହିଁ । ବୃନ୍ଦାବନ ଲୀଳାରେ ଲକ୍ଷ୍ମୀ କାହିଁକି ସହାୟକାରିଣୀ ହୋଇପାରନ୍ତି ନାହିଁ,ସେ ଶ୍ରୀମଦଭାଗବତ ଅନୁଯାୟୀ ଉଦ୍ଧବ ଗୋପୀମାନଙ୍କ ନିକଟରେ କହିଛନ୍ତି। ନାରାୟଣଙ୍କ ଠାରୁ ଅଧିକ ମାଧୁର୍ଯ୍ୟମୟ ଶ୍ରୀ କୃଷ୍ଣଙ୍କ ଭୁଜଦ୍ୱାର ଆଲିଙ୍ଗନ ଲାଭ କରି ଲୁବଧ ମନୋରଥ ବ୍ରଜ ସୁନ୍ଦରୀଗଣ ଯେଉଁ କୃପାଲାଭ କରିଛନ୍ତି ବୈକୁଣ୍ଠସ୍ଥ ଭୂଦେବୀ ଲୀଳାଶକ୍ତି ଏବଂ ଲକ୍ଷ୍ମୀ ମଧ୍ୟ ସେ ପ୍ରଦାନ ପାଇନାହାନ୍ତି । ଅନ୍ୟ ସ୍ତ୍ରୀ ତ ଦୂରର କଥା ଏହିପରି ଜଗନ୍ନାଥ ସଂସ୍କୃତିର ନାନା କଥା ନାନାଗାଥା ।

ଲୋକାଚାରରେ ସେଇଥିପାଇଁ ଲକ୍ଷ୍ମୀଙ୍କର ଦୁର୍ଜ୍ଜୟ ଅଭିମାନ ରଥ ଭାଙ୍ଗିବା ଠାରୁ ଆରମ୍ଭ କରି ମନ୍ଦିର ନିଷେଧ ନାଟକମାନ ସୃଷ୍ଟି ହେଇଛି । ବାରବର୍ଷର ଲକ୍ଷ୍ମୀ ଅଭିଶାପର ସ୍ମାରକୀ ରଥଯାତ୍ରା ଦ୍ୱାଦଶ (ବାର) ଦିନରେ ଖଣ୍ଡିତ ହୋଇଛି ନୋଲି ଏଣ ସତେ କେଡେ ବିଚିତ୍ର ଠାକୁର ଏ ଜଗନ୍ନାଥ!!! ।

ପୁନଙ୍ଗ
ସିଦ୍ଧବାରଙ୍ଗ ପୀଠ ଜଗତସିଂହପୁର







# ଶବର ଦେବତା ଜଗନ୍ନାଥ ଓ ବୌଦ୍ଧଧର୍ମ

କଲ୍ୟାଣ କୁମାର ପଣ୍ଡା



ଶ୍ରୀଜଗନ୍ନାଥ ପ୍ରାଚୀନ ଦେବତାମାନଙ୍କ ମଧ୍ୟରେ ଅନ୍ୟତମ । ଓଡ଼ିଆ ଜାତି ତା'ର ଜାତିର ବଡ଼ଠାକୁର ଶ୍ରୀଜଗନ୍ନାଥଙ୍କୁ ନେଇ ଯୁଗେ ଯୁଗେ ବଡ଼ ହୋଇଆସିଛି । ସେହି ଦୃଷ୍ଟିରୁ ତାହାର ସୁପ୍ରାଚୀନ ସଂସ୍କୃତି ଶ୍ରୀଜଗନ୍ନାଥ ସଂସ୍କୃତି ଓ ଶ୍ରୀକ୍ଷେତ୍ର ଏକ ବିରାଟ ସଂସ୍କୃତିର ପୀଠ । ଓଡ଼ିଶାର ସଂସ୍କୃତି ଭାରତୀୟ ସଂସ୍କୃତିର ଗୋଟିଏ ଅଂଶ, ମାତ୍ର ଓଡ଼ିଶାର ସଂସ୍କୃତିର ସ୍ୱତନ୍ତ୍ର ବୈଶିଷ୍ଟ୍ୟ ଅଛି, ଯାହାକି ଭାରତୀୟ ସଂସ୍କୃତିରେ ମିଳିନଥାଏ । ବହୁ ପରସ୍ପର ବିରୋଧୀ ଧର୍ମୀୟ ଚିନ୍ତାଧାରା ଓଡ଼ିଶାର ସଂସ୍କୃତିରେ ସମନ୍ୱିତ ହୋଇ ନୂତନ ରୂପ ଧାରଣ କରିଛି । ଏହାରି ମୂଳରେ ଅଛି ଶ୍ରୀଜଗନ୍ନାଥଙ୍କ ପ୍ରଭାବ । ତେଣୁ ଶ୍ରୀଜଗନ୍ନାଥଙ୍କର ଇତିହାସକୁ ଓଡ଼ିଶାର ଧର୍ମନୀତିକ ଇତିହାସ କହିଲେ ଅତ୍ୟୁକ୍ତି ହେବନାହିଁ । ଶ୍ରୀଜଗନ୍ନାଥ ପୃଥିବୀର ପ୍ରାଚୀନତମ ଦେବତା, ଯିଏ କି ଏବେ ମଧ୍ୟ ପୂଜା ପାଉଛନ୍ତି । ଶ୍ରୀଜଗନ୍ନାଥ ଚେତନାର ସାଧନା ଏକ ଦୀର୍ଘାୟତ ପରମ୍ପରା ଉପରେ ପ୍ରବହମାନ । ସେହି ଶ୍ରୀଜଗନ୍ନାଥ ଚେତନା ଆଜି ଭାରତର ସୀମା ଅତିକ୍ରମ କରି ବିଶ୍ୱ-ପ୍ରସାରୀ ହୋଇଚାଲିଛି । ଏହି ଧର୍ମରେ ବୈଷ୍ଣବ, ଶାକ୍ତ, ଶୈବ, ବୌଦ୍ଧ, ଜୈନ ପ୍ରଭୃତି ଧର୍ମମତାବଲମ୍ବୀମାନଙ୍କର ସମନ୍ୱୟ ହୋଇଥିବା ସ୍ଥଳେ ଅନେକ ଗବେଷକ ଏହା ସହିତ ପ୍ରାଗୈତିହାସିକ ଆଦିବାସୀ ଧର୍ମ ଓ ସଂସ୍କୃତିକୁ ସଂଶ୍ଳିଷ୍ଟ କରିଛନ୍ତି । କିନ୍ତୁ ତାଙ୍କର ବିବର୍ତ୍ତନ ଖୋଜିବାକୁ ଯାଇ ତାଙ୍କୁ ବ୍ରାହ୍ମଣ୍ୟ, ଜୈନ, ବୌଦ୍ଧ ବା ତାନ୍ତ୍ରିକ ଯାହା କିଛି କୁହାଯାଉ ପଛେ, ସେ ସମ୍ପୂର୍ଣ୍ଣ ଭାବେ କୌଣସିଟି ନୁହନ୍ତି । ଓଡ଼ିଆ ମନୋଧାରାର ବଡ଼ଠାକୁର ରୂପେ ସେ ଶତାବ୍ଦୀ ଶତାବ୍ଦୀ ଧରି ପୂଜା ପାଇ ଆସୁଛନ୍ତି । ତେଣୁ ଯାହାକିଛି ନୂତନ ବୋଲି ଜନମତ ଦ୍ୱାରା ଗୃହୀତ ହୁଏ, ତାହା ଜଗନ୍ନାଥଙ୍କ ଠାରେ ହିଁ ଆରୋପିତ ହୋଇଥାଏ । ଜଗନ୍ନାଥଙ୍କ ଉପରେ ଯେତେ ଗବେଷଣା ଓ ଆଲୋଚନା ହେଲେ ମଧ୍ୟ ସେ ଯେ ପ୍ରକୃତରେ କ'ଣ ତାହା ଅଦ୍ୟାବଧି ରହସ୍ୟାବୃତ୍ତ ହୋଇରହିଯାଇଛି । ଏହାହିଁ ଓଡ଼ିଶାରେ ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତିର ମୂଳଭିତ୍ତି ।

ନିର୍ଗୁଣ ବ୍ରହ୍ମର ପ୍ରତୀକ ଶ୍ରୀଜଗନ୍ନାଥ ସକଳ ଶକ୍ତିର ଆଧାର । ଶ୍ରୀଜଗନ୍ନାଥ ଓ ଜଗନ୍ନାଥ ଧର୍ମର ପ୍ରାଚୀନତା ଏତେ ବେଶି ଯେ, ସେ ବିଷୟରେ କୌଣସି ତଥ୍ୟକୁ ଇତିହାସ ଭିତ୍ତିରେ ପ୍ରତିଷ୍ଠିତ କରିବା ଅସମ୍ଭବ । ଏହା ହୋଇପାରିଥିଲେ ଶ୍ରୀଜଗନ୍ନାଥ ଜଗତର 'ନାଥ'ତ୍ୱ ନିଶ୍ଚୟ ହରାଇଥାନ୍ତେ ଏବଂ ହିନ୍ଦୁଧର୍ମର ରହସ୍ୟମୟ ଦେବତା ଭାବରେ ତାଙ୍କୁ କେହି ଆରାଧନା କରୁନଥାନ୍ତେ । ସେ ଯାହାହେଉ, ଏହି ଚିର ରହସ୍ୟମୟ ଶ୍ରୀଜଗନ୍ନାଥଙ୍କ ଉତ୍ପତ୍ତି ପୃଥିବୀର ସୃଷ୍ଟିପରି ଆଦି ଅନ୍ତହୀନ ଓ ବର୍ତ୍ତମାନ ସୁଦ୍ଧା ଗଭୀର ତମସାଚ୍ଛନ୍ନ । ଶ୍ରୀଜଗନ୍ନାଥଙ୍କ ସମ୍ପର୍କିତ ଧର୍ମର ଆରମ୍ଭ ଓ ବିକାଶ ସମ୍ପର୍କରେ ଐତିହାସିକ ଓ ଗବେଷକମାନଙ୍କ ମଧ୍ୟରେ ମତପାର୍ଥକ୍ୟ ଦେଖାଯାଏ । ଇତିହାସର ତଥ୍ୟ ଅନୁସାରେ ଶ୍ରୀଜଗନ୍ନାଥ ଧର୍ମ ବହୁ ପ୍ରାଚୀନ କାଳର ସନାତନ ଧର୍ମ । ସେହି ଧର୍ମରେ କାଳକ୍ରମେ ବିଭିନ୍ନ ଧର୍ମର ପ୍ରଭାବ ପଡିଛି, କିନ୍ତୁ ଶ୍ରୀଜଗନ୍ନାଥ ପୂର୍ବପରି ରହିଛନ୍ତି ।

ଶ୍ରୀଜଗନ୍ନାଥ ଯେପରି ରହସ୍ୟମୟ, ତାଙ୍କର ପ୍ରଥମ ମୂର୍ତ୍ତି ନିର୍ମାଣ, ପ୍ରତିଷ୍ଠା ଓ ମନ୍ଦିର ନିର୍ମାଣ ମଧ୍ୟ ସେହିପରି ତମସାଚ୍ଛନ୍ନ । ତାଙ୍କୁ କେହି କେହି ଶବର ଦେବତା ବା ଦାରୁଦେବତା ବୋଲି ମଧ୍ୟ



କହିଥାନ୍ତି । ମହାଭାରତ ଯୁଦ୍ଧପରେ ପୁରୁଷୋତ୍ତମ କ୍ଷେତ୍ରରେ ପ୍ରତିଷ୍ଠା ହୋଇ କେତେବେଳ ଯାଏ 'ଇନ୍ଦ୍ରନୀଳମଣି' ମୂର୍ତ୍ତି ସମୁଦ୍ରରେ ଭାସମାନ ହେଲେ । ଶବର ରାଜା ବିଶ୍ୱାବସୁ ତାଙ୍କୁ ଉଦ୍ଧାର କରି ନୀଳକନ୍ଦର ପର୍ବତରେ 'ନୀଳମାଧବ' ରୂପେ ପୂଜା ଆରାଧନା କରିଥିବା କିମ୍ବଦନ୍ତୀ ଅଦ୍ୟାବଧି ଲୋକମୁଖରେ ପ୍ରଚଳିତ । ଉତ୍କଳଜନ୍ମିତ ଶବରମାନେ ଏଥିପାଇଁ ନିଜକୁ ବିଶ୍ୱାବସୁଙ୍କର ବଂଶଧର ବୋଲି ଦାବି କରନ୍ତି ଓ ଜଗନ୍ନାଥ ବର୍ତ୍ତମାନ ମଧ୍ୟ ଶବର ମନ୍ତ୍ରରେ ପୂଜିତ ହେଉଥିବା ଜଣାଯାଏ । ତେଣୁ କେବଳ ଏତିକିମାତ୍ର କୁହାଯାଇପାରେ ଯେ, ପ୍ରାଚୀନ ଉତ୍କଳ ଶବର ଅଧ୍ୟୁଷିତ ଥିଲା ଓ ଏହାର ଆଦିମ ଅଧିବାସୀ ଶବରମାନେ ବୃକ୍ଷ ଉପାସକ ଥିଲେ । କାଳକ୍ରମେ ସେମାନେ ବୃକ୍ଷର ଗଣ୍ଡିକୁ ପୂଜା କରିବାକୁ ଲାଗିଲେ ଏବଂ ଏହି ବୃକ୍ଷ ଉପାସନା ଅତି ପ୍ରାଚୀନ କାଳର ବୈଦିକ ପରମ୍ପରାରେ ପ୍ରବେଶ କରି ଏକ ଧର୍ମୀୟ ଚେତନାରେ ପରିଣତ ହୋଇ କାଳକ୍ରମେ ବ୍ରାହ୍ମଣ୍ୟ ପରମ୍ପରାରେ ମଧ୍ୟ ଗ୍ରହଣୀୟ ହୋଇଗଲା । ଏହି କ୍ରମରେ ପରବର୍ତ୍ତୀ କାଳରେ ଶବର ପୂଜିତ ସେହି କାଠର ଗଣ୍ଡି ଶ୍ରୀଜଗନ୍ନାଥ ରୂପେ ପ୍ରବର୍ତ୍ତିତ ହୋଇଥିବା ବିଶ୍ୱାସକୁ ଅବିଶ୍ୱାସ କରିହୁଏ ନାହିଁ । ପରବର୍ତ୍ତୀ ସମୟରେ ମଧ୍ୟ ବିଶ୍ୱାବସୁ ଶବରର ବଂଶଧର ରୂପେ ଦଇତାପତିମାନେ ଓ ବିଦ୍ୟାପତି ବ୍ରାହ୍ମଣର ବଂଶ ପ୍ରତିନିଧି ରୂପେ ପଣ୍ଡା ପୂଜକମାନେ ଶ୍ରୀଜଗନ୍ନାଥଙ୍କ ପୂଜା ଓ ସେବାର ଅଧିକାର ପ୍ରାପ୍ତ ହୋଇଥିଲେ । ଶବର ଓ ବ୍ରାହ୍ମଣଙ୍କ ମିଳିତ ବଂଶଧର ରୂପେ ଲଳିତା ଓ ବିଦ୍ୟାପତିଙ୍କ ଔରସ ସନ୍ତାନମାନେ ବଂଶ ପରମ୍ପରା କ୍ରମେ ଜଗନ୍ନାଥଙ୍କ ଅନ୍ନ ପ୍ରସ୍ତୁତକାରୀ ସୂପକାର ବା ସୁଆର ରୂପେ ପରିଚିତ ହୋଇଥିଲେ ।

ଶ୍ରୀଜଗନ୍ନାଥ ଚେତନାର ଉଦ୍ଭବ ଓ ବିକାଶରେ ଶବର ସଂସ୍କୃତି ପରି ବୌଦ୍ଧ ସଂସ୍କୃତିର ଭୂମିକା ମଧ୍ୟ ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ଅନେକ ଐତିହାସିକଙ୍କ ମତରେ ଶ୍ରୀଜଗନ୍ନାଥ ବୌଦ୍ଧଧର୍ମର ଦେବତା ଏବଂ ତାଙ୍କ ସହ 'ବୁଦ୍ଧତ୍ୱ' ଆରୋପ କରାଯିବା କୌଣସି ଦୃଷ୍ଟିକୋଣରୁ ଅପ୍ରାସଙ୍ଗିକ ମନେହୁଏ ନାହିଁ । ଓଡ଼ିଶାର ଧର୍ମ ଓ ସଂସ୍କୃତିର ପ୍ରାଣକେନ୍ଦ୍ର ଶ୍ରୀଜଗନ୍ନାଥ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ବୌଦ୍ଧଧର୍ମ ସହିତ ସଂପୃକ୍ତ ଥିବାର ଯଥେଷ୍ଟ ପ୍ରମାଣ ରହିଛି । ଶ୍ରୀଜଗନ୍ନାଥ ପ୍ରାଚୀନ ଦେବତାମାନଙ୍କ ମଧ୍ୟରେ ଅନ୍ୟତମ । ଅତୀତରେ ତାଙ୍କର ସ୍ଥିତି ବୌଦ୍ଧଧର୍ମର ଭିତ୍ତି ଉପରେ ପ୍ରତିଷ୍ଠିତ ଥିବା କୁହାଯାଏ । ଓଡ଼ିଶାର ସଂସ୍କୃତି ଓ ସାହିତ୍ୟରେ ଜଗନ୍ନାଥ ବୁଦ୍ଧ ରୂପେ ପ୍ରତିଷ୍ଠିତ । ଏହାର ସତ୍ୟତା ପ୍ରତିପାଦନ ପାଇଁ ଅନେକ ଐତିହାସିକ ତଥ୍ୟ ଓ କିମ୍ବଦନ୍ତୀ ଉପରେ ନିର୍ଭର କରିବାକୁ ପଡିଥାଏ ।

ଶ୍ରୀଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ର-ବୌଦ୍ଧଧର୍ମର ତିନୋଟି ମୁଖ୍ୟପ୍ରତୀକ ବା ତ୍ରିରତ୍ନ ବୁଦ୍ଧ, ଧର୍ମ ଓ ସଂଘରୁ ଉତ୍ପତ୍ତି ବୋଲି ଐତିହାସିକମାନେ ମତଦିଅନ୍ତି । ଏହି ତ୍ରିରତ୍ନ ଭିତରେ ଧର୍ମକୁ 'ସ୍ତ୍ରୀ' ରୂପରେ କଳ୍ପନା କରାଯାଇଛି । ବୌଦ୍ଧବିହାର ମାନଙ୍କରେ ପୂଜିତ ଚକ୍ର ସର୍ବପ୍ରଧାନ ପୂଜିତ ଉପାଦାନ ହୋଇଥିବାରୁ ମନ୍ଦିର ଭିତରେ ମଧ୍ୟସ୍ଥଳରେ ଚକ୍ରକୁ ଲୋକେ ପୂଜା କରୁଥିବାର ଦୃଶ୍ୟ ବୌଦ୍ଧବିହାର ମୂର୍ତ୍ତିଚିତ୍ରରେ ଦେଖିବାକୁ ମିଳିଥାଏ । ସେଥିପାଇଁ ବୋଧହୁଏ ଏହି ବୌଦ୍ଧ-ଚକ୍ରକୁ ଜଗନ୍ନାଥଙ୍କ 'ସୁଦର୍ଶନ' ସହିତ ତୁଳନା କରାଯାଇଛି । ବୌଦ୍ଧଗ୍ରନ୍ଥ 'ଦାଠାବଂଶ'କୁ ଭିତ୍ତିକରି ବୁଦ୍ଧଦେବଙ୍କ ଦନ୍ତ ବିଷୟରେ ଥିବା କିମ୍ବଦନ୍ତୀକୁ ଅନେକ ଜଗନ୍ନାଥଙ୍କ ସହିତ ସମ୍ପର୍କିତ କରିଥାନ୍ତି । ଶ୍ରୀଜଗନ୍ନାଥଙ୍କ 'ନବକଳେବର' ସମୟରେ ନୂତନ ମୂର୍ତ୍ତି ନିର୍ମାଣ ସମୟରେ କରାଯାଉଥିବା 'ବ୍ରହ୍ମ-ପରିବର୍ତ୍ତନ' ବିଷୟକୁ ଆଧାରକରି ଏହି 'ବ୍ରହ୍ମ' ବୁଦ୍ଧଙ୍କ ଦନ୍ତାବଶେଷ ବ୍ୟତୀତ ଅନ୍ୟକିଛି ନୁହେଁ ବୋଲି ଅନେକ ମତ ଦିଅନ୍ତି । ସେହି ଦନ୍ତ ଉପାସିତ ହେଉଥିବା ସ୍ଥାନ 'ଦନ୍ତପୁରୀ' ମଧ୍ୟ କାଳକ୍ରମେ 'ପୁରୀ' ହୋଇଥିବାର ସନ୍ଦେହ କରାଯାଇଥାଏ ।

ମୌର୍ଯ୍ୟଶାସକ ସମ୍ରାଟ ଅଶୋକଙ୍କ କଳିଙ୍ଗ ବିଜୟ ପରେ ପରେ ଅଶୋକ ବୌଦ୍ଧଧର୍ମ ଗ୍ରହଣ କରିବା ସହ ଓଡ଼ିଶାର ଶବରମାନେ ମଧ୍ୟ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇଥିଲେ । ସେହି ସମୟରେ ପୁରୀରେ ମଧ୍ୟ ଏକ ବୌଦ୍ଧସ୍ତୂପ ସ୍ଥାପିତ ହୋଇ ଏହି ତ୍ରିରତ୍ନର ପ୍ରତୀକ ସେଠାରେ ରଖାଯାଇଥିଲା । ଖ୍ରୀଷ୍ଟୀୟ ପ୍ରଥମ ଶତାବ୍ଦୀରେ ମହାଯାନ ବୌଦ୍ଧ ଧର୍ମର ପ୍ରଚଳନ ଫଳରେ ବୁଦ୍ଧ ଓ ବୋଧିସତ୍ତ୍ୱଙ୍କର ପୂଜା ପ୍ରଚଳିତ ହୋଇଥିଲା ଓ ଏହି ଶବରମାନେ ସ୍ତୂପରେ ଥବା ତ୍ରିରତ୍ନ ସହିତ ବୁଦ୍ଧଙ୍କର ଉପାସନା କରିଥିଲେ । ପରବର୍ତ୍ତୀ ସମୟରେ ଯେତେବେଳେ ମୂର୍ତ୍ତିପୂଜାର ପ୍ରଚଳନ ହେଲା, ସେତେବେଳେ ଏକମୂର୍ତ୍ତି ବଦଳରେ ବୌଦ୍ଧଧର୍ମର ବୁଦ୍ଧ, ଧର୍ମ ଓ ସଂଘ-ଏହି ତ୍ରିରତ୍ନକୁ ସ୍ୱତନ୍ତ୍ର ଭାବରେ ରଖି ତ୍ରିମୂର୍ତ୍ତିର ପରିକଳ୍ପନା କରାଯାଇଥିଲା । ଏମାନଙ୍କ ମଧ୍ୟରେ ବୁଦ୍ଧ ହେଉଛନ୍ତି ମୁଖ୍ୟ । ତେଣୁ ଜଗନ୍ନାଥଙ୍କଠାରେ ବୁଦ୍ଧ, ସୁଭଦ୍ରାଙ୍କଠାରେ ଧର୍ମ, ଓ ବଳଭଦ୍ରଙ୍କଠାରେ ସଂଘର ଆରୋପ କରାଯାଇଥିବାର ଅନୁମାନ କରାଯାଏ । ପୁନଶ୍ଚ, ପୂର୍ବରୁ ଏହି ଶବରମାାନ ବୃକ୍ଷ ବା ଦାରୁ ଉପାସକ ଥିବାରୁ ଦାରୁରେ ଏହି ତିନିମୂର୍ତ୍ତି ନିର୍ମାଣ କରି ପୂଜା ଆରାଧନା ଆରମ୍ଭ କରିଥିଲେ । ବୋଧହୁଏ ଏହି ତ୍ରିମୂର୍ତ୍ତି ପରିକଳ୍ପନା ଓ ଗଠନର ସମୟ ଖ୍ରୀଷ୍ଟୀୟ ୭ମ ବା ଅଷ୍ଟମ ଶତାବ୍ଦୀ ଏବଂ ସେ ସମୟର ଭୌମ ରାଜତ୍ୱରେ ଓଡ଼ିଶାରେ ବୁଦ୍ଧଙ୍କୁ ବିଷ୍ଣୁଙ୍କର ଅବତାର



ବୋଲି ଗ୍ରହଣ କରାଯାଇଥିଲା । ସେଥିପାଇଁ ଶ୍ରୀମନ୍ଦିରର ସିଂହଦ୍ୱାରର ଉପର ଭାଗରେ ଥିବା 'ଦଶାବତାର' ଚିତ୍ରରେ ନବମ ଅବତାର ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥ ହିଁ ଶୋଭାପାଇଛନ୍ତି । ଏହି ସମୟରେ ବୁଦ୍ଧ-ଜଗନ୍ନାଥଙ୍କୁ ବିଷ୍ଣୁଙ୍କ ଅବତାର ବୋଲି ଗ୍ରହଣ କରାଯାଇଥିବାରୁ ତାଙ୍କ ସହ ଥିବା ଅନ୍ୟ ଦୁଇମୂର୍ତ୍ତିଙ୍କ ସଂସ୍ଥାନରେ ଯଥାର୍ଥତା ପାଇଁ ବୁଦ୍ଧଙ୍କ ବାସୁଦେବ-କୃଷ୍ଣ ଅବତାରକୁ ଗ୍ରହଣ କରାଯାଇଛି । ପାଲିଭାଷାରେ ରଚିତ ବୌଦ୍ଧଧର୍ମ ଗ୍ରନ୍ଥରେ ବାସୁଦେବ ଓ ବଳଦେବ ପୂଜାର ବର୍ଣ୍ଣନା ମଧ୍ୟ ରହିଛି ।

ପୃଥିବୀରେ ପ୍ରାୟ ପ୍ରତ୍ୟେକ ଧର୍ମ ସଂଘଧର୍ମୀ ଐକ୍ୟ ବା ମୈତ୍ରୀ ଚେତନାକୁ ପ୍ରାଧାନ୍ୟ ଦେଇଆସିଛନ୍ତି । ଦାର୍ଶନିକ ଦୃଷ୍ଟିକୋଣରୁ ବିଚାରକଲେ ବୌଦ୍ଧ, ସଂଘ, ଧର୍ମ ଓ ବୁଦ୍ଧ ଯଥାକ୍ରମେ ମୈତ୍ରୀ ଚେତନା, କରୁଣା ଓ ପତିତପାବନ ଚେତନା ଏବଂ ନିର୍ବାଣ ବା ମୁକ୍ତି ଚେତନାର ପରିପ୍ରକାଶ ଓ ଏହି ଚେତନା ହେଉଛି ଜଗନ୍ନାଥ ଚେତନାର ଏକ ବିଶିଷ୍ଟ ଅଂଶବିଶେଷ । ଜଗନ୍ନାଥ ଧର୍ମରେ ଏହି ମୈତ୍ରୀଭାବ ବିଶ୍ୱଚେତନା ଭାବେ ରୂପାନ୍ତରିତ ହୋଇଛି । ଏହାହିଁ ଜଗନ୍ନାଥ ଧର୍ମର ଏକ ଅନନ୍ତ ତଥା ଅନନ୍ୟ ସାଧାରଣ ବୈଶିଷ୍ଟ୍ୟ ଓ ଏଥିପାଇଁ ବୋଧହୁଏ ଜଗନ୍ନାଥ 'ପତିତପାବନ' ନାମର ଏକ ସାର୍ଥକ ମୂର୍ତ୍ତିମନ୍ତ ପ୍ରତୀକ ।

ଦାରୁଦେବତା ଭାବରେ ପୂଜିତ ଶ୍ରୀଜଗନ୍ନାଥଙ୍କର କାଷ୍ଠ ନିର୍ମିତ ମୂର୍ତ୍ତି ନିର୍ମାଣ ପରେ ପରେ ବୌଦ୍ଧ ପ୍ରଥାନୁଯାୟୀ ତାଙ୍କର ସ୍ନାନଯାତ୍ରା ଓ ରଥଯାତ୍ରା ପ୍ରଭୃତି ଆରମ୍ଭ ହୋଇଥିବାର ଅନୁମାନ କରାଯାଏ । ଐତିହାସିକ ତଥା ଗବେଷକମାନଙ୍କ ମତରେ ଶ୍ରୀଜଗନ୍ନାଥଙ୍କ ଏହି ରଥଯାତ୍ରା ବୁଦ୍ଧଦେବଙ୍କ ଜନ୍ମୋତ୍ସବ ଉପଲକ୍ଷେ ହେଉଥିବା ରଥଯାତ୍ରା ବ୍ୟତୀତ ଅନ୍ୟ କିଛି ନୁହେଁ । ଏହି ଯାତ୍ରା ସମୟରେ ତାଙ୍କର ସେବା ପୂଜାର ଦାୟିତ୍ୱ ଶବରମାନଙ୍କର ବଂଶଧର 'ଦଇତା'ମାନଙ୍କ ହାତରେ ନ୍ୟସ୍ତଥାଏ । ତେଣୁ ଏହି ଶବର ଓ ଦଇତା ପୂଜିତ ଜଗନ୍ନାଥ ଯେ ନିଶ୍ଚିତ ଭାବରେ ବୌଦ୍ଧଧର୍ମର ଦେବତା, ଏଥିରେ କୌଣସି ସନ୍ଦେହ ନାହିଁ । ସେଥିପାଇଁ ଜଗନ୍ନାଥଙ୍କ ମହାପ୍ରସାଦରେ ଜାତିଭେଦର ସୂଚନା ମଧ୍ୟ ମିଳେନାହିଁ । ହିନ୍ଦୁ ଦେବଦେବୀଙ୍କ ପରି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କର ଆକୃତି ହୋଇନଥିବାରୁ ସେଥିପାଇଁ ତାଙ୍କୁ 'ଅ-ଲେଖ' ବା 'ଶୂନ୍ୟ' କହିବା ଏକାବେଳେ ଅଯୌକ୍ତିକ ନୁହେଁ । ବୌଦ୍ଧଧର୍ମୀମାନେ ବୁଦ୍ଧଙ୍କୁ 'ନିରାକାର' ଓ 'ମହାଶୂନ୍ୟ' ବୋଲି ଆଖ୍ୟା ଦେଇଛନ୍ତି । ଜଗନ୍ନାଥ ମଧ୍ୟ ନିରାକାର ଥିବାରୁ ଓଡ଼ିଶାର କବିମାନେ ତାଙ୍କୁ 'ବୁଦ୍ଧଦେବ' ବୋଲି ମଧ୍ୟ କହିଛନ୍ତି । ସାରଳାଦାସଙ୍କ ମହାଭାରତରେ ଜଗନ୍ନାଥଙ୍କୁ 'ବୌଦ୍ଧାବତାର' ବୋଲି ବହୁକ୍ଷେତ୍ରରେ ବର୍ଣ୍ଣନା କରାଯାଇଛି ।

ଅନେକ ଗବେଷକ ଓ ଐତିହାସିକ ଜଗନ୍ନାଥଙ୍କୁ ବୁଦ୍ଧ ବୋଲି କଳ୍ପନା କରିଛନ୍ତି । ଏହି କଳ୍ପନା ବୌଦ୍ଧ ବଜ୍ରଯାନ ପନ୍ଥାର ସାଧକମାନେ କରିଛନ୍ତି । ଏଥିରୁ ବୌଦ୍ଧ ବଜ୍ରଯାନୀ ସାଧକମାନେ ଜଗନ୍ନାଥଙ୍କୁ ଆରାଧନା କରୁଥିବା ସ୍ପଷ୍ଟ ହୁଏ । ବଜ୍ରଯାନର ଜଣେ ପ୍ରଧାନ ସାଧକ ରାଜା ଇନ୍ଦ୍ରଭୂତି ଓଡ଼ିଶାର ରାଜା ଥିଲେ । ତାଙ୍କ ରାଜତ୍ୱ କାଳରେ ଜଗନ୍ନାଥ ଓ ବୁଦ୍ଧ ଏକ ଓ ଉଭୟେ ନିରାକାର ବୋଲି ସେ କଳ୍ପନା କରିଥିଲେ । ରାଜା ଇନ୍ଦ୍ରଭୂତି ତାଙ୍କର ଜ୍ଞାନସିଦ୍ଧି ପୁସ୍ତକରେ ଜଗନ୍ନାଥଙ୍କୁ ବୁଦ୍ଧ ରୂପେ ବର୍ଣ୍ଣନା କରି ଲେଖିଛନ୍ତି-

''ପ୍ରଣିପତ୍ୟ ଜଗନ୍ନାଥଂ ସର୍ବଜନବରାର୍ଚ୍ଚିତଂ
ସର୍ବବୁଦ୍ଧମୟଂ ସିଦ୍ଧି, ବ୍ୟାପିଂ ଗଗନୋପମମ୍ ।''

ତେଣୁ ବୁଦ୍ଧ ହିଁ ଜଗନ୍ନାଥ । ଓଡ଼ିଶାର ଚିତ୍ରକଳାରେ ଦଶାବତାର ମଧ୍ୟରେ ବୁଦ୍ଧାବତାର ହେଉଛନ୍ତି ଜଗନ୍ନାଥ । ସେହିପରି କବି ଜୟଦେବ ମଧ୍ୟ ବୁଦ୍ଧଙ୍କୁ ବିଷ୍ଣୁଙ୍କର ନବମ ଅବତାର ରୂପେ ବର୍ଣ୍ଣନା କରି ଗୀତଗୋବିନ୍ଦରେ ଲେଖିଛନ୍ତି-

''କେଶବ ଧୃତ ବୁଦ୍ଧଶରୀର, ଜୟ ଜଗଦୀଶ ହରେ ।''

ବୌଦ୍ଧ ପୁରାଣର ବର୍ଣ୍ଣନା ଅନୁଯାୟୀ ଜଗନ୍ନାଥଙ୍କର କୈବଲ୍ୟରୂପୀ ନିର୍ମାଲ୍ୟକୁ ଆଚାଣ୍ଡଳ ବ୍ରାହ୍ମଣ ଗ୍ରହଣ କରିଥାନ୍ତି । ଏହାରି ମୂଳରେ ରହିଛି ବୌଦ୍ଧଧର୍ମର ସାମ୍ୟଭାବ । ଏହି ସାମ୍ୟଭାବ ସାମାଜିକ ସ୍ତରରେ ପ୍ରକାଶିତ ହୋଇଛି ଏବଂ ଫଳସ୍ୱରୂପ ଜାତି ବର୍ଣ୍ଣ ନିର୍ବିଶେଷରେ ସବୁ ଜାତିର ଲୋକେ ଅସଙ୍କୋଚ ଚିତ୍ତରେ ଏକତ୍ର ବସି ଗୋଟିଏ ପତ୍ରରେ ମହାପ୍ରସାଦ ସେବା କରିଥାନ୍ତି । କିନ୍ତୁ ମୂଳତଃ ଜଗନ୍ନାଥ ବୌଦ୍ଧ ନୁହନ୍ତି । ଏକଥା ସତ । ତଥାପି ତାଙ୍କୁ ବିଭିନ୍ନ ଗ୍ରନ୍ଥରେ ବୌଦ୍ଧାବତାର ବୋଲି ବର୍ଣ୍ଣନା କରାଯାଇଛି । ଜଗନ୍ନାଥ ମହାବିଷ୍ଣୁ ହୋଇଥିବାରୁ ସେ ମଧ୍ୟ ବୁଦ୍ଧ ଅବତାର ଭାବରେ ଗୃହୀତ ହୋଇଛନ୍ତି । ସେଥିପାଇଁ ତାଙ୍କୁ ଭୋଗମଣ୍ଡପର କାନ୍ଥରେ ନାଟମଣ୍ଡପରେ ଜଗନ୍ନାଥଙ୍କ ଦଶାବତାର ମଧ୍ୟରେ ବୌଦ୍ଧାବତାର ସ୍ଥାନରେ ବସାଇ ଦିଆଯାଇଛି । ସେଠାରେ ବୁଦ୍ଧଙ୍କ ମୂର୍ତ୍ତି ରହିବା କଥା, ମାତ୍ର ରହିଲା ଜଗନ୍ନାଥଙ୍କ ମୂର୍ତ୍ତି । ଏହାକୁ ଦେଖି ଜଗନ୍ନାଥ ବୌଦ୍ଧ ବୋଲି ଧରିନେବା ସେପରି ବଳିଷ୍ଠ ତଥ୍ୟ ନୁହେଁ । କିନ୍ତୁ ବୌଦ୍ଧ ଚେତନାରେ ଜଗନ୍ନାଥ ହିଁ ବୁଦ୍ଧ । ତ୍ରିମୂର୍ତ୍ତି ବୁଦ୍ଧ, ଧର୍ମ ଓ ସଂଘ ତଥା ସୁଦର୍ଶନ ଚକ୍ରର ପ୍ରତୀକ । ଗୌରବର ବିଷୟ, ପରବର୍ତ୍ତୀ କାଳରେ ଆର୍ଯ୍ୟ ଚେତନାରେ ବୁଦ୍ଧ ଓ ବୁଦ୍ଧରୂପୀ ଜଗନ୍ନାଥଙ୍କୁ ଦଶମ ଅବତାରର ମାନ୍ୟତା ଦିଆଯାଇ ଆଧ୍ୟାତ୍ମିକ ମିଳନ ସୃଷ୍ଟି କରାଯାଇଛି । ଗବେଷକ ଓ ଐତିହାସିକଙ୍କ ମତରେ ପୁରୀ ଏକ ପ୍ରାଚୀନ ବୌଦ୍ଧ ପୀଠ ଏବଂ ଶ୍ରୀଜଗନ୍ନାଥ ବୁଦ୍ଧ ଦେବତା ତଥା ବୌଦ୍ଧ



ସଂସ୍କୃତିରୁ ହିଁ ଘୋଷଯାତ୍ରାର ସୃଷ୍ଟି । ପ୍ରାଚୀନ ବିଶ୍ୱରେ ବିଭିନ୍ନ ସ୍ଥାନରେ ବୌଦ୍ଧ ରଥଯାତ୍ରା ଅନୁଷ୍ଠିତ ହେଉଥିଲେ ହେଁ ପୁରୀର ରଥଯାତ୍ରା ଏକ ମାନବଧର୍ମୀ ବୌଦ୍ଧ ପରମ୍ପରାରେ ସମଗ୍ର ପୃଥିବୀକୁ ଉଦ୍‌ବୁଦ୍ଧ କରିପାରିଛି ।

ଶେଷରେ ଏତିକି ମାତ୍ର କୁହାଯାଇପାରେ ଯେ, ଶ୍ରୀଜଗନ୍ନାଥ କୌଣସି ନିର୍ଦ୍ଦିଷ୍ଟ ଗୋଷ୍ଠୀ, ସଂପ୍ରଦାୟ, ବା ଧର୍ମମତବାଦର ଇଷ୍ଟଦେବ ଥିଲେ ନା ସେ ଥିଲେ ସାର୍ବଜନୀନ ତାହା ନିର୍ଣ୍ଣୟ କରିବା ସମ୍ଭବପର ନୁହେଁ । ଏହି ରହସ୍ୟମୟ ଦେବତାଙ୍କ ବିଷୟରେ ଯିଏ ଯେତେ ଲେଖିଲେ ବା ଆଲୋଚନା କଲେ ମଧ୍ୟ ସେ ପ୍ରକୃତରେ କ'ଣ ତାହା ଅପୂର୍ଣ୍ଣ ରହିଯାଏ । ସେ ଜଗନ୍ନାଥ ନାମ ବହିଥିବାରୁ ସବୁ ଜାତି ଓ ସବୁ ଧର୍ମର ଉପାସ୍ୟ । ସେ ଏକ ସାର୍ବଜନୀନ ଦେବତା । ତେଣୁ ଜଗନ୍ନାଥ ଧର୍ମକୁ ଏକ ମହାନ୍ ଗଣଧର୍ମ ଓ ଜଗନ୍ନାଥଙ୍କୁ ଗଣଦେବତା କହିଲେ ଭୁଲ୍ ହେବ ନାହିଁ । ଶ୍ରୀକ୍ଷେତ୍ରରେ ଅନୁଷ୍ଠିତ ରଥଯାତ୍ରାଟି ଏକ ଗଣଯାତ୍ରାରୂପେ ମଧ୍ୟ ଉତ୍କଳରେ ପରିଚିତ । ଜଗନ୍ନାଥ ଧର୍ମ ଶତାବ୍ଦୀ ଶତାବ୍ଦୀ ଧରି ମାନବ ଜାତିକୁ ପ୍ରେରଣା ଦେଇଆସିଛି । ସତରେ କେତେ ବିଶାଳ ଏହି ଜଗନ୍ନାଥ ସଂସ୍କୃତିର ରୀତିନୀତି !!!

ମୁଖ୍ୟ ଅଧ୍ୟାପକ, ଇତିହାସ ବିଭାଗ,
ବନମାଳୀପୁର କଲେଜ, ବନମାଳୀପୁର,
ଖୋର୍ଦ୍ଧା-୭୫୨୧୦୩

# ତୁମେ ପରା ମହାବାହୁ

ଡକ୍ଟର ହେମନ୍ତ କୁମାର ଛୋଟରାୟ

ଜଗତର ନାଥ ହେ ଅନାଥ ନାଥ
ତୁମେ ପରା ମହାବାହୁ
ମୁଁ ଜଣେ ଭକତ ପାଉନାହିଁ ପଥ
ଦୁଃଖ ବଢେ ଚାହୁଁଚାହୁଁ
କେତେ ଭକତ ଯେ ଜପି ତୁମ ନାମ
ଧନ୍ୟ ହେଲେ କୃପା ପାଇ
ମୁହିଁ ଅକିଞ୍ଚନ ଜପେ ତୁମ ନାମ
କାଣିଚାଏ କୃପା ପାଇଁ ।
ବନ୍ଧୁ ମହାନ୍ତିର କ୍ଷୁଧା ନିବାରିଛ
ଥାଳିରେ ଭୋଗ ପଠାଇ
ନୃପତି କୋପରୁ 'ତିଳିଛ' ରଖିଛ
ମଥାରେ କେଶ ଉଠାଇ
ରଖିବା ପାଇଁ କି 'ଗଜପତି' ମାନ
ଯୁଦ୍ଧ କଲକାଞ୍ଚି ଯାଇ
ବୁଝିଥିଲ ପରା 'ବଳରାମ' ମନ
ବାଲି ରଥେ ଦେଖା ଦେଇ ।
ଭକତ 'ଦାସିଆ' ଯାଚିଲା ଶ୍ରୀଫଳ
ଟୋକିନେଲ ନିଜ ହାତେ
'ସାଲବେଗ' ଡାକ ଦୂରରୁ ଶୁଣିଲ
ଅଟକି ରହିଲ ରଥେ ।
ପାଦତଳେ ପ୍ରଭୁ କରୁଛି ଗୁହାରି
ଟେକି ଦେଲି ଦୁଇହାତ
ଦୟାକର ପ୍ରଭୁ ହେ ବ୍ରଜବିହାରୀ
ଦେଖା ମୋତେ ସତପଥ ।

ନାଗାବଗିଚା, ପ୍ରଥମ ଗଳି
ମଧୁବନ, ପୁରୀ - ୨







# ବଲାଙ୍ଗୀରର ରଥଯାତ୍ରା

ଅଧ୍ୟାପକ ପବିତ୍ର ମୋହନ ବାରିକ



ପଶ୍ଚିମ ଓଡିଶାର ଐତିହାସିକ ସହର ବଲାଙ୍ଗୀର ତାର ସାଂସ୍କୃତିକ ବିଭବ ପାଇଁ ଏକ ସମ୍ମାନଜନକ ସ୍ଥାନର ଅଧିକାରୀ । ଶ୍ରୀଜଗନ୍ନାଥ ସଂସ୍କୃତିର ପ୍ରଚାର ଓ ପ୍ରସାର ଦିଗରେ ସହରର ଅଧିବାସୀ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ପ୍ରତି ନିଜର ଭକ୍ତି, ଭାବ ଓ ସମ୍ମାନ ସହରର ପ୍ରତିଷ୍ଠା ସମୟରୁ ପ୍ରଦର୍ଶନ କରି ଆସିଛନ୍ତି । ବଲାଙ୍ଗୀର-ପାଟଣା ପୂର୍ବତନ ଗଡଜାତ ରାଜ୍ୟର ରାଜଧାନୀ ୧୮୭୨ ଖ୍ରୀଷ୍ଟାବ୍ଦରେ ପାଟଣାଗଡରୁ ବଲାଙ୍ଗୀରକୁ ସ୍ଥାନାନ୍ତରିତ କରାଗଲା । ବଲାଙ୍ଗୀର ସହରର କେତୋଟି ପଡା ମଧ୍ୟରୁ ଜଗନ୍ନାଥ ପଡା ଅନ୍ୟତମ । ଜଗନ୍ନାଥ ପଡା ସହରର ପ୍ରଥମ ଜନବସତି । ଏଥିରୁ ସ୍ପଷ୍ଟ ସୂଚନା ମିଳେ, ସହରର ପ୍ରଥମ ଜନବସତି ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ନାମରେ ଉତ୍ସର୍ଗୀକୃତ । ଶୁଣାଯାଏ ସ୍ୱର୍ଗତ ଭଜରାମ ଗୌନ୍ତିଆଙ୍କୁ ଦିନେ ସ୍ୱପ୍ନାଦେଶ ହେଲା- ଶ୍ରୀଜଗନ୍ନାଥ ମହାପ୍ରଭୁ ଶୁକ ତେଲ ନଦୀ ଜଳରେ ଭାସି ଆସି ଶକମା ଫାସଡ ନିକଟରେ ଏକ ପଥର ଗୁମ୍ଫାରେ ଲାଖି ରହିଥିଲେ । ଶ୍ରୀଜୀଉଙ୍କୁ ସେଠାରୁ ଆଣି ପୂଜାର୍ଚ୍ଚନା କରିବା ନିମନ୍ତେ ସେ ସ୍ୱପ୍ନରେ ଆଦେଶ ପାଇଥିଲେ । ଭଜରାମ ଗୌନ୍ତିଆ ସେଠାରୁ ଶ୍ରୀଜଗନ୍ନାଥଙ୍କ ମୂର୍ତ୍ତିଙ୍କୁ ଶଗଡରେ ଆଣି ବର୍ତ୍ତମାନ ଯେଉଁଠି ଶ୍ରୀ ଜଗନ୍ନାଥଙ୍କ ମନ୍ଦିର ଅଛି ସେଠାରେ ଏକ ଖପର ଘର କରି ପୂଜାର୍ଚ୍ଚନା କଲେ । କିଛି ଦିନ ପରେ ଗୌନ୍ତିଆ ଶ୍ରୀବଳଭଦ୍ର ଓ ଶ୍ରୀସୁଭଦ୍ରାଙ୍କର ବିଗ୍ରହ ନିର୍ମାଣ କରିବାକୁ ମନସ୍ଥ କଲେ । କାରିଗର ଡକାଯାଇ ପ୍ରଥମେ ସୁଭଦ୍ରାଙ୍କର ମୂର୍ତ୍ତି ନିର୍ମାଣ କରାଗଲା । ବଳଭଦ୍ରଙ୍କ ବିଗ୍ରହର ଉପର ଅଂଶ ଚଞ୍ଛାଯାଇ କାମ ଶେଷ ହେବା ପରେ ନିମ୍ନ ଅଂଶ କାମ ଚାଲିଥିବା ସମୟରେ କାରିଗର ହାତରେ ବାରିସି ବାଜି ରକ୍ତ ସ୍ରାବ ହେଲା । ଏହାକୁ ଅଶୁଭ ବିବେଚନା କରି ଗୌନ୍ତିଆ ଶ୍ରୀ ବଳଭଦ୍ରଙ୍କର ମୂର୍ତ୍ତୀ ନିର୍ମାଣ କାର୍ଯ୍ୟ ବନ୍ଦ ରଖିଲେ । ଶ୍ରୀବଳଭଦ୍ର ମହାପ୍ରଭୁଙ୍କର ନିମ୍ନ ଅଂଶ ଏବେ ମଧ୍ୟ ଅଚଞ୍ଛା ହୋଇ ରହିଅଛି । ଶ୍ରୀଜୀଉମାନଙ୍କ ପୂଜାର୍ଚ୍ଚନା ପ୍ରଥମେ ବୈରାଗୀ ସଂପ୍ରଦାୟର ବ୍ୟକ୍ତିମାନଙ୍କ ଉପରେ ନିର୍ଭର ଥିଲା । ଠାକୁରମାନଙ୍କର ପ୍ରଥମ ପୂଜକ ଥିଲେ କବିରାଜ ପୂଜାରୀ । ଏହା ପରେ ୧୯୩୦ ମସିହା ପର୍ଯ୍ୟନ୍ତ ପରମା ପୂଜାରୀ ବଲାଙ୍ଗୀର ଶ୍ରୀଜଗନ୍ନାଥ ମନ୍ଦିରରେ ଶ୍ରୀଜୀଉମାନଙ୍କର ସେବାପୂଜାର ଦାୟିତ୍ୱ ନିଷ୍ଠାର ସହ ସମାପନ କରିଥିଲେ । ବର୍ତ୍ତମାନ ବ୍ରାହ୍ମଣ ପୂଜକମାନେ ଏହି କାର୍ଯ୍ୟକୁ ଭକ୍ତିରସାତ୍ମକ ଭାବ ସହିତ ସଂପାଦନ କରୁଛନ୍ତି । ବଲାଙ୍ଗୀର ଜଗନ୍ନାଥ ପଡାର ଏହି ମନ୍ଦିରର ନିର୍ମାଣ କାର୍ଯ୍ୟ ଗୌନ୍ତିଆ ପରିବାର ୧୯୦୭ ମସିହାରେ ଆରମ୍ଭ କରିଥିଲେ । ଗୌନ୍ତିଆ ପରିବାର ମନ୍ଦିରର ରକ୍ଷଣା ବେକ୍ଷଣ ଠାରୁ ଆରମ୍ଭ କରି ଠାକୁରମାନଙ୍କର ନୀତି ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ତଦାରଖ କରିଆସୁଛନ୍ତି । ମନ୍ଦିରର ପ୍ରତିଷ୍ଠାତା ଭଜରାମ ଗୌନ୍ତିଆଙ୍କପରେ ତାଙ୍କ ପୁତ୍ର ଗୁଲଠୁ ଗୌନ୍ତିଆ, ତାଙ୍କ ପରେ ମହାଦେବ ଗୌନ୍ତିଆ ତାଙ୍କ ପୁତ୍ର ଧ୍ରୁବ ଗୌନ୍ତିଆ ଓ ବର୍ତ୍ତମାନ କରୁଣା ଗୌନ୍ତିଆ ଶ୍ରୀଜଗନ୍ନାଥ ମନ୍ଦିରର ପରିଚାଳନାର ସମସ୍ତ ଦାୟିତ୍ୱ ବହନ କରିଛନ୍ତି । ମନ୍ଦିରର ପଛପଟରେ ପୂଜକଙ୍କ ରହିବା ପାଇଁ ବ୍ୟବସ୍ଥା କରାଯାଇଅଛି । ରଥଯାତ୍ରା ସମୟରେ ମନ୍ଦିର ତରଫରୁ ଏକ ବଡ ରଥ ନିର୍ମାଣ କରାଯାଏ । ବର୍ତ୍ତମାନ ଶ୍ରୀଜୀଉମାନେ ନବଦିନ ପର୍ଯ୍ୟନ୍ତ ମାଉସୀମା ମନ୍ଦିର ଟିକରାପଡାସ୍ଥ ଦୁର୍ଗାମଣ୍ଡପକୁ ଯାତ୍ରା କରିଥାନ୍ତି । କିନ୍ତୁ ପୂର୍ବରୁ ତିନି ଠାକୁର ରାଧାକୃଷ୍ଣ ମନ୍ଦିରକୁ ନବଦିନ ଯାତ୍ରା କରୁଥିଲେ । ଏହି ମନ୍ଦିରର ବିଗ୍ରହମାନ ଅନ୍ୟ ସମସ୍ତ ବିଗ୍ରହମାନଙ୍କଠାରୁ ବୃହତ୍ତର ।

ବଲାଙ୍ଗୀର ସହରରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ରଥଯାତ୍ରା ଅତିଆଗ୍ରହ, ଉତ୍ସାହ ଓ ଉଦ୍ଦୀପନାର ସହିତ ପାଳନ କରାଯାଏ । ଶ୍ରୀଜଗନ୍ନାଥ ଧର୍ମ ଓ ସଂସ୍କୃତି ପ୍ରତି ସହରବାସୀଙ୍କ ଅହେତୁକ ଶ୍ରଦ୍ଧା ଓ ସମ୍ମାନର ପ୍ରମାଣ ରଥଯାତ୍ରା ସମୟରେ ଦେଖିବାକୁ ମିଳେ । ବଲାଙ୍ଗୀର ସହରରେ ବହୁପୂର୍ବରୁ ଶ୍ରୀଜଗନ୍ନାଥ ସଂସ୍କୃତିର ସର୍ବଶ୍ରେଷ୍ଠ ଯାତ୍ରା ରଥଯାତ୍ରା ଓ ବାହୁଡା ଯାତ୍ରା ମହାସମାରୋହରେ ପାଳିତ ହୋଇ ଆସୁଅଛି । ଗଡଜାତ



ରାଜତ୍ୱ ସମୟରେ ବଲାଙ୍ଗୀର ସହରରେ ଚାରୋଟି ରଥ ଟଣାଯାଉଥିଲା । ରଥଯାତ୍ରା ଦିନ ବଲାଙ୍ଗୀର ପାଟଣା ମହାରାଜା ଓ ରାଜ ପରିବାରର ସଦସ୍ୟମାନେ ରଥଟଣା କାର୍ଯ୍ୟକ୍ରମରେ ଯୋଗଦାନ କରୁଥିଲେ । ଏହି ସମୟରେ ନିକଟସ୍ଥ ଗ୍ରାମବାସୀମାନେ ରଥରେ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରିବା ପାଇଁ ବଲାଙ୍ଗୀର ସହରକୁ ଆସୁଥିଲେ । ବଲାଙ୍ଗିର-ପାଟଣା ମହାରାଜା ଶୂର ପ୍ରତାପ ଦେଓଙ୍କର ସମ୍ବଲପୁରରେ ମୃତ୍ୟୁ ପରେ ତାଙ୍କର ପ୍ରଥମ ମହାରାଣୀ ଅମୃତ କୁମାରୀ ବଲାଙ୍ଗୀରରେ ଅବସ୍ଥାନ କଲେ । ତାଙ୍କ ପ୍ରଚେଷ୍ଟାରେ ବଲାଙ୍ଗୀରରେ ଗୋପାଳଜୀ ମନ୍ଦିର ନିର୍ମାଣ କରାଗଲା । ଏହି ମନ୍ଦିରରେ ଜଗନ୍ନାଥ ମହାପ୍ରଭୁଙ୍କୁ ମଧ୍ୟ ପୂଜା କରାଗଲା । ସର୍ବସାଧାରଣରେ ଏହି ମନ୍ଦିର ଗୋପାଳଜୀ ବା ଜଗନ୍ନାଥ ମନ୍ଦିର ନାମରେ ବଲାଙ୍ଗୀରରେ ପରିଚିତ । ୧୮୯୬ ମସିହାରେ ନିର୍ମିତ ହୋଇଥିବା ଏହି ମନ୍ଦିର ବଲାଙ୍ଗୀର ସହରର ସର୍ବପୁରାତନ ମନ୍ଦିର । ସଂପ୍ରତି ଓଡିଶା ସରକାରଙ୍କର ଦେବୋତ୍ତର ବିଭାଗ ଦ୍ୱାରା ଏହି ମନ୍ଦିର ପରିଚାଳିତ ହୋଇ ବିଭିନ୍ନ ପର୍ବ-ପର୍ବାଣୀକୁ ସୂଚାରୁ ରୂପେ ସଂପାଦନ କରୁଅଛି । ରଥଯାତ୍ରାପାଇଁ ଏହି ମନ୍ଦିର ପକ୍ଷରୁ ଜଙ୍ଗଲରୁ ଶାଳକାଠ ଅଣାଯାଇ ଦେବସ୍ନାନ ପୂର୍ଣ୍ଣମୀ ଦିନ ରଥ ନିର୍ମାଣର ଶୁଭାରମ୍ଭ କରାଯାଉଥିଲା । ରଥ ନିର୍ମାଣ କାର୍ଯ୍ୟ ନେତ୍ରୋତ୍ସବ ଦିନ ପ୍ରାୟ ପରିସମାପ୍ତି ହେଉଥିଲା । ମହାରାଜା ରାଜେନ୍ଦ୍ର ନାରାୟଣ ସିଂହଦେଓ ଏବଂ ରାଜପରିବାରର ସଦସ୍ୟମାନେ ଶ୍ରୀଜୀଉମାନଙ୍କୁ ପହଣ୍ଡି କରାଇ ରଥ ଉପରକୁ ବିଜେ କରାଉଥିଲେ । ରଥରେ ଚାରମାଳ ଖଞ୍ଜା ହେଉଥିଲା । ମହାରାଜା ଓ ରାଜପରିବାରର ସଦସ୍ୟମାନେ ରଥ ଉପରେ ଠାକୁରମାନଙ୍କୁ ଆଳତୀ ଓ ଚାମର ସେବା କରୁଥିଲେ । ମହାରାଜା ରଥ ଉପରେ ଥାଇ ଜନସାଧାରଣଙ୍କ ଉଦ୍ଦେଶ୍ୟରେ ମିଷ୍ଟାନ୍ନ ଭୋଗ ଫିଙ୍ଗୁଥିଲେ । ମହାରାଜା ଓ ରାଜପରିବାରବର୍ଗ ସାଧାରଣ ଜନତାଙ୍କ ସହିତ ମିଶି କିଛି ରାସ୍ତା ପର୍ଯ୍ୟନ୍ତ ରଥ ଦଉଡି ଟାଣୁଥିଲେ । ଏହି ଦୃଶ୍ୟ ଦେଖିବା ପାଇଁ ପ୍ରବଳ ଜନଗହଳି ହେଉଥିଲା । ରଥ କିଛି ବାଟ ଯିବାପରେ ଉତ୍ତରାଭିମୁଖୀ ହେଉଥିଲା । ରଥ ଉତ୍ତରାଭିମୁଖୀ ହେବା ଦେଖିବା ପାଇଁ ବହୁ ସମାଗମ ହୁଏ  କାରଣ ଏହା ଦର୍ଶନ କଲେ ବହୁ ପୁଣ୍ୟ ମିଳେ ବୋଲି ବିଶ୍ୱାସ ଅଛି । ଏହାକୁ ସରକାରୀ ରଥ କୁହାଯାଏ । ଏହି ରଥ ପରେ ରାଜାଘର ରଥ ଆସୁଥିଲା ଏବଂ ଏଥିରେ କେବଳ ଶ୍ରୀଜଗନ୍ନାଥ ମହାପ୍ରଭୁ ବିରାଜମାନ କରୁଥିଲେ । ଏହି ରଥ ପଛକୁ ଗୌନ୍ତିଆ ମନ୍ଦିର ରଥ ଓ ଏହାପଛକୁ ସାହାଣୀ ଘରର ରଥ ଆସୁଥିଲା । ଗଡଜାତ ରାଜତ୍ୱ ସମୟରେ ଏହି ଚାରୋଟି ରଥ ବଲାଙ୍ଗୀର ସହରରେ ଟଣାଯାଉଥିଲା । ସରକାରୀ ରଥ ଯାଇ ଦଳଗଞ୍ଜନ ପ୍ରେସ ସାମନାରେ ଥିବା ସଂସ୍କୃତ ଟୋଲଠାରେ ରହେ । ସଂସ୍କୃତ ଟୋଲ ଘର ସେହିଦିନ ଠାରୁ ଆଜି ପର୍ଯ୍ୟନ୍ତ ମାଉସୀ ମା ମନ୍ଦିର ରୂପେ ବ୍ୟବହୃତ ହୋଇଆସୁଅଛି । ସାହାଣୀ ଘର ରଥ ରାମଜୀ ମନ୍ଦିରରେ ଅବସ୍ଥାନ କରୁଥିଲେ ଏବେ ମଧ୍ୟ ସେଠାରେ ଅବସ୍ଥାନ କରୁଛନ୍ତି । ରାଜାଘର ରଥର ମାଉସୀ ମା ମନ୍ଦିର ରୂପେ ମାଲପଡାର ରାମମନ୍ଦିର ବ୍ୟବହୃତ ହେଉଅଛି ।

ବଲାଙ୍ଗୀର ସହରର ଅଧିକାଂଶ ପଡାରେ ଏବେ ରଥନିର୍ମାଣ କରାଯାଇ ଶ୍ରୀଜଗନ୍ନାଥ ସଂସ୍କୃତିର ମହାନ ପର୍ବ ଘୋଷଯାତ୍ରା ମହାସମାରୋହରେ ପାଳିତ ହୋଇଆସୁଅଛି । ପୂର୍ବେ ରଥ ଦେଖିବା ପାଇଁ ସହର ନିକଟସ୍ଥ ଗ୍ରାମମାନଙ୍କର ଶ୍ରଦ୍ଧାଳୁ ଜଗନ୍ନାଥ ପ୍ରେମୀମାନେ ରଥଯାତ୍ରା ଦିନ ସହରକୁ ଆସୁଥିଲେ । ରଥ ଦେଖି ସାରି ସେମାନେ ଖଜା, ଉଖୁଡା ଓ ମିଠା ପ୍ରଭୃତି କିଣି ଘରକୁ ଫେରୁଥିଲେ । ଏବେ କିନ୍ତୁ ପ୍ରତ୍ୟେକ ଅଞ୍ଚଳରେ ରଥଯାତ୍ରା ଅନୁଷ୍ଠିତ ହେଉଥିବାରୁ ଗ୍ରାମାଞ୍ଚଳର ଲୋକମାନେ ରଥ ଦେଖିବା ପାଇଁ ବଲାଙ୍ଗୀର ସହରକୁ ଆସିବା  କିଛିଟା କମିଯାଇଛି । ଆଷାଢ ଶୁକ୍ଳ ଦ୍ୱିତୀୟା ଦିନ ବଲାଙ୍ଗୀର ସହରର ବିଭିନ୍ନ ପଡାରେ ପ୍ରାୟ ୨୦ ଟି ରଥ ଟଣାଯାଏ । ରଥାରୂଢ ଜୀଉମାନେ ବିଭିନ୍ନ ପଡାରେ ଥିବା ମାଉସୀ ମା ମନ୍ଦିରରେ ନବଦିନ ପର୍ଯ୍ୟନ୍ତ ଅବସ୍ଥାନ କରିଥାନ୍ତି । ରଥରେ ଶ୍ରୀଜୀଉମାନେ ମାଉସୀ ମା ମନ୍ଦିରକୁ ଯିବା ସମୟରେ ଶ୍ରଦ୍ଧାଳୁ ଭକ୍ତମାନଙ୍କର ଘଣ୍ଟା, ଘଣ୍ଟ କାହାଳୀ, ମୃଦଙ୍ଗ ଶବ୍ଦରେ ସମଗ୍ର ଅଞ୍ଚଳ ପ୍ରକମ୍ପିତ ହୁଏ । ରଥଯାତ୍ରା ସମୟରେ ଗବେଷକ ଓ ବିଦ୍ୱାନମାନେ ଶ୍ରୀ ଜଗନ୍ନାଥ ଧର୍ମ ଓ ତତ୍ତ୍ୱ ଉପରେ ଧାରା ବିବରଣୀ ପ୍ରଦାନ କରିଥାନ୍ତି । ଶ୍ରୀଜିଉମାନେ ମାଉସୀ ମା ମନ୍ଦିରରେ ଅବସ୍ଥାନ କରୁଥିବା ସମୟରେ ବିଭିନ୍ନ ରୀତି, ନୀତି ଅନୁଷ୍ଠିତ ହୁଏ । ସଂଧ୍ୟାରେ ବିଭିନ୍ନ ଧାର୍ମିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମ ମାନ ଆୟୋଜନ କରାଯାଇଥାଏ । ପ୍ରତିଦିନ ସଂଧ୍ୟାରେ ସହରର ଅଧିବାସୀମାନେ ବିଭିନ୍ନ ମାଉସୀମା ମନ୍ଦିର ପରିଭ୍ରମଣ କରି ଶ୍ରୀଜୀଉମାନଙ୍କର ବିଭିନ୍ନ ଅବତାର ବେଶ ଦର୍ଶନ କରିଥାନ୍ତି । ରଥଯାତ୍ରା ଦିନ ବଲାଙ୍ଗୀର ଅଧିବାସୀ ମାନେ ନୂତନ ବସ୍ତ୍ର ପରିଧାନ କରି ରଥଟଣା କାର୍ଯ୍ୟରେ ଯୋଗଦାନ କରିଥାନ୍ତି । ବଲାଙ୍ଗୀର ସହରରେ ରଥଯାତ୍ରା ଦିନ ଛୋଟ ଶିଶୁମାନଙ୍କୁ ନୂତନ ପୋଷାକ ପରିଧାନ କରାଇ ପିତାମାତାମାନେ ରଥ ଛୁଆଁଇଥାନ୍ତି । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବିଶ୍ୱପ୍ରସିଦ୍ଧ ରଥଯାତ୍ରା ଐତିହାସିକ ସହର ବଲାଙ୍ଗୀରରେ ଭକ୍ତି, ଭାବ, ଶ୍ରଦ୍ଧା ଓ ପ୍ରେମର ସହିତ ପାଳିତ ହୋଇଆସୁଅଛି ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା
ପିନ୍-୭୫୨୦୫୪




# ମନ୍ତ୍ରିଡୀର ପ୍ରାଚୀନ ଜଗନ୍ନାଥ ମନ୍ଦିର ଓ ରଥଯାତ୍ରା

ଡଃ ପ୍ରଫୁଲ୍ଲଚନ୍ଦ୍ର ମହାନ୍ତି(ହାରିତସ)

ଜଗନ୍ନାଥ ସଂସ୍କୃତିର ଆଦିଭୂମି ଏହି ଓଡିଶା ଭୁଇଁ । ବିଶ୍ୱପୁରୁଷ ଭଗବାନ ଜଗତର ନାଥ ଜଗନ୍ନାଥ ଭାବେ କେଉଁ ପ୍ରାଚୀନ କାଳରୁ ବିଦିତ । ଭାରତୀୟ ସନାତନ ଧର୍ମ ଓ ସଂସ୍କୃତିକୁ ଏକତାର ଡୋରିରେ ବାନ୍ଧି ରଖିବାକୁ ଚାରିଧାମ ମଧ୍ୟରୁ ଓଡିଶାର ଜଗନ୍ନାଥ ଧାମ ପୁରୀ ଅନ୍ୟତମ ଓ ଅନନ୍ୟ । ବାରମାସରେ ତେର ଯାତ ଏହି ଆରାଧ୍ୟ ଠାକୁରମାନଙ୍କର । ଆଷାଢ ଶୁକ୍ଳ ଦ୍ୱିତୀୟାର ତିଥି- ଶ୍ରୀଗୁଣ୍ଡିଚାରେ ପ୍ରଭୁ ବଳଭଦ୍ର, ଭଗ୍ନୀ ସୁଭଦ୍ରା ଓ ଭାଇ ଜଗନ୍ନାଥଙ୍କ ରଥ ଯାତ୍ରା । ରଥଯାତ୍ରା ଓଡିଶା କାହିଁକି ସମଗ୍ର ଭାରତ ତଥା ବିଶ୍ୱର ଅନେକ ରାଷ୍ଟ୍ରରେ ଆଡମ୍ବର ଓ ଭକ୍ତି ସହକାରେ ପାଳିତ ହେଉଥିବା ଆମ ଜଗନ୍ନାଥ ସଂସ୍କୃତିର ପ୍ରସାର ଉତ୍କଳୀୟ ଧର୍ମ ଚେତନାର ଏକ ଧର୍ମୀୟ ଉଦ୍‌ଗୀରଣ କହିବା ଅତ୍ୟୁକ୍ତି ନୁହେଁ ।



ଓଡିଶାର ସହର ବଜାର ପୁରପଲ୍ଲୀ ପ୍ରତିଟି ଅଞ୍ଚଳରେ ଜଗନ୍ନାଥ ପୂଜା ପାଇ ଆସୁଛନ୍ତି । ଜଗନ୍ନାଥ ଚେତନାରେ ଓଡିଶାର ଅଗଣିତ ମଠ, ମନ୍ଦିର ତଥା ଗ୍ରାମୀଣ ଧର୍ମୀୟ ପରିବେଶରେ ପରିପୂର୍ଣ୍ଣ । ଦକ୍ଷିଣ ଓଡିଶାର ବ୍ରହ୍ମପୁର ନଗର ନିକଟବର୍ତ୍ତୀ ଆନ୍ଧ୍ର ସୀମାନ୍ତର ମନ୍ତ୍ରୀଡିରେ ଅନୁଷ୍ଠିତ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଏହି ସ୍ୱାଭିମାନର ଏକ ବଳିଷ୍ଠ ଉଦାହରଣ । ମନ୍ତ୍ରୀଡି ଅତୀତ ନୌବାଣିଜ୍ୟ କାଳର ଏକ ବନ୍ଦରାଞ୍ଚଳ ଓ ବାଣିଜ୍ୟର ପେଣ୍ଠସ୍ଥଳୀ ହୋଇଥିଲେ ହେଁ ଏକ ଦିବ୍ୟ ମନୋରମ ଆଧ୍ୟାତ୍ମିକ ମନନଶୀଳ ତୀର୍ଥସ୍ଥଳୀ ଭାବରେ ବହୁକାଳରୁ ପ୍ରସିଦ୍ଧ । ଶୈବ, ଗାଣପତ୍ୟ, ଶାକ୍ତ ଏବଂ ବୈଷ୍ଣବୀୟ ଧର୍ମାଧାରାର କୀର୍ତ୍ତିରାଜୀ ବହୁକାଳରୁ ଏହି ତୀର୍ଥ ଭୁଇଁରେ ବିଦ୍ୟମାନ । ତୈଲଙ୍ଗୀ ଉତ୍କଳୀୟ ଭାବର ସମନ୍ୱୟରେ ବାଲାଜୀ, ରାଧାକାନ୍ତଙ୍କ ସହ ଶ୍ରୀଜଗନ୍ନାଥଙ୍କ ବହୁ ମଠ, ମନ୍ଦିର ଏ ଅଞ୍ଚଳରେ ରହିଆସିଛି ।

ଓଡିଶାରେ ଏଯାବତ୍ ଯେଉଁ କେତୋଟି ସ୍ଥାନରେ ରଥଯାତ୍ରାର ପ୍ରସିଦ୍ଧି ରହିଛି, ସେଥିମଧ୍ୟରୁ ଦକ୍ଷିଣ ଓଡିଶାର ପ୍ରାଚୀନ ଜଗନ୍ନାଥ ପୀଠମାନଙ୍କ ମଧ୍ୟରେ ଜରଡା ଓ ମନ୍ତ୍ରିଡୀର ରଥଯାତ୍ରା ସୁବିଖ୍ୟାତ । ମନ୍ତ୍ରିଡୀରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା ଶ୍ରୀଜଗନ୍ନାଥ ଦେଉଳ ଓ ନୂତନ କରିଗଢି ଉଠିଥିବା ଭୈରବୀ ଜଗନ୍ନାଥ ରାଧାକାନ୍ତ ମନ୍ଦିରରେ ଅନୁଷ୍ଠିତ ହୁଏ । ଏହା ସହ ପାଖ ଗ୍ରାମ ବୟାଳୀରେ ଥିବା ରାଧାରମଣ ମଠରେ ମଧ୍ୟ ରଥଯାତ୍ରା ଅନୁଷ୍ଠିତ ହେଉଥିଲେ ହେଁ ଏହି ମନ୍ତ୍ରିଡୀର ପ୍ରାଚୀନ ଶ୍ରୀଜଗନ୍ନାଥ ମନ୍ଦିରର ରଥଯାତ୍ରା ଏକଦା ଓଡିଶାରେ ପ୍ରସିଦ୍ଧି ଲାଭ କରିଥିଲା ।

ଐତିହ୍ୟପୂର୍ଣ୍ଣ ଶ୍ରୀ ଜଗନ୍ନାଥ ମନ୍ଦିରଟି ମନ୍ତ୍ରିଡୀର ପୂର୍ବଭାଗରେ ଅବସ୍ଥିତ । ମନ୍ଦିରର ସମ୍ମୁଖରେ ଗରୁଡ ସ୍ତମ୍ଭ । ପରେ ପରେ ପ୍ରବେଶଦ୍ୱାର ମନ୍ଦିରର ସିଂହ ଦରଜା । ଏହି ଦ୍ୱାରରେ ସିଂହ ବା ଅନ୍ୟକୌଣସି ଦ୍ୱାର ଜଗୁଆଳୀ ନାହାନ୍ତି । ପ୍ରବେଶ ଦ୍ୱାର ଅତିକ୍ରମର ପରେ ପରେ ବାଇଶି ପାହାଚ । ଅବଶ୍ୟ ଏଠାରେ ପାହାଚ ସଂଖ୍ୟା ବାଇଶି ନହୋଇ ମାତ୍ର ସାତୋଟି ପାହାଚ ଅତିକ୍ରମିବା ପରେ ଜଗମୋହନ ବା ମୁଖଶାଳା । ତାରି ପଛକୁ ଚନ୍ଦନ ଅର୍ଗଳି ସହ ପ୍ରଭୁ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ଗର୍ଭ ଗୃହ, ଗର୍ଭ ମନ୍ଦିର । ତିନିଠାକୁର ଦାରୁମୁର୍ତ୍ତି ମଣିଷ ଉଚ୍ଚର । ପୁରୀ ଶ୍ରୀମନ୍ଦିରରେ ବିଗ୍ରହମାନଙ୍କ ସମସରି ସୁନ୍ଦର ରୂପ, କଳାକଳା ଆଖି ଦେଖିଲେ ଲାଗୁଛି ଯେମିତି ସାରାଜଗତର ମାୟା ସେଇ ଆଖି ଦିଓଟିରେ ଠୁଳ । ହଳଦୀବର୍ଣ୍ଣା, ସୁକୁମାରୀ ଶକ୍ତି ମାତୃକାର ରୂପ-ସୁଭଦ୍ରାଙ୍କ ସହ ବଡଭାଇ ଧବଳବର୍ଣ୍ଣ, ଶେଷ ନାଗ-ଭୂଷଣ, ସହସ୍ର ଫଣାରେ



ବଳଭଦ୍ର । ସମ୍ଭ, ସୂର୍ଯ୍ୟ ରୂପର ସୁଦର୍ଶନ କି ସୁନ୍ଦର ରୂପର ବିଗ୍ରହମୟ ଏହି ଗର୍ଭମନ୍ଦିର! ମନ୍ଦିର ସାମନାରେ ବିସ୍ତୀର୍ଣ୍ଣ ରଥ ଚକଡା । ଉତ୍ତରରେ ବଡଦାଣ୍ଡ । ଠାକୁରମାନଙ୍କ ଆସ୍ଥାନ ପାଇଁ ଏଠାରେ ଲକ୍ଷେ ଶାଳଗ୍ରାମ ପୋତା ରତ୍ନ ସିଂହାସନ ନାହିଁ ।ଅନ୍ୟ ମନ୍ଦିର ଭଳି ଗର୍ଭ ଗୃହର ବାହ୍ୟ ପ୍ରଦେଶରେ ବା ଅନ୍ୟ କେଉଁଠାରେ ନବଗ୍ରହ ଦୃଷ୍ଟିକୁ ଆସନ୍ତିନି । କେଉଁଠି ହେଲେ ଜୟ ବିଜୟ ବା ଅନ୍ୟକୌଣସି ଦ୍ୱାରପାଳ, କୌଣସି ଦ୍ୱାର ଆଗରେ ଥିବା ଦେଖାଯାଆନ୍ତି ନାହିଁ । ଯାହାକି ଅନ୍ୟ ଜଗନ୍ନାଥ ମନ୍ଦିରଠାରୁ କେତେକ ବ୍ୟତିକ୍ରମ । ମନ୍ଦିରର ଘେରା ମଧ୍ୟରେ ଡାହାଣକୁ ଉତ୍ତରପଟେ ଦେବସ୍ନାନ ମଣ୍ଡପ, କଟା କଳା ମୁଗୁନି ପଥରରେ ନିର୍ମିତ । ପୂର୍ବ ମୁଖ ମନ୍ଦିରର ସାମ୍ନାରେ ଅରୁଣ ସ୍ତମ୍ଭ । କହନ୍ତି ଆଗରୁ ନଥିଲା, ପରବର୍ତ୍ତୀ ସମୟରେ ନିର୍ମାଣ ହୋଇଛି । ପ୍ରବେଶ ଦ୍ୱାରରେ ଦୁଇ କଡରେ ସମ୍ଭବତଃ ସିଂହ ବସାଇବା ପାଇଁ ଦୁଇଟି ଆସ୍ଥାନ ନିର୍ମାଣ କରାଯାଇଛି । କିନ୍ତୁ ସିଂହ ମୂର୍ତ୍ତି ବସାଯାଇପାରିନି । ଗରୁଡନାହାନ୍ତି । ଏସବୁଥିରୁ ମନେହେଉଛି ଖୁବ୍ ତରବରିଆ ଭାବେ ମନ୍ଦିର ନିର୍ମାଣ କରାଯାଇ ତିନି ଠାକୁରଙ୍କୁ ପ୍ରତିଷ୍ଠା କରାଯାଇଛି ।ମନ୍ଦିର ଦ୍ୱାର ପଥଗୁଡିକ ସଂକୀର୍ଣ୍ଣ ଓ ନୁଆଁଣିଆ । ଦିଅଁଙ୍କ ଉଚ୍ଚତା ଅନୁସାରେ ହୋଇଥିଲା ଭଳି ଲାଗେନି । ମନ୍ଦିରଟି ପୁରୀର ଜଗନ୍ନାଥ ମନ୍ଦିର ଭଳି ସୁ ଉଚ୍ଚନୁହେଁ । ଓଡିଶାର ପାରମ୍ପରିକ ମନ୍ଦିର ନିର୍ମାଣ ଶୈଳୀରେ ତ୍ରିକୋଣ ପରିମିତ ଢାଞ୍ଚାରେ ମନ୍ଦିରଟି ନିର୍ମିତ । ଉଚ୍ଚତା ମାତ୍ର ତିରିଶି ଫୁଟ ହେବ । ମନ୍ଦିରଟିର ବାହ୍ୟଦେଶ ଚୂନର ପଲସ୍ତରାରେ ଭରି । ତେଣୁ ତ୍ରିକୋଣଗୁଡିକରେ ବି କମ୍‌କୂଟ ସେତେଟା ଦେଖାଯାଉନି କି ମନ୍ଦିରର ଗଣ୍ଡି, ବେକ ଓ ମୂଳର ପାର୍ଥକ୍ୟ ବାରି ହେଉନି । ବହୁ ଦିନରୁ ଚୁନ ଧୂଳେଇ ନହୋଇଥିବା ଯୋଗୁଁ ଶିଉଳି ମାଖି କଳା ଦିଶୁଛି ମନ୍ଦିର । ମନେହେଉଛି ମନ୍ତ୍ରିଡୀର ଉପସ୍ଥିତି ସମୁଦ୍ରର ନିକଟରେ ଥିବାରୁ ସମୁଦ୍ରର ଲୁଣି ପବନ ବାଜି ମନ୍ଦିରଟିନଷ୍ଟ ହୋଇଯିବା ଭୟରେ ସମ୍ଭବତଃ ଚୂନର ପଲସ୍ତରା ଦିଆଯାଇଛି । ପୁରୀ ମନ୍ଦିରରେ ତ ଏଭଳି ହୋଇଛି, ମନ୍ଦିର ଆଗରେ ବହୁକାଳର ବରଗଛ କଳ୍ପବଟର ଆସ୍ଥାନ ମାଡି ବସିରହିଛି । ସାମନାରେ ରଥ ଚକଡାପରେ ଉତ୍ତର ଦିଗରେ ମନ୍ଦିର ପଣ୍ଡାମାନଙ୍କର ସାହି ସାଙ୍ଗକୁ ବିସ୍ତୀର୍ଣ୍ଣ ବଡଦାଣ୍ଡ । କିଛି ଦୂର ପରେ ଠାକୁରମାନଙ୍କର ମାଉସୀ ମା ଘର । ସମସ୍ତ ନୀତି କାନ୍ତି, ଯାତ୍ରା-ମହୋତ୍ସବ ଠିକ୍ ପୁରୀର ଶ୍ରୀମନ୍ଦିର ଠାକୁରମାନଙ୍କ ଭଳି । କେଉଁ ସମୟରୁ ଏଠାରେ ଜଗନ୍ନାଥ ମନ୍ଦିର ଓ ରଥଯାତ୍ରାର ଶୁଭାରମ୍ଭ ହୋଇଆସିଛି ସେ ବିଷୟରେ କେହି କିଛି ପ୍ରତ୍ୟକ୍ଷ ବିବରଣୀ ଦେଇପାରୁନଥିଲେ ମଧ୍ୟ ମନେହେଉଛି ମନ୍ତ୍ରିଡୀ ଏକ ସୁ. ସମୃଦ୍ଧ ପଣ୍ୟକେନ୍ଦ୍ର ତଥା ନୌବାଣିଜ୍ୟ ବ୍ୟବସାୟର ପେଣ୍ଠସ୍ଥଳୀ ଥିଲାବେଳେ ଏଠାରେ ବହୁଶିଳ୍ପୀ, କାରିଗର, କୁଶଳୀ, ବ୍ୟବସାୟୀ ଜାତିମାନେ ବସତି ସ୍ଥାପନ କରି ନିଜନିଜ ଆରାଧ୍ୟ ଦେବାଦେବୀମାନଙ୍କର ମନ୍ଦିର ସବୁ ଏଠାରେ ପ୍ରତିଷ୍ଠା କରିଯାଇଥିଲେ । ସେଗୁଡିକର ଦୃଷ୍ଟାନ୍ତ ସ୍ୱରୂପ ବାଲାଜୀ ମଠ, ଶ୍ରୀଚୈତନ୍ୟ ମଠ, ଗୌଡୀୟ ସଂପ୍ରଦାୟର ରାଧାକାନ୍ତ ମଠ, ରାମାନୁଜଙ୍କର ରଘୁନାଥ ମଠ ଏବଂ ଆମ ଉତ୍କଳୀୟ ସଂସ୍କୃତିର ମୂଳାଧାର । ଶ୍ରୀଜଗନ୍ନାଥଙ୍କର ଦେଉଳ ସହ ଅନ୍ୟାନ୍ୟ ବହୁ ମଠ, ମନ୍ଦିର ଏବେବି ଏଠାରେ ରହିଅଛି । ମନେ ହୁଏ ବିଧର୍ମୀମାନଙ୍କ ଦ୍ୱାରା ଅତ୍ୟାଚାରିତ ଓ ଲୁଣ୍ଠିତ ବଡଦେଉଳ ହେଉଥିଲାବେଳେ ପ୍ରାୟତଃ ଷୋଡଶ/ସପ୍ତଦଶ ଶତାବ୍ଦୀରେ ପୁରୀର ଶ୍ରୀବିଗ୍ରହମାନଙ୍କୁ ଲୁଚାଇ ରଖିବା ପାଇଁ ଏହି ମନ୍ଦିର ନିର୍ମିତ ହୋଇଥିଲା । ଏଭଳି ଅନ୍ୟ ଏକ ମନ୍ଦିର ମହୁରୀଗଡ କେରାଣ୍ଡିମାଳ ପର୍ବତ ପାଦ ଦେଶରେ ଏବେବି ଶୂନ୍ୟ ମନ୍ଦିର ଭାବରେ ପଡିରହିଛି । କିନ୍ତୁ କେତେକ ଅସୁବିଧାରୁ ହୁଏତ ଅନ୍ୟତ୍ର ରଖାଗଲା । ସେଦିନରୁ କିନ୍ତୁ ମନ୍ଦିରର ବିଗ୍ରହମାନଙ୍କୁ ସ୍ଥାପନ କରି ରଥଯାତ୍ରା ପାଳିତ ହେଲା । ପ୍ରାୟତଃ ତିନିଶହ ବର୍ଷ ପୂର୍ବେ ସପ୍ତଦଶ ଶତାବ୍ଦୀର ଶେଷ ଭାଗଯାଏ ମନ୍ତ୍ରିଡୀ ଥିଲା ଗଞ୍ଜାମ ଜିଲ୍ଲାର ଏକ ବିଶିଷ୍ଟ ବ୍ୟବସାୟ କେନ୍ଦ୍ର । ସୋରଳ, ସୁମାଣ୍ଡି ପଣ୍ୟବନ୍ଦର ସୁନାପୁର ଥିଲା ତାର ମୁଖ୍ୟ ଦ୍ୱାର । ମାନ୍ଦ୍ରାଜ, ତାମିଲନାଡୁ ଆଦି ଅଞ୍ଚଳର ବହୁ ବ୍ୟବସାୟୀ ଜାତି, ଶିଳ୍ପୀ କୁଳ ଏଠାରେ ଆସି ରହି ବ୍ୟବସାୟ କରୁଥିଲେ, ସେତେବେଳେ ଇଚ୍ଛାପୁର ଓ ବ୍ରହ୍ମପୁର ସହର ଦୁଇଟିର ବିକାଶ ହୋଇନଥିଲା । କମା ଓ ସାଧବମାନଙ୍କର ବସତିରେ ଏହି ଅଞ୍ଚଳ ଅଚଳାଚଳ ସଂପତ୍ତିର ଅଧିକାରୀ ଥିଲା । କିନ୍ତୁ କ୍ରମେ କ୍ରମେ ମୋଗଲମାନଙ୍କର ଅତ୍ୟାଚାର, ମରହଟ୍ଟାମାନଙ୍କର ଲୁଣ୍ଠନ ଏବଂ ୧୮୧୫ ଖ୍ରୀଷ୍ଟାବ୍ଦରେ କଳାଜ୍ୱରର ପ୍ରକୋପରେ ବହୁ ଜନକ୍ଷୟ ଏହି ଅଞ୍ଚଳର ସମୃଦ୍ଧିକୁ ଧୂଳିସାତ୍ କରିଦେଇଥିଲା । ଏହି କାରଣରୁ ବ୍ୟବସାୟୀମାନେ ମାନ୍ଦ୍ରାଜ ଚାଲିଗଲେ ଆଉକେତେକେ ଇଚ୍ଛାପୁର ଏବଂ ବ୍ରହ୍ମପୁରରେ ରହି, ଏ ଅଞ୍ଚଳର ବ୍ୟବସାୟକୁ ଚଳାଇ ରଖିଲେ । କ୍ରମଶଃ ବନ୍ଦର ପୋତି ହେବା, ଝଡ ବାତ୍ୟା ପ୍ରାକୃତିକ ବିପର୍ଯ୍ୟୟ ମାନଙ୍କ ସହ ଜଳଦସ୍ୟୁ ଆକ୍ରମଣକାରୀଙ୍କ ଲୁଣ୍ଠନ ଯୋଗୁଁ ବ୍ୟବସାୟ ବାଣିଜ୍ୟ ବି ନଷ୍ଟ ହେଲା । ସେ ସବୁଥିର ମୂକ ସାକ୍ଷୀ ହୋଇ ଏବେ ଅତି ବିପର୍ଯ୍ୟସ୍ତ ଭାବେ ପଡିଆ ଡିହ ଓ ଜଙ୍ଗଲ ହୋଇ ପଡିରହିବା ମନ୍ତ୍ରିଡୀକୁ ଦେଖିଲେ ମନ ସ୍ୱତଃ କ୍ଷୋଭରେ ଭରିଯାଏ । ଏକଦା ନବଉତ୍କଳର ରାଜାଧିରାଜ ଗଣପତି

ମହାରାଜାଙ୍କର ମନ୍ତ୍ରୀଙ୍କ ନିବାସ ସ୍ଥଳୀ ଥିବା ଏହି ମନ୍ତିଡୀ ଆଜି ମନ୍ତ୍ରୀଡିହରେ ପରିଣତ ହେଲା । ସେ ବେଳର ସମୃଦ୍ଧ ଡେରାସାହି, କମାସାହିଏବଂ ସାହୁ ବ୍ରାହ୍ମଣ-ସାଧବସାହି ଏବେ ଡେରାବାଡ କମାବାଡ, ଅରଖ ଓ ଆଙ୍କୁଲ ଗଛର ଜଙ୍ଗଲରେ ଭର୍ତ୍ତି ହୋଇ ରହିଛି । ଋଷୀକୁଲ୍ୟା ନଦୀ ମୁହାଣର ଗଂଜାମ ସହର ଏବଂ ବାହୁଦା ମୁହାଣର ମନ୍ତିଡୀ ସହର ଭାଙ୍ଗି ବ୍ରହ୍ମପୁର ଓ ଇଚ୍ଛାପୁର ନଗର ଦ୍ୱୟ ନୂତନ ଭାବେ ବିକାଶ ଲାଭ କରିଥିବା ଏଯାବତ୍ ଲୋକବୋଲିରେ ଶୁଣିବାକୁ ମିଳୁଛି ।

ଜଗନ୍ନାଥମନ୍ଦିର କମାମାନଙ୍କର କୀର୍ତ୍ତିବୋଲି ଲୋକେ କୁହନ୍ତି । ଏହି ମନ୍ଦିରକୁ ସୁମାଣ୍ଡିରେ ରହି ଜଣେ ବିଶିଷ୍ଟ ଧନାଢ୍ୟ ଧର୍ମକର୍ତ୍ତା ପରିଚାଳନା କରୁଥିଲେ । ଠାକୁରଙ୍କ ବିଭିନ୍ନ ପୂଜା, ସେବା, ଉତ୍ସବ ଓ ରଥଯାତ୍ରାଦିର ଖର୍ଚ୍ଚ ଭରଣା କରିବା ପାଇଁ ୧୮୦୦ ଭରଣ ଜମି ଦାନ କରିଥିଲେ । ଏବେ ସେ ସବୁ ଠାକୁରଙ୍କର ରୟତମାନେ ନିଜ ନାମରେ ପଟ୍ଟା କରି ପୁରୁଷାନୁକ୍ରମେ ଭୋଗ ଦଖଲରେ ରଖିଛନ୍ତି । କିନ୍ତୁ ଠାକୁରଙ୍କର କୌଣସି ଖର୍ଚ୍ଚ ତୁଲାଇ ନାହାନ୍ତି । ଏଭଳିକି ଭାଙ୍ଗି ପଡୁଥିବା ମନ୍ଦିରର ସୁରକ୍ଷା କରିବା ତ ଦୂରର କଥା ଦୈନିକ ଅନ୍ନ ଭୋଗ ଲାଗିବାର ବି କଷ୍ଟକର ହୋଇପଡୁଛି । ଏବେଳରେ ରଥଯାତ୍ରା କଥା ପୂର୍ବ ସ୍ମୃତିକୁ ଆଉ ଚିନ୍ତା କରୁଛି କିଏ?

କିମ୍ବଦନ୍ତୀ କହେ ଧର୍ମକର୍ତ୍ତା ଜଣେ କମା ବ୍ରାହ୍ମଣ ପରିବାରରେ ଥିଲେ । ତାଙ୍କର ବ୍ୟବସାୟ ବାଣିଜ୍ୟ କାରବାର ମୁଖ୍ୟତଃ ସୋନପୁର ବନ୍ଦର ଅଞ୍ଚଳରେ ପ୍ରତିଷ୍ଠିତ ଥିଲା ଏବଂ ସେ ସୁମାଣ୍ଡି ଓ ଏହି ମନ୍ତିଡୀରେ ତାଙ୍କର ଗୋଦାମ ଘର ରହିଥିଲା । ସେତେବେଳେ ରାସ୍ତାଘାଟ ଓ ଯାନବାହାନ ଆଦିର ଆଜିଭଳି ଚଳନ ନଥିଲା । ତେଣୁ ଘୋଡା ସବାର ହୋଇ ଅନ୍ୟ ସଂଭ୍ରାନ୍ତ ଲୋକଙ୍କ ଭଳି ସୁମାଣ୍ଡିରୁ ପ୍ରତ୍ୟହ ମନ୍ତିଡୀ ଆସି ଏହି ମନ୍ଦିର ଓ ବ୍ୟବସାୟ ବାଣିଜ୍ୟ ପରିଚାଳନା କରୁଥିଲେ । ତାଙ୍କର କୌଣସି ସନ୍ତାନ ସନ୍ତତି ନଥିବାରୁ ତାଙ୍କ ବ୍ୟବସାୟ ଓ ପ୍ରତିଷ୍ଠିତ ଜଗନ୍ନାଥ ମନ୍ଦିର ପରିଚାଳନା ଭାର ତାଙ୍କ ଅନ୍ତେ କିଏ ନେବ ଓ କିଭଳି ଭଲରେ ଚଳିବ ସେ ବିଷୟ ନେଇ ଧର୍ମକର୍ତ୍ତା ସଦା ଚିନ୍ତିତ ରହୁଥିଲେ । ଧର୍ମକର୍ତ୍ତା ଦମ୍ପତ୍ତି ଦ୍ୱୟ ଠାକୁରଙ୍କ ଠାରେ ଏ ଦୁଃଖରୁ ମୁକ୍ତି କରିବାକୁ ସଦା ନିବେଦନ କରୁଥିଲେ । ଦିନେ ସଂଧ୍ୟା ସମୟ, ସୂର୍ଯ୍ୟଦେବ ତାଙ୍କରି ଲାଲିମା କିରଣକୁ ବିଛେଇ କେରାଣ୍ଡି ମାଳ ପର୍ବତ ଆରପାଖରେ ଅସ୍ତ ହେବାକୁ ବସିଛନ୍ତି । ଧର୍ମକର୍ତ୍ତା ନିଜ ବ୍ୟବସାୟ କାରବାର ସାରି ମନ୍ତିଡୀରୁ ସୁମାଣ୍ଡି ଘୋଡାରେ ବସି ପ୍ରସ୍ଥାନ କଲାବେଳେ ରାସ୍ତା ଜଙ୍ଗଲ ବୁଦା କଡରୁ କୌଣସି ଏକ ସଦ୍ୟ ପ୍ରସୂତ ଶିଶୁଟିଏର କ୍ରନ୍ଦନ ଧ୍ୱନି ଶୁଣିବାକୁ ମିଳିଲା । ଧର୍ମ କର୍ତ୍ତା ଜଣେ ଧର୍ମପ୍ରାଣ ବ୍ୟକ୍ତି ଥିଲେ । ସେ ଶିଶୁଟିର କାନ୍ଦ ଶୁଣି, ଘୋଡା ଅଟକାଇ ଜଙ୍ଗଲ ଭିତରକୁ ଗଲେ । ଆଉ ଦେଖିଲେ ବୁଦା ମୂଳରେ କନା ଗୋଡିଆ ହୋଇ ପଡିଛି ଗୋଟିଏ ସଦ୍ୟ ଜନ୍ମ ହୋଇଥିବା ନବଜାତ ଶିଶୁ । ଧର୍ମକର୍ତ୍ତା ଠାକୁରଙ୍କ ଭାବନାରେ ଗଦ୍ ଗଦ୍ ହୋଇ ଛୁଆଟିକୁ କୋଳକୁ ଉଠାଇନେଲେ । ଆନନ୍ଦରେ ଘୋଡାରେ ବସି ଘରେ ପହଞ୍ଚି ନିଜ ସ୍ତ୍ରୀକୁ ପାଖରେ ସବୁ କଥା କହି ଛୁଆଟିକୁ ତାଙ୍କ ହସ୍ତରେ ଅର୍ପଣ କଲେ । ସ୍ୱାମୀ ସ୍ତ୍ରୀ ଉଭୟଙ୍କ ଆନନ୍ଦ କହିଲେ ନସରେ । ଦୁହେଁ ନିଃସନ୍ତାନ ଥିବାରୁ ନବଜାତ ଶିଶୁଟି ପ୍ରଭୁ ଜଗନ୍ନାଥଙ୍କ ଦାନ ଭାବି ତାର ଲାଳନ ପାଳନରେ ଲାଗିପଡିଲେ । ପିଲାଟି ଦେବପୁତ୍ର ଭାବେ ଦିନକୁ ଦିନ ବଢିବାରେ ଲାଗିଲା । ଧର୍ମାତ୍ମା ଧର୍ମକର୍ତ୍ତାଙ୍କ ପରେ ସେହି ପିଲାଟି ଏହି ପ୍ରସିଦ୍ଧ ଜଗନ୍ନାଥ ମନ୍ଦିରର ପରିଚାଳନା ଭାର ଗ୍ରହଣ କଲା । ସେହି ଦିନରୁ ସେହି ବଂଶର ଦାୟାଦମାନଙ୍କ ଦ୍ୱାରା ଏହି ମନ୍ଦିର, ନୀତିକାନ୍ତି ଓ ରଥଯାତ୍ରା ପରିଚାଳିତ ହୋଇ ଆସୁଅଛି । ପରବର୍ତ୍ତୀ ଅବସ୍ଥାରେ ଧର୍ମକର୍ତ୍ତା ଅଧିକାରୀଙ୍କର ରୋଜଗାର କମି ବାଣିଜ୍ୟ ବ୍ୟବସାୟର ଅଧପତନ ଘଟିବା ପରେ ଧନହୀନ ହୋଇପଡିଲେ । ପୁଣି ଠାକୁରଙ୍କର ଭୂସମ୍ପତ୍ତି ସବୁକୁ ରୟତମାନେ ନିଜେ ଦଖଲରେ ରଖି କୌଣସି ମାହାସୁଲୁ ଦେବା ବନ୍ଦ କରିଦେଲେ । ଏଭଳି ଅବସ୍ଥାରେ ମନ୍ଦିର ଶୋଚନୀୟ ଆର୍ଥିକ ଦୁରବସ୍ଥା ଦେଇ ଗତି କଲା । ମନ୍ଦିରର ପରିଚାଳନାଭାର ବର୍ତ୍ତମାନକୁ ଏକ ଟ୍ରଷ୍ଟି ହାତରେ ଅର୍ପଣ କରାଯାଇଥିଲେ ହେଁ ଯାତ୍ରା ଉତ୍ସବ ପାଳନରେ ଅନିୟମିତତା ସାଙ୍ଗକୁ ମନ୍ଦିରର ରକ୍ଷଣାବେକ୍ଷଣ ପ୍ରତି ବିପଦ ସୃଷ୍ଟି ହୋଇଛି । ଆଖି ଆଗରେ ସେ ଦିନ ଯାତ୍ରା ବେଳର ଦୃଶ୍ୟ ଭାସିଉଠୁଛି । ମନ୍ଦିର ସାମ୍ନାରେ କଳ୍ପବଟ, ଉତ୍ସବ ମୁଖର ପରିବେଶ ଆଜି ଜନମାନବ ଶୂନ୍ୟ । ତିନି ଠାକୁର ନିର୍ମାଣ କେଉଁ ସମୟରେ ହୋଇଛି, କେତେବର୍ଷ ଧରି ଠାକୁର ମାନଙ୍କର ନବକଳେବର କରାଯାଇଛି କି ନାହିଁ ସେ ବିଷୟରେ କେହି ସଠିକ୍ ତଥ୍ୟ ଯୋଗାଇ ପାରୁ ନାହାନ୍ତି । କିନ୍ତୁ ତଥ୍ୟ ସଂଗ୍ରହରୁ ଜଣାଯାଉଛି ପ୍ରାୟ ଷାଠିଏ, ସତୁରୀ ବର୍ଷଧରି ସେହି ପ୍ରାଚୀନ ମୂର୍ତ୍ତିମାନେ ହିଁ ପୂଜାପାଇ ଆସୁଛନ୍ତି ।



ଏ ମଧ୍ୟରେ କୌଣସି ନବକଳେବର କରାଯାଇନାହିଁ । ଦିଅଁ ମାନଙ୍କୁ ବିନା ରଥରେ ମନ୍ଦିରରୁ ଆଡପଘର ଯାଏ ଅଧା କିଲୋମିଟରରୁ ଅଧିକା ଦୂରତାରେ ଥିବା ଆଡପ ଘର ଯାଏ ବୋହି ବୋହି ପହଣ୍ଡି ବିଜେ କରାଇ ନେବା ଫଳରେ ଏହି ପୁରୁଣା ଦାରୁବିଗ୍ରହ ମୂର୍ତ୍ତିମାନଙ୍କର ବଇଠି, ବଇଠିରେ ତାମ୍ର, ଫଳକ, ଭୁଜ, ଆଦି ନଷ୍ଟ ହୋଇପଡିଛି । ଯାହା ହେଉ ବର୍ତ୍ତମାନକୁ ମନ୍ତ୍ରିଡୀ ଓ ଆଖପାଖ ଗ୍ରାମର କିଛି ଧର୍ମପ୍ରାଣ ବ୍ୟକ୍ତିଙ୍କ ଆର୍ଥିକ ସହଯୋଗ ନେଇ, ଏହି ଦାରୁ ବିଗ୍ରହମାନଙ୍କ ସାମୟିକ ମରାମତି କରାଯାଇଛି । ବର୍ତ୍ତମାନ ପାଇଁ ନୂତନଭାବେ ତିନିମୂର୍ତ୍ତିଙ୍କର ନବକଳେବରର ଆବଶ୍ୟକତା ରହିଛି । ଓଡିଶା ଏକ ଧର୍ମପ୍ରାଣ ରାଜ୍ୟ ଭାବରେ ଆମେ ଗର୍ବ କରି ଆସୁଛେ । ସ୍ୱୟଂ ଜଗନ୍ନାଥ ହେଉଛନ୍ତି ଏ ରାଜ୍ୟର ରକ୍ଷକ ଓ ସର୍ବନିୟନ୍ତା । ତାଙ୍କରି ରାଜ୍ୟରେ ମଠ, ମନ୍ଦିର ଓ ଠାକୁରମାନଙ୍କର ଏ ପ୍ରକାର ଦୁରବସ୍ଥା ଆମ ହିନ୍ଦୁ ଧର୍ମ ଜାତି ଓ ସଂସ୍କୃତି ପାଇଁ ସ୍ୱତଃ ଲଜ୍ୟା ଆଣିଦିଏ । ଏହାର ନିରାକରଣ କିଭଳି ଭାବରେ କରାଯାଇ ଧର୍ମାନୁଷ୍ଠାନମାନଙ୍କର ପୁନରୁଥାନ କରାଯାଇ ପାରିବ ତାହା ହିଁ ବର୍ତ୍ତମାନ ପାଇଁ ଚିନ୍ତାର କାରଣ । ବହୁବର୍ଷଧରି ମନ୍ତ୍ରିଡୀରେ ଏହି ମନ୍ଦିରର ରଥଯାତ୍ରା ବନ୍ଦ ହୋଇ ରହି ଥିଲେ ମଧ୍ୟ କିଛି ବର୍ଷ ତଳେ ଠାକୁରଙ୍କୁ ତିନୋଟି ରଥ ବଦଳରେ ଗୋଟିଏ ରଥରେ ବସାଇ ରଥଯାତ୍ରା ଅନୁଷ୍ଠିତ ହୋଇଥିଲା । ବର୍ତ୍ତମାନ ମନ୍ଦିରର ଉତ୍କଟ ଅର୍ଥାଭାବ ଯୋଗୁଁ ସେହି ଗୋଟିଏ ରଥ ମଧ୍ୟ ତିଆରି କରାଯାଇପାରୁନାହିଁ । ଫଳରେ ଠାକୁରମାନଙ୍କୁ ଘୋଷାଡି ଘୋଷାଡି ଠିଆ ପହଣ୍ଡିରେ ସାହୁ ବ୍ରାହ୍ମଣ ପଣ୍ଡାମାନେ ଆଡପ ମନ୍ଦିରକୁ ଯାତ୍ରା କରାଇଥାନ୍ତି । ମନ୍ତ୍ରିଡୀର ରଥଯାତ୍ରା ଦିନ ସମଗ୍ର ଦକ୍ଷିଣ ଓଡିଶାର ଅଦ୍ୱିତୀୟ ଯାତ୍ରା ଭାବରେ ହଜାର ହଜାର ଧର୍ମ ପିପାସୁ ଭକ୍ତଗଣଙ୍କ ଦ୍ୱାରା ହେଉଥିଲା ବେଳେ ଆଜିର ଏହି ଦୁଃଖଦ ସ୍ଥିତି ମନରେ କ୍ଷୋଭ ଜନ୍ମାଏ । ମନ୍ତ୍ରୀଡୀ ପଛକୁ ଜରଡାର ମଧ୍ୟ ପ୍ରସିଦ୍ଧି ରହିଥିଲା । ମନ୍ତ୍ରିଡୀର ରଥଯାତ୍ରାରେ ତିନୋଟି ପୁରୀ ସମାସ୍କନ୍ଦ ରଥ ସାରଥି ଓ ସୁରଙ୍ଗୀ ରାଜାଙ୍କ ଦ୍ୱାରା ଅନୁଷ୍ଠିତ ରଥଯାତ୍ରାର ମଧ୍ୟ ପ୍ରସିଦ୍ଧି ରହିଥିଲା । ମନ୍ତ୍ରିଡୀର ରଥଯାତ୍ରାରେ ତିନୋଟି ପୁରୀ ସମାସ୍କନ୍ଦ ରଥ ନିର୍ମାଣର ସ୍ୱାତନ୍ତ୍ର୍ୟ, ସମାନ ଉଚ୍ଚତାର ତିନି ଦାରୁମୂର୍ତ୍ତିରେ ରଙ୍ଗଠାଣୀରେ ବୈଚିତ୍ର୍ୟ ସାଙ୍ଗକୁ ଏହି ଯାତ୍ରାକାଳରେ ଏଠିକା ମଧୁବୈଶ୍ୟ (ଗଡିଆ) ମାନଙ୍କର ଚିନିରୁ ପସ୍ତୁତ ରଙ୍ଗଦିଆ ମଣିଷ ଉଚ୍ଚର ବିଭିନ୍ନ ଶୁଆ ଖଜା କଳା ନୈପୁଣ୍ୟ ନିର୍ମାଣ କୌଶଳ ଏହି ଯାତ୍ରାର ଐତିହ୍ୟକୁ ଏଯାବତ୍ ଉଜ୍ଜୀବିତ କରିରଖିଛି । ଶେଷରେ ଦେବୋତ୍ତର ବିଭାଗ ସ୍ଥାନୀୟ ଗ୍ରାମବାସୀ, ବଦାନ୍ୟ ବ୍ୟକ୍ତିଙ୍କ ପ୍ରଚେଷ୍ଟାରୁ ମନ୍ତ୍ରିଡୀର ଏହି ପ୍ରାଚୀନ ଜଗନ୍ନାଥ ମନ୍ଦିର ଓ ରଥଯାତ୍ରାର ଉନ୍ନତିରେ ଦୃଷ୍ଟି ନିବଦ୍ଧ କରିବା ସହ ଏହି ମନ୍ଦିରର ସୁରକ୍ଷା ପ୍ରତି ଦୃଷ୍ଟି ଦିଆଯିବା ଉଚିତ୍ ।

ପୋ: ମନ୍ତ୍ରିଡୀ, ଜି:ଗଂଜାମ

ପିନ୍-୭୬୧୦୦୮







# ଯାଜପୁରର ଜଗନ୍ନାଥ ମନ୍ଦିର

ଡଃ ଜ୍ଞାନରଞ୍ଜନ ପତି



ସମୟର ବାଲିଝଡ ମଧ୍ୟରେ ଉତ୍କଳର ସାଂସ୍କୃତିକ ଇତିହାସ ଏବେ ବି ଅନେକତ୍ର ଅସ୍ପଷ୍ଟ ଓ ନିଷ୍ପ୍ରଭ । ଭୌମଯୁଗ (ଅଷ୍ଟ ଶତକ) ପୂର୍ବରୁ ଓଡିଶାର ଧାରାବାହିକ ଇତିହାସ ଅବିସଂବାଦିତ ଓ ତଥ୍ୟ ଭିତ୍ତିକ ହୋଇପାରି ନଥିବାରୁ ପ୍ରାଚୀନ କଳିଙ୍ଗର ଅତୀତ ଜୀବନଚର୍ଯ୍ୟାକୁ ସଠିକ୍ ଚିତ୍ରଣ କରିବାରେ ଇତିହାସ ମନସ୍କ ଗବେଷକମାନେ ପରସ୍ପର ଏକାନ୍ୱୟ ହୋଇପାରିନାହାନ୍ତି । ପରିଣାମତଃ ଆଲୋଚ୍ୟ କାଳରେ ଓଡିଶାର ଜୀବନ ଯନ୍ତ୍ରଣାର ଅନେକ ଅନାଲୋକିତ ଦିଗ ଲୋକଲୋଚନକୁ ଆସିପାରିନାହିଁ । କେତେକ ମଧ୍ୟ ସର୍ବଜନସ୍ୱୀକରଣୀୟ ହୋଇପାରିନାହିଁ । ପ୍ରାଥମିକ ପର୍ଯ୍ୟାୟରେ ଗବେଷଣା ରୁଚିଶୀଳ ବିଦ୍ୱାନ ବୃନ୍ଦ ଏ କ୍ଷେତ୍ରରେ ସ୍ଥିରଚିତ୍ର ଆଙ୍କିବା ପାଇଁ ମାଦଳାପାଞ୍ଜିକୁ ଏକ ଅବଲମ୍ବନ ରୂପେ ଗ୍ରହଣ କରିଛନ୍ତି । ପ୍ରୋକ୍ତ ପାଞ୍ଜିର ସମୟାନୁକ୍ରମ ନାନା ବୈଷମ୍ୟ ଥିଲେ ହେଁ ଆମ ଐତିହ୍ୟ ଓ ସଂସ୍କୃତି ପରିଚିତିରେ ଏହା ଖଦ୍ୟୋତ ରୂପେ ମାର୍ଗଦର୍ଶନ କରିଛି ବୋଲି କହିଲେ ଅତିଶୟୋକ୍ତି ହେବନାହିଁ । ଏହି କାରଣରୁ ବିଶ୍ୱ ବ୍ୟାପ୍ତ ଜଗନ୍ନାଥ ସଂସ୍କୃତିର ସ୍ଥିତି ଓ ଗତିବିଷୟରେ ଚିନ୍ତାଶୀଳ ଇତିହାସ ବିଶାରଦଙ୍କ ପାଇଁ ମାଦଳାପାଞ୍ଜି ଆଧାର ସ୍ରୋତ ରୂପେ ବିବେଚିତ ହୋଇଛି ।

ଉତ୍କଳର ରାଷ୍ଟ୍ରଦେବତା ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କ ଅପାର ମହିମାରେ ଉତ୍କଳର ପ୍ରାଚୀନ ସଂସ୍କୃତି ଆଜି ଜଗନ୍ନାଥ ସଂସ୍କୃତି ନାମରେ ବିଶ୍ୱ ପ୍ରସାରୀ ହୋଇଅଛି । ଗଣଦେବତା ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କୁ ଆଧାର କରି ଓଡିଶାର ରାଜନୀତି-ଧର୍ମ- ସଂସ୍କୃତି ହୋଇଛି ପଲ୍ଲବିତ ଓ ପରିପୁଷ୍ଟ । ସୁତରାଂ ମହାପ୍ରଭୁ ଜଗନ୍ନାଥ ଓ ଲୀଳାଭୂମି ଜଗନ୍ନାଥ ମନ୍ଦିର ବ୍ୟତିରେକେ ଓଡିଶାର ଜନ୍ମ ଜାତକ ଅନୁଶୀଳନ କରିବା ପୂର୍ଣ୍ଣାଙ୍ଗ ମନେ ହୁଏ ନାହିଁ । ଶ୍ରୀ କ୍ଷେତ୍ରର ଜଗନ୍ନାଥ ମନ୍ଦିର ଓ ଶ୍ରୀଜଗନ୍ନାଥ ତତ୍ତ୍ୱପ୍ରତି ଦୃକ୍‌ପାତ କଲେ ହିନ୍ଦୁ ସଂସ୍କୃତିର ସଂରକ୍ଷକ ଜଗଦଗୁରୁ ଯଯାତି ଓ ଯାଜପୁରର ଜଗନ୍ନାଥ ମନ୍ଦିର ବିଷୟକୁ ବକ୍ର ଦୃଷ୍ଟି ଦେଇ ହେବନାହିଁ । ଇତିହାସ ଅନ୍ତରାଳରେ ରହିଥିବା ଏ ସଂପର୍କିତ ତଥ୍ୟ ଓ ସତ୍ୟକୁ ଅସ୍ୱୀକାର କରିବା ସଂଗତ ହେବ ନାହିଁ । କାରଣ ଶ୍ରୀମନ୍ଦିର ଆକ୍ରମଣ ଲୁଣ୍ଠନ, ଶ୍ରୀଜିଉଙ୍କ ସ୍ଥାନାନ୍ତର, ମନ୍ଦିର ନିର୍ମାଣ ଓ ଜଗନ୍ନାଥଙ୍କ ପୁନଃପ୍ରତିଷ୍ଠା ସହ ଶଙ୍କରାଚାର୍ଯ୍ୟ, ଯଯାତି କେଶରୀ ଓ ଯାଜପୁରର ଜଗନ୍ନାଥ ମନ୍ଦିର ନିର୍ମାଣ ବିଷୟ ଓତଃପୋତ ସଂପର୍କିତ ।

ମାଦଳାପାଞ୍ଜିରେ ଯଯାତିକେଶରୀଙ୍କୁ ଜଗନ୍ନାଥ ମନ୍ଦିରର ନିର୍ମାଣ କର୍ତ୍ତା ବୋଲି କୁହାଯାଇଛି । ସେ ସୋନପୁରରେ ପାତାଳୀଥିବା ଠାକୁରମାନଙ୍କୁ ପୁନର୍ବାର ନୂତନ ମନ୍ଦିରରେ ସ୍ଥାପନ କରାଇବା ପ୍ରସଙ୍ଗ ମାଦଳା ପାଞ୍ଜିରେ ଉଲ୍ଲିଖିତ ଅଛି । ଶୋଭନଦେବ ଭୋଗକଲେ ୯୬ବର୍ଷ । ଏ ମହାରାଜାଙ୍କ ୨ ଅଙ୍କେ ଦିଲ୍ଲୀରୁ ରକ୍ତ ବାହୁ ଆସିବା କାରଣକୁ ପରମେଶ୍ୱରଙ୍କୁ ସୁନୁପୁର ଗୋପାଳୀ ଘେନିଗଲେ । ସେଠାରେ ମଣ୍ଡପ ଗୋଟିଏ କରି ବିଜେ କରାଇଲେ ୪୫ ବର୍ଷ । ଏଥି ଉତ୍ତାରେ ମୁଗଲ ପ୍ରବଳ ହେବାରୁ ସେବକ ସେଠାରେ ପରମେଶ୍ୱରଙ୍କୁ ପାତାଳୀ କରି ଉପରେ ବରଗଛ ଲଗାଇ ରାଜ୍ୟ ଅନ୍ତର ହୋଇଗଲେ । ପାତିସାଙ୍କ ଅମରା ରକ୍ତବାହୁ ପୁରୁଷୋତ୍ତମ ବୁଲି ଅଇଲା । ଏ ରାଜା ଅନେକ ଯୁଦ୍ଧ କଲେ । ରହି ନପାରି ଝାଡଖଣ୍ଡ ଭିତରେ ରହିଲେ । ପାଞ୍ଜିବର୍ଣ୍ଣିତ ଶୋଭନଦେବଙ୍କୁ ଗବେଷକମାନେ ଭୌମରାଜଶୁଭାକରଦେବ ବୋଲି ମତ ଦିଅନ୍ତି । ଶୁଭାକର ଦେବଙ୍କ ରାଜତ୍ୱକାଳରେ ଭାରତରେ ଶକ ଓ ହୁଣ ମାନଙ୍କ ପ୍ରଭାବ ବୃଦ୍ଧିଘଟିଥିଲା । ଏହି ସମୟରେ ରକ୍ତବାହୁ ଶ୍ରୀମନ୍ଦିର ଆକ୍ରମଣ କରିଥିଲେ । ରକ୍ତବାହୁର ଆକ୍ରମଣରୁ ରକ୍ଷା କରିବା ପାଇଁ



ରାଜା ବିଗ୍ରହମାନଙ୍କୁ ସୋନପୁରକୁ ନେଇ ଗୋପାଳୀଠାରେ ପାତାଳୀ କରିଥିଲେ । କୋଟସୋମଲାଇସ୍ଥ ଛଳିଆ ପାହାଡର ଦାରୁକୋଣ ଗୁମ୍ଫାରେ ହିଁ ଦିଅଁମାନେ ୧୪୪ ବର୍ଷ ପାତାଳୀ ରହିଥିଲେ । ଶୁଭାକରଦେବ ପ୍ରଥମ ଖ୍ରୀ ୭୮୭ରୁ ଖ୍ରୀ ୮୦୯ ପର୍ଯ୍ୟନ୍ତ ଶାସନ କରିଥିଲେ । ତାଙ୍କ ଶାସନର ୨ ଅଙ୍କରେ ରକ୍ତବାହୁ ଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିଲେ ଖ୍ରୀ ୭୮୯ ଷ୍ଟାବ୍ଦରେ । ଠାକୁରଙ୍କ ସୁରକ୍ଷା ପାଇଁ ଶୁଭାକର ଦେବ(ପ୍ରଥମ) ସୋନପୁରକୁ ନେଇ ଏକ ମଣ୍ଡପରେ ୪୫ ବର୍ଷ ରଖାଇ ଓ ପରେ ଠାକୁରଙ୍କୁ ପାତାଳୀ କରାଯାଇଥିଲା । ମାଦଳାପାଞ୍ଜିର ଉଲ୍ଲେଖ ଅନୁସାରେ କ୍ରମେ ଯବନ ପ୍ରଭାବ ରାଜ୍ୟରୁ ଦୁର୍ବଳ ହେବାରୁ ଯଯାତି କେଶରୀ ରାଜା ହେବାପରେ ତାଙ୍କ ୧୧ ଅଙ୍କରେ ଜଗଦଗୁରୁ ଶଙ୍କରାଚାର୍ଯ୍ୟଙ୍କ ଉପଦେଶାନୁସାରେ ସୋନପୁର ଗୋପାଳୀରେ ପାତାଳୀଥିବା ଶ୍ରୀ ବିଗ୍ରହମାନଙ୍କୁ ସଯତ୍ନରେ ବାହାର କରି ଲୁଗା ଗୁଡାଇ ପ୍ରଥମେ ସ୍ୱରାଜଧାନୀ ଯାଜପୁରକୁ ଆଣିଥିଲେ । ଯାଜପୁରରେ ସେ ଯେଉଁ ଅସ୍ଥାୟୀ ମଣ୍ଡପରେ ବିଗ୍ରହମାନଙ୍କୁ ବିଜେ କରାଇଥିଲେ ବୋଲି କିମ୍ବଦନ୍ତୀ ଅଛି, ସେଠାରେ ବର୍ତ୍ତମାନର ଜଗନ୍ନାଥ ମନ୍ଦିର ଅବସ୍ଥିତ ।

ପରେ ରାଜତ୍ୱର ୧୩ ଅଙ୍କରେ ଶ୍ରୀକ୍ଷେତ୍ରରେ ୩୮ ହାତର ଏକ ମନ୍ଦିର ନିର୍ମାଣ କରି ଶ୍ରୀମୂର୍ତ୍ତିଙ୍କୁ ସିଂହାସନ ବିଜେ କରାଇଲେ । ଜଗଦଗୁରୁଙ୍କ ପରାମର୍ଶ ଅନୁସାରେ ଶିଷ୍ୟ ଭାରତୀଆଚାର୍ଯ୍ୟ ନେପାଳର ହିନ୍ଦୁରାଜା ଶଙ୍କର ଦେବଙ୍କ ଠାରୁ ବ୍ରହ୍ମଶିଳା ଆଣିଥିଲେ । ଏଥିପାଇଁ ନେପାଳ ନରେଶଙ୍କୁ ମହାନାୟକ ଉପାଧିରେ ଭୂଷିତ କରି ରାଜା ଯଯାତି ତାଙ୍କୁ ସ୍ୱହସ୍ତରେ ଜଗନ୍ନାଥଙ୍କୁ ପୂଜାକରିବାର ଅଧିକାର ପ୍ରଦାନ କରିଥିଲେ । ଏହି କାର୍ଯ୍ୟ ପାଇଁ ଶ୍ରୀକ୍ଷେତ୍ରରେ ଓ ବିରଜା କ୍ଷେତ୍ରରେ ନେପାଳରାଜାଙ୍କ ନିମିତ୍ତ ପଣ୍ଡାମାନେ ରହିଛନ୍ତି । ଯାଜପୁରରେ ଏମାନଙ୍କୁ ଲାଲମୋହରିଆ ପଣ୍ଡା ବୋଲି କୁହାଯାଏ । ଏମାନେ ନେପାଳ ରାଜାଙ୍କଠାରୁ ସ୍ୱାଧୀକାର ସନନ୍ଦ ଗ୍ରହଣ କରିଛନ୍ତି । ଉପର ବର୍ଣ୍ଣିତ ଉଲ୍ଲେଖରୁ ଜ୍ଞାତହୁଏ ଯେ ଯଯାତି କେଶରୀଙ୍କ ୧୧ ଅଙ୍କରେ ପାତାଳୀବିଗ୍ରହ ମାନଙ୍କୁ ଉଦ୍ଧାର କରାଯାଇଥିଲା ଓ ରାଜାଙ୍କ ୧୩ ଅଙ୍କରେ ଠାକୁରଙ୍କୁ ନୂତନ ମନ୍ଦିରରେ ସ୍ଥାପନ କରାଯାଇଥିଲା । । ଏଥିରୁ ଅନୁମାନ କରାଯାଏ ସେ ଦୀର୍ଘ ଦେଢ ବର୍ଷରୁ ଉର୍ଦ୍ଧ ସମୟ ଶ୍ରୀ ବିଗ୍ରହମାନେ ଯାଜପୁରର ଅସ୍ଥାୟୀ ମଣ୍ଡପରେ ବିରାଜମାନ କରିଥିଲେ । ଏହି ସ୍ମୃତିରେ ଯଯାତିକେଶରୀ ଶ୍ରୀକ୍ଷେତ୍ରରେ ମନ୍ଦିର ନିର୍ମାଣ ପରେ ଯାଜପୁରରେ ମଧ୍ୟ ଜଗନ୍ନାଥ ମନ୍ଦିର ନିର୍ମାଣ କରି ଓଡିଶାର ଦୁଇ ସାଂସ୍କୃତିକ କ୍ଷେତ୍ର ଜଗନ୍ନାଥ ମଣ୍ଡଳ ଓ ବିରଜା ମଣ୍ଡଳ ମଧ୍ୟରେ ସମନ୍ୱୟ ସୃଷ୍ଟି କରିଥିଲେ ।

ଯାଜପୁରରୁ କଟକକୁ ରାଜଧାନୀ ପରିବର୍ତ୍ତନ ହେବାପୂର୍ବରୁ ତୃତୀୟ ଅନଙ୍ଗ ଭୀମଦେବ(୧୨୧୧-୧୨୩୯) ଯାଜପୁରରେ ଯଯାତିକେଶରୀକୃତ ମନ୍ଦିରଟି ଜୀର୍ଣ୍ଣହୋଇଯାଇଥିବାରୁ ମନ୍ଦିରକୁ ପୁନଃନିର୍ମାଣ କରିଥିଲେ । ଇତିହାସ ଖୋଜିବସିଲେ ଜଣା ଯିବ ଯେ ପୁରୀର ଶ୍ରୀମନ୍ଦିର ପରି ଯାଜପୁରର ଜଗନ୍ନାଥ ମନ୍ଦିର ବାରମ୍ବାର ବହିଃଶତ୍ରୁଙ୍କ ଆକ୍ରମଣର ଶୀକାର ହୋଇଅଛି । ୧୩୫୮ରୁ ୧୩୬୧ ଖ୍ରୀରେ ଦିଲ୍ଲୀ ବାଦସାହା ଫିରୋଜଶାହା ତୋଗଲକ ଓଡିଶା ଆକ୍ରମଣ କରି ରାଜଧାନୀ କଟକ ବିଡାନାସୀସ୍ଥ ଜଗନ୍ନାଥ ମନ୍ଦିର ସହ ଯାଜପୁରର ଜଗନ୍ନାଥ ମନ୍ଦିର ମଧ୍ୟ କ୍ଷତି ଘଟାଇଥିଲେ । ଏହି ସମୟରେ ସେବକମାନେ ମଣିବିଗ୍ରହଙ୍କୁ ନିକଟସ୍ଥ ଗ୍ରାମରେ ନେଇ ରଖିଥିଲେ । ଗଜପତି କପିଳେନ୍ଦ୍ରଦେବଙ୍କ ଶାସନକାଳରେ ଏଠାରେ ପୂର୍ବରୁ ପୂଜିତ ମଣିବିଗ୍ରହଙ୍କ ସ୍ଥାନରେ ଦାରୁବିଗ୍ରହଙ୍କ ଆରାଧନା ଆରମ୍ଭ ହୋଇଥିଲା । ପରନ୍ତୁ ୧୫୬୮ ଖ୍ରୀଷ୍ଟାବ୍ଦରେ ବଙ୍ଗର ଆଫଗାନ ଶାସକ ସୁଲେମାନକରନାନୀ ତତ୍କାଳୀନ ଉତ୍କଳ ରାଜ ମୁକୁନ୍ଦଦେବଙ୍କୁ ଗୋହିରା ଟିକିରିଠାରେ ହତ୍ୟାକରି ଉତ୍କଳ ଅଧିକାର କରିବାପରେ ଆଫଗାନ ସେନାପତି କଳାପାହାଡର ଆକ୍ରମଣରେ ଜଗନ୍ନାଥ ମନ୍ଦିର ପୁନଶ୍ଚ ଧ୍ୱଂସ ପ୍ରାପ୍ତ ହୋଇଥିଲା । ଐତିହାସିକ କେଦାରନାଥ ମହାପାତ୍ରଙ୍କ ମତରେ ଆଉରଙ୍ଗଜେବଙ୍କ ରାଜତ୍ୱକାଳରେ ସୁବାଦାର ଆବୁନସର ଖାଁ ଭଗ୍ନ ପ୍ରାପ୍ତ ଜଗନ୍ନାଥ ମନ୍ଦିରର ପ୍ରସ୍ତରମାନନେଇ ଏକ ମସଜିଦ ନିର୍ମାଣ କରିଥିଲେ । ପରନ୍ତୁ ଅଷ୍ଟାଦଶ ଶତକ ମରହଟ୍ଟାମାନେ ନବାବ ଆଲିବର୍ଦ୍ଦିଖାଁଙ୍କ ଠାରୁ ଓଡିଶାର ଶାସନ ନିଜ ହାତକୁ ନେଲାପରେ ହିନ୍ଦୁ ମନ୍ଦିରଗୁଡିକର ଭାଗ୍ୟୋଦୟ ଘଟିଥିଲା । ମରହଟ୍ଟା ଶାସନର ୫୦ ବର୍ଷ(୧୭୫୧-୧୮୦୩) ମଧ୍ୟରେ ହିନ୍ଦୁ ମନ୍ଦିରମାନ ପୁନଶ୍ଚ ମରାମତି କରାଯାଇ ସେଠାରେ ବୈଦିକ ରୀତିରେ ପୂଜାର୍ଚ୍ଚନା ଆରମ୍ଭ ହୋଇଥିଲା । ଏହି କ୍ରମରେ ମରହଟ୍ଟା ଶାସକ ପ୍ରଥମ ରଘୁଜୀ ଭୋଁସଲା (୧୭୫୧-୧୭୭୫) କଳାପାହାଡଦ୍ୱାରା ଧ୍ୱଂସପ୍ରାପ୍ତ ମନ୍ଦିରର ମୂଳପୀଠ ଉପରେ ନୂତନ ମନ୍ଦିର ନିର୍ମାଣ କରିଥିଲେ । ଶତ୍ରୁ ଆକ୍ରମଣ ଭୟରେ ଷୋଳମପୁରର ରଘୁନାଥ ମନ୍ଦିରରେ ରହିଥିବା ମୂର୍ତ୍ତିକୁ ଆଣି ନୂତନ ମନ୍ଦିରରେ ପ୍ରତିଷ୍ଠା କରାଯାଇଥିଲା । ସୁତରାଂ ବର୍ତ୍ତମାନର ପରିଦୃଶ୍ୟ ମାନ ମନ୍ଦିରଟି ମରହଟ୍ଟା ଶାସକ ରଘୁଜୀ ଭୋଁସାଲାଙ୍କ କୀର୍ତ୍ତି ଅଟେ । ବର୍ତ୍ତମାନର ମନ୍ଦିର କଳାକୃତିକୁ ଲକ୍ଷ୍ୟକରି ଗବେଷକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମଧ୍ୟ ଏହାକୁ





୧୭୦୦-୧୮୦୦ ଖ୍ରୀଷ୍ଟାବ୍ଦ କାଳର ବୋଲି ମତ ଦେଇଛନ୍ତି ।

ବର୍ତ୍ତମାନର ଜଗନ୍ନାଥ ମନ୍ଦିର ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ ଦୃଷ୍ଟିରୁ ବିଷ୍ଣୁ ମନ୍ଦିର ଶୈଳୀରେ ନିର୍ମିତ ହୋଇଅଛି । ଜଗମୋହନ ଓ ବିମାନ ମଝିରେ ଭୋଗ ମଣ୍ଡପ ରହିଛି । ୩୫ ଫୁଟ ଉଚ୍ଚତାର ଜଗମୋହନ ଓ ୨୫ ଫୁଟ ଉଚ୍ଚତାର ଭୋଗମଣ୍ଡପ ପୀଢଦେଉଳ ଶୈଳୀରେ ନିର୍ମିତ । ପରନ୍ତୁ ୬୨ ଫୁଟ ଉଚ୍ଚତା ବିଶିଷ୍ଟ ବିମାନ ବା ଗର୍ଭମନ୍ଦିରଟି ରେଖ ଦେଉଳ ଶୈଳୀରେ ତିଆରି ହୋଇଅଛି । ଜଗମୋହନର ମୁଖ୍ୟ ଦ୍ୱାର ବ୍ୟତୀତ ଦକ୍ଷିଣକୁ ଦ୍ୱିତୀୟ ଦ୍ୱାରଟି ଅଛି । ସେହିପରି ଭୋଗମଣ୍ଡପର ଉତ୍ତର ଦକ୍ଷିଣକୁ ଦୁଇଟି ଦ୍ୱାର ରହିଅଛି । ବିମାନ ବା ଗର୍ଭମନ୍ଦିରଟି ସପ୍ତରଥ ଶୈଳୀରେ ନିର୍ମିତ ।

ଗର୍ଭ ମନ୍ଦିରରେ ୪ଫୁଟ ଉଚ୍ଚତା ବିଶିଷ୍ଟ କଳାତ୍ମକ ସିଂହାସନରେ ଚତୁର୍ଦ୍ଧା ମୂର୍ତ୍ତି ବିରାଜମାନ କରିଛନ୍ତି । ମୁଖ୍ୟ ମନ୍ଦିରର ଦକ୍ଷିଣ-ପଶ୍ଚିମ ଓ ଉତ୍ତର ପାର୍ଶ୍ୱରେ ଯଥାକ୍ରମେ ବରାହ-ନୃସିଂହ ଓ ବାମନ ପାର୍ଶ୍ୱଦେବତା ରୂପେ ପୂଜାପାଉଛନ୍ତି । ମୁଖଶାଳାରେ ସ୍ଥାପିତ ଗରୁଡସ୍ତମ୍ଭର କଳାତ୍ମକ ବିଧି ବେଶ ଲକ୍ଷଣୀୟ । ଶ୍ରୀଜିଉଙ୍କ ସମ୍ମୁଖରେ କାରୁକାର୍ଯ୍ୟ ସ୍ତମ୍ଭ ଶୀର୍ଷଦେଶରେ ବାହନ ଗରୁଡ ଆଣ୍ଠୁମାଡି ପ୍ରଣାମରତ ଅଛନ୍ତି । ଉକ୍ତ ମନ୍ଦିରଟି ସମୁଦାୟ ୦.୭୮ ଡେସିମିଲ ସ୍ଥାନରେ ଅବସ୍ଥିତ । ମନ୍ଦିରର ଉତ୍ତର ପାର୍ଶ୍ୱବେଢ଼ା ୨୧୫ ଫୁଟ ଦୈର୍ଘ୍ୟର ହୋଇଥିବାବେଳେ ଦକ୍ଷିଣ ପାର୍ଶ୍ୱସ୍ଥ ପ୍ରାଚୀର ୨୩୧ ଫୁଟ ପରିମିତ ଅଟେ । ସେହିପରି ପୂର୍ବପାର୍ଶ୍ୱରେ ବେଢ଼ା ୧୫୨ ଫୁଟ ଓ ପଶ୍ଚିମରେ ୧୫୫ ଫୁଟ ପରିମିତ ପ୍ରାଚୀର ରହିଛି । ସର୍ବାପେକ୍ଷା ଦର୍ଶନୀୟ ଅଟେ ମନ୍ଦିରର କଳାତ୍ମକ ପାଦପୀଠ । ବିମାନ-ଭୋଗମଣ୍ଡପ ଓ ଜଗମୋହନରେ ଚତୁଃପାର୍ଶ୍ୱସ୍ଥ ପାଦପୀଠରେ ସମୁଦାୟ ୫୦ ଗୋଟି ଗଜବିଡାଳ ଓ ଗଜସିଂହ ବିଗ୍ରହ ପର୍ଯ୍ୟଟକ ମାନଙ୍କୁ ଆକର୍ଷିତ କରିଥାଏ । ସିଂହଦ୍ୱାର ବା ମୁଖ୍ୟ ପ୍ରବେଶ ଦ୍ୱାର ପୀଢଶୈଳୀରେ ନିର୍ମିତ । ସିଂହଦ୍ୱାରରେ ୧୫ ଫୁଟ ଉଚ୍ଚର ଅରୁଣସ୍ତମ୍ଭ ବିଦ୍ୟମାନ । ଉକ୍ତ ସ୍ତମ୍ଭର ଏକ ତ୍ରିଭାଷୀ ଶିଳାଲେଖରୁ ଜଣାଯାଏ ଯେ ୧୩୧୨ ସାଲ ୧୯୦୪ ଖ୍ରୀଷ୍ଟାବ୍ଦରେ ମହନ୍ତ ବଳଭଦ୍ରଦାସଙ୍କ ସମୟରେ ଭକ୍ତ ରାମମୋହନ ଦାସ ଏହି ସ୍ତମ୍ଭଟିକୁ ତିଆରି କରିଥିଲେ । ଅରୁଣସ୍ତମ୍ଭ ସମ୍ମୁଖରେ ସିଂହଦ୍ୱାରର ଗଜ ସିଂହସ୍ଥାପତ୍ୟ ଭୁବନେଶ୍ୱର କୋଣାର୍କ ଓ ପୁରୀର କଳାସ୍ଥାପତ୍ୟ ସହ ତୁଳନୀୟ ମନେହୁଏ । ବିମାନସ୍ଥ ସିଂହାସନରେ ଜଗନ୍ନାଥ, ବଳଭଦ୍ର ସୁଭଦ୍ରାଙ୍କ ସହ ଲକ୍ଷ୍ମୀ, ମଦନମୋହନ ଓ ଶାଳଗ୍ରାମ ରତ୍ନ ମଣ୍ଡପରେ ବିରାଜିତ । ପୁରୀରେ ସ୍ୱତନ୍ତ୍ରଭାବେ ଯେପରି ଲକ୍ଷ୍ମୀଙ୍କର ମନ୍ଦିର ରହିଛି ଏଠି ମଧ୍ୟ ବେଢାର ଐଶାନ୍ୟ କୋଣରେ ବାହାରେ ଲକ୍ଷ୍ମୀ ମନ୍ଦିର ଅଛି । ପୂର୍ବେ ଲକ୍ଷ୍ମୀ ଜଗନ୍ନାଥଙ୍କ ବାମ ପାର୍ଶ୍ୱରେ ପୂଜାପାଉଥିଲେ । ଜଗନ୍ନାଥ ପୂଜକ ସ୍ୱର୍ଗତଃ ପୂର୍ଣ୍ଣାନନ୍ଦ ପାଣି ବଦାନ୍ୟ ବ୍ୟକ୍ତିଙ୍କ ଆର୍ଥିକ ସହାୟତାରେ ଏହି ଲକ୍ଷ୍ମୀମନ୍ଦିର ନିର୍ମାଣ କରାଇଛନ୍ତି । ଲକ୍ଷ୍ମୀ ମନ୍ଦିରର ଦକ୍ଷିଣକୁ ଜଗନ୍ନାଥ ଧର୍ମଶାଳା ଅବସ୍ଥିତ । ବିକାନୀର ନିବାସୀ ଜଣେ ସେଠଙ୍କ ପତ୍ନୀ ତାଙ୍କ ପତି ଙ୍କ ସ୍ମୃତି ରକ୍ଷା ନିମିତ୍ତ ଏହି ଧର୍ମଶାଳା ନିର୍ମାଣ କରିଥିଲେ । ତାଙ୍କ ନାମାନୁସାରେ କେତେକ ଏହାକୁ ରାଧାବାଈ ଧର୍ମଶାଳା ମଧ୍ୟ କୁହନ୍ତି । ଏହା ୧୯୧୦ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା । ସିଂହଦ୍ୱାର ସମ୍ମୁଖରେ ଦୋଳ ମଣ୍ଡପ ରହିଥିବାବେଳେ ବେଢାଭିତରେ ମନ୍ଦିରର ଉତ୍ତର ପୂର୍ବ କୋଣରେ ସ୍ନାନମଣ୍ଡପ ବିରାଜିତ ଅଛି । ମନ୍ଦିରର ଉତ୍ତର ପଶ୍ଚିମ କୋଣରେ ମୁକ୍ତେଶ୍ୱର ମନ୍ଦିର ଅବସ୍ଥିତ । ପୁରୀ ମନ୍ଦିରର ପ୍ରତିପାଳକ ଅଗ୍ନୀଶ୍ୱର ସଦୃଶ ଅତ୍ରତ୍ର ଜଗନ୍ନାଥ ମନ୍ଦିରର ପ୍ରତିପାଳକଭାବେ ମୁକ୍ତେଶ୍ୱର ବିରାଜମାନ କରିଛନ୍ତି ।

ପୁରୀ ମନ୍ଦିର ଅନୁକୋଣରେ ଏଠାରେ ତିନିଠାକୁରଙ୍କ ପର୍ବୋତ୍ସବ ଅନୁଷ୍ଠିତ ହୁଏ । ମନ୍ଦିରର ସମସ୍ତ ପର୍ବପର୍ବାଣୀ,ରୀତିନିତି ଏଠାକାର ସଦାବ୍ରତ ମଠ ଦ୍ୱାରା ସଂପନ୍ନ ହୁଏ । ମରହଟ୍ଟା ଶାସକ ଶିବାଜୀଙ୍କ ପରେ ତାଙ୍କ ପୁତ୍ର ଶମ୍ଭୁଜୀ ଓ ଭାଇ ରଘୁଜୀ ଭୋନସଲା ଯେତେବେଳେ ଓଡିଶା ଅଧିକାର କଲେ, ସେତେବେଳେ ଏହିମଠଟି ପ୍ରତିଷ୍ଠିତ ହୋଇଥିଲା । ସେବେଠାରୁ ରଥଯାତ୍ରା କାଳରେ ସଦାବ୍ରତ ମଠ ମାଉସୀମା ମନ୍ଦିରଭାବେ ନବଦିନ ଅବସ୍ଥାନରେ ଆବାସସ୍ଥଳୀ ରୂପେ ବ୍ୟବହୃତ ହେଉଅଛି । ପୂର୍ବେ ମନ୍ଦିରର ସେବାପୂଜା ନିମିତ୍ତ ରାଜାଙ୍କ ଦ୍ୱାରା ୧୨୦ ଏକର ଜମି ଖଞ୍ଜାଯାଇଥିଲା ତାହାଦ୍ୱାରା ମନ୍ଦିରର ପର୍ବପର୍ବାଣୀ ଅନୁଷ୍ଠିତ ହେଉଥିଲା ବୋଲି ଜନଶ୍ରୁତି ଅଛି । ଏଠାରେ ସ୍ନାନପୂର୍ଣ୍ଣମୀ ଠାରୁ- ହରିଶୟନ ଏକାଦଶୀ ପର୍ଯ୍ୟନ୍ତ ଜଗନ୍ନାଥଙ୍କ ରଥଯାତ୍ରା ବିଧି ପୁରୀର ଘୋଷଯାତ୍ରା ଅନୁକରଣରେ ଅନୁଷ୍ଠିତ ହୁଏ । ନେତ୍ରୋତ୍ସବପରେ ତିନିଠାକୁରଙ୍କୁ ତିନୋଟି ରଥରେ ବିଜେକରାଯାଏ । ଗୁଣ୍ଡିଚାଯାତ୍ରା ଦିନ ଏଠାରେ ଉଭାଯାତ୍ରା ହେବାର ପରମ୍ପରା ରହିଅଛି । ଏହିପରି ଚନ୍ଦନପୂର୍ଣ୍ଣିମାରେ ଦିଅଁଙ୍କ ପ୍ରତିନିଧି ମଦନମୋହନ ସୁସଜ୍ଜିତ ବିମାନରେ ଯାଇ ବୈତରଣୀ ନଦୀରେ ଚାପକ୍ରୀଡା କରନ୍ତି । ଦୋଳପର୍ବରେ ମଧ୍ୟ ମଦନମୋହନ ଦୋଳମଣ୍ଡପରେ ବିଜେ ହୋଇ ନୂତନ ପଞ୍ଜିକା ଶ୍ରବଣ କରନ୍ତି ।



ଫଗୁ କ୍ରୀଡାପରେ ମେଷାସୁର ଦାହପରେ ବିଜେ ପ୍ରତିମା ମନ୍ଦିରକୁ ପ୍ରତ୍ୟାବର୍ତ୍ତନ କରନ୍ତି । ବର୍ଷରେ ଦୁଇଥର କାର୍ତ୍ତିକ ଓ ମାଘ ମାସରେ ତିନିଠାକୁରଙ୍କ ବିଶେଷ ବେଶ ଅନୁଷ୍ଠିତ ହୁଏ । ବାର ମାସରେ ତେର ପର୍ବକାଳରେ ବିଶେଷ ଯାତ୍ରାନୁଷ୍ଠାନ କରାଯାଏ । ସାଧାରଣ ଦିବସମାନଙ୍କରେ ଦୁଇବେଳା ବାଲ୍ୟଭୋଗ ସହ ଅନ୍ନନୈବେଦ୍ୟ ଲାଗିହୁଏ । ଭୋଗରାଗସହ ମନ୍ଦିରର ଉନ୍ନତି ପାଇଁ ଜଗନ୍ନାଥ ସେବାସମିତି କାର୍ଯ୍ୟ କରୁଥିଲାବେଳେ ଏବେ ବହୁଦିନପରେ ସରକାରଙ୍କ ଦେବୋତ୍ତର ବିଭାଗ ମନ୍ଦିର ପରିଚାଳନା ପାଇଁ ନୂତନ ଟ୍ରଷ୍ଟ ବୋର୍ଡ ଗଠନ କରିଥିବା ଆନନ୍ଦର ବିଷୟ ଅଟେ । ସୁତରାଂ ଶକ୍ତିପୀଠ ବିରଜା କ୍ଷେତ୍ରରେ ଜଗନ୍ନାଥ ସଂସ୍କୃତିର ସ୍ମୃତିପୀଠ ଜଗନ୍ନାଥ ମନ୍ଦିର ବହୁ ବୈଷ୍ଣବଭକ୍ତ, ଧର୍ମାଚାର୍ଯ୍ୟ ଓ ଗବେଷକମାନଙ୍କୁ ଏଠାକୁ ଆସିବାକୁ ସ୍ମରଣାତୀତ କାଳରୁ କେବଳ ପ୍ରେରିତ କରିଛି ତାହା ନୁହେଁ, ଅପିତୁ ଜଗନ୍ନାଥ ସଂସ୍କୃତିର ମୂକସାକ୍ଷୀ ରୂପେ ବିଦ୍ୟମାନ ଅଛି କହିଲେ ଅତିଶୟୋକ୍ତି ହେବନାହିଁ ।

ମୁଖ୍ୟ ସମ୍ପାଦକ, ବିରଜାଜ୍ୟୋତି
କୃଷ୍ଣକୁଟୀର ସନ୍ଥମାଧବ
ଯାଜପୁର-୭୫୫୦୦୧

# ବଡ ଠାକୁର

ସଚ୍ଚିଦାନନ୍ଦ ପ୍ରଧାନ

ବଡ ଠାକୁର
ମୋତେ ବୁଝାଇ ଦେବ
ଅବୋଧ ବାଳକ ନାହିଁ ମୋ ବିବେକ
ଏ ମାୟା ସଂସାରେ ତୁମେ ମୋ ଧବ ।

କୁହ କାହାପାଇଁ ପୟରେ ପାଦୁକ
ରାଜୀବ ପୟରେ ନୁପୁର ସଉକ
କିମ୍ବା ପିଉପଟ୍ଟ ପିନ୍ଧା ହୋଇବ ?

କୁହ କିସ ପାଇଁ ସ୍ତମ୍ଭୁ ବାହାରିଲ
ହିରଣ୍ୟକସିପୁ ନଖେ ବିଦାରିଲ
ପ୍ରହ୍ଲାଦକୁ କିମ୍ବା ସ୍ୱର୍ଗେ ରଖିବ ?

କାହା ପାଇଁ ତୁମେ ଗଲ ବନବାସ
ଦିନେ ଅଧେ ନୁହେଁ ଚଉଦ ବରଷ
ଅଯୋଧ୍ୟାରେ କିଏ ରାଜା ହୋଇବ ?
ମଉନ କାହିଁକି ଏ କଳି ଯୁଗରେ
କିମ୍ବା ଦାରୁ ବ୍ରହ୍ମ ସେ ନୀଳ କନ୍ଦରେ
ଷାଠିଏ ପଉଟି କା ପାଇଁ ଭୋଗ ?

କିମ୍ବା ନୀଳାଚଳେ ପତିତ ପାବନ
ଉଡୁଅଛି ବାନା ହେ ମଧୁସୂଦନ
କିମ୍ବା ଦୀନବନ୍ଧୁ ନାମଟି ତବ ?
ଦୁଃଖହାରୀ ତୁମେ କହିବ ବୁଝାଇ
ବସିଛି ଯଯାତି ଶ୍ରୀଚରଣ ଧ୍ୟାୟୀ
କିମ୍ବା ଅକିଞ୍ଚନେ ନିଦୟ ହେବ?

ବନଖଣ୍ଡ କାର୍ଯ୍ୟାଳୟ, ବୌଦ୍ଧ







# ସତ୍ତ୍ୱଗୁଣ ସ୍ୱରୂପ ଗୁଣାତୀତ ପରଂବ୍ରହ୍ମ ବିଷ୍ଣୁ

ଈଶ୍ୱରଚନ୍ଦ୍ର ମହାପାତ୍ର

ହିନ୍ଦୁମାନଙ୍କର ଯଜ୍ଞାଦି ସକଳ ଶୁଭକାର୍ଯ୍ୟରେ ଯେଉଁ ମଙ୍ଗଳାଚରଣ ପାଠ କରାଯାଏ ସେଥିରେ ଶ୍ରୀବିଷ୍ଣୁଙ୍କର ଅନିବାର୍ଯ୍ୟତା କେତେ ଗୁରୁତ୍ୱପୂର୍ଣ୍ଣ । ତାହା ଏହି ଆବାହାନୀ ମନ୍ତ୍ରରୁ ଜଣାଯାଏ । ମଙ୍ଗଳାଚରଣରେ କୁହାଯାଇଛି-

ଓଁ ମଙ୍ଗଳଂ ଭଗବାନବିଷ୍ଣୁଃ ମଙ୍ଗଳଂ ଗରୁଡଧ୍ୱଜଃ
ମଙ୍ଗଳଂ ପୁଣ୍ଡରୀକାକ୍ଷ ମଙ୍ଗଳାୟତନୋ ହରିଃ ।



ଶ୍ରୀ ଭଗବାନ ବିଷ୍ଣୁ ପରମଶୁଦ୍ଧ, ସତ୍ତ୍ୱଗୁଣ ସଂପନ୍ନ, ତ୍ରିକାଳୈକ ସତ୍ତାତ୍ମକ ପରମ ଅବିନାଶୀ, ସତ୍ତ୍ୱସ୍ୱରୂପ, ପରମସତ୍ୟ, ଅନାଦି, ସର୍ବକାଳରେ ସମାନଭାବେସ୍ଥିତ ଭକ୍ତବତ୍ସଳ ଅଟନ୍ତି । ଉପରୋକ୍ତ ମଙ୍ଗଳାଚରଣରେ ପରପୂର୍ଣ୍ଣ ଭାବମାଦକତା କର୍ତ୍ତାର ମନରେ ଭଗବାନ ବିଷ୍ଣୁଙ୍କ ପ୍ରତି ଖେଳାଇ ଦିଏ ଭକ୍ତି ହିଲ୍ଲୋଳ ।

କୁହାଯାଇଛି:-

ଇନ୍ଦ୍ରଂ ମିତ୍ରଂ ବରୁଣମାଗ୍ନି ମାହୁରଥୋ ଦିବ୍ୟଃ ସୁପର୍ଣୋଗରୁତାତ୍ମକ
ଏକଂ ସଦ୍ ବିପ୍ରା ବହୁଧା ବଦନ୍ତ୍ୟଗ୍ନି ଯମଂ ମାତରିଶ୍ୱାନ ମାହୁ ।

ଋକ୍ ବେଦର ଏହି ଉଦ୍ଧୃତିରୁ ଜଣାଯାଏ ଯେ ଏକହିଁ ସତ୍ତାତ୍ମକ ଶୁଦ୍ଧସତ୍ତ୍ୱଙ୍କୁ ବେଦବିଦ୍, ବିପ୍ରବ୍ରହ୍ମା, ଜ୍ଞାନୀଗଣ ଇନ୍ଦ୍ର, ମିତ୍ର, ବରୁଣ, ଅଗ୍ନି, ଯମ, ମାତରିଶ୍ୱା(ବାୟୁ), ଦିବ୍ୟ ସଂପନ୍ନ, ଗୁରୁତ୍ମାନ ବୋଲି ଆରାଧନା କରିଥାନ୍ତି ।

ସେହି ଗୋଟିଏ ସତ୍ତାତ୍ମକ ପରମାତ୍ମା ବିଷ୍ଣୁଙ୍କର ଅନେକ ନାମ ରହିଛି । ଶ୍ରୀବିଷ୍ଣୁ ହିଁ ଅନେକ ଦେବ ତଥା ଦେବୀ ରୂପ ହୋଇ ଗୋଟିଏ ସତ୍ତାତ୍ମକ, ସତ୍ ସ୍ୱରୂପ ଅଟନ୍ତି । ସତ୍ ର ଅର୍ଥ ହେଉଛି ସର୍ବଦା, ସର୍ବକାଳରେ ସମାନ ଭାବେ ସ୍ଥିତ ରହୁଥିବା । ଏହି ପରମ ମୌଳିକ ସତ୍ତାଙ୍କୁ ଆଧାତ୍ମିକ ବାଦୀମାନେ ପରମ ସତ୍ୟ ବ୍ରହ୍ମ ବୋଲି କହିଛନ୍ତି ଏବଂ ତାଙ୍କୁ ଲାଭ କରିବାପାଇଁ ବ୍ରହ୍ମବିଦ୍ୟାର ଆଶ୍ରୟ ନେଇଛନ୍ତି ।

ବ୍ରହ୍ମ ଜ୍ଞାନୀମାନେ ପ୍ରାର୍ଥନାରେ କହିଥାନ୍ତି ଅସତୋ ମଂା ସତ୍ ଗମୟ ଅର୍ଥାତ୍ ହେ ପରମାତ୍ମା! ଏହି ଅସତ୍ୟ-ଅଜ୍ଞାନରୂପ-ନଶ୍ୱର ସଂସାରରୁ ଆପଣଙ୍କର ପରମସତ୍ୟ, ନିତ୍ୟସ୍ୱରୂପ ସତ୍ୟଙ୍କୁ ମୋତେ ଲାଭ କରାନ୍ତୁ । ଯଦ୍ୱାରା ମୁଁ ମଧ୍ୟ ସତ୍-ଚିତ୍-ଆନନ୍ଦ ସ୍ୱରୂପ ହେବାର ସୌଭାଗ୍ୟ ଲାଭ କରିବି । କଠୋପନିଷଦରେ କୁହାଯାଇଛି:-

ବିଜ୍ଞାନ ସାରଥିର୍ଯ୍ୟସ୍ତୁ ମନଃ ଗଗ୍ରହବାନ୍ନରଃ
ସୋଽଧନଃ ପରମାପ୍ନୋତି ତଦ୍ୱିଷ୍ଣୋଃ ପରମପଦମ୍

ଶ୍ରୀଶଙ୍କରାଚାର୍ଯ୍ୟ ଏହାର ଭାଷ୍ୟ କରିବାକୁ ଯାଇ କହିଛନ୍ତି- ଏକାଗ୍ର ଚିତ୍ତରେ ବିଦ୍ୱାନ- ଜ୍ଞାନୀ ପୁରୁଷ ପରମ କଠିଣ-ସଂସାର ଗତିକୁ ପାର ହୋଇଯାନ୍ତି । ସଂସାରର ବନ୍ଧନରୂପ ଜନ୍ମ-ମରଣରୁ ମୁକ୍ତ ହୋଇ ସର୍ବବ୍ୟାପୀ ପରମାତ୍ମା ଶ୍ରୀଭଗବାନ ବିଷ୍ଣୁଙ୍କର ବାସୁଦେବ ନାମକ ବ୍ରହ୍ମାଙ୍କର ପରମ ଶେଷପଦ ମୋକ୍ଷ ନାମରେ ସତ୍ତତ୍ତ୍ୱଙ୍କୁ ପ୍ରାପ୍ତ ହୁଅନ୍ତି ।

ଏହି ପରମ ଅବିନାଶୀ ସତ୍ତତ୍ତ୍ୱଙ୍କୁ ସତ୍ୟ କିମ୍ବା ପରମବ୍ରହ୍ମ କିମ୍ବା ପରମ ଅକ୍ଷର ବିଷ୍ଣୁ କୁହାଯାଏ । ସତ୍ ଶବ୍ଦରୁ ହିଁ ଭାବାର୍ଥରେ ଯଦ ଏବଂ ତ୍ୱ ପ୍ରତ୍ୟୟ ହୋଇଥିବାରୁ(ସତଃ ଭାବଃ ସତ୍ମ୍ ତଥା ସଦଃ ଭାବଃ ସଦ୍ୱମ୍) ସଦ୍ୟ ଏବଂ ସତ୍ତ୍ୱ ସିଦ୍ଧ ହୁଅନ୍ତି । ଏଣୁ ସଦ୍ , ସତ୍ୟ, ସତ୍ତ୍ୱ ପରମବ୍ରହ୍ମ ବିଷ୍ଣୁ- ଏହି ସବୁ ପର୍ଯ୍ୟାୟବାଚୀ ଶବ୍ଦ ଅଟନ୍ତି । ଏହି ସବୁ ଗୋଟିଏ ଶବ୍ଦ ବୋଧକ ହୋଇଥିବାରୁ ଅଭିନ୍ନ ଅଟନ୍ତି । ଏକାର୍ଥ ବୋଧକ ଶବ୍ଦର ଲଘୁତା କିମ୍ବା ଗୁରୁତ୍ୱ ହୁଏ ନାହିଁ । ଏଥିରୁ ସ୍ପଷ୍ଟ ହୁଏ ଯେ ପରମ ସତ୍ୟ ଅନାଦି ପରଂବ୍ରହ୍ମ ଶ୍ରୀବିଷ୍ଣୁ ହିଁ ସତ୍ ଅଟନ୍ତି । ସେ ସର୍ବଦା ଗୋଟିଏ ରସମୟ, ତତ୍ତ୍ୱମୟ ଅଟନ୍ତି । ସେହି ସତ୍ତତ୍ତ୍ୱମୟ ବିଷ୍ଣୁ ତୁରୀୟ ଅବସ୍ଥା ସଂପନ୍ନ, ଗୁଣାତୀତ, ପରମ ଅକ୍ଷର ବିଷ୍ଣୁଙ୍କୁ



ପରଂବ୍ରହ୍ମ କୁହାଯାଏ ।

ମାନସହଂସ ତୁଳସୀଦାସ ଏହି ସତ୍ୟକୁ ସମର୍ଥନ କରିଛନ୍ତି- ରାମକରୌଂ କେହି ଭାନ୍ତି ପ୍ରଶଂସା ମୁନିମହେଶ ମନ-ମାନସ ହଂସା କହିଁ ଯୋଗ ଯୋଗୀ ଦେହୀ ଲାଗୀ କୋହୁର ମମଘ ମଦୁତ୍ୟାଗୀ ବ୍ୟାପକୁ ବ୍ରହ୍ମ ଅଲଖୁ ଅବିନାଶୀ ଚିଦାନନ୍ଦୁ ନିରରାଜୁ ଗୁନରାସୀ ଅର୍ଥାତ୍ ହେ ରାମ! ଆପଣ ମୁନିମାନଙ୍କର ତଥାଶିବଙ୍କର ମନରୂପୀ ମାନ ସରୋବରର ହଂସ ଅଟନ୍ତି । ଯାହାପାଇଁ ଆପଣ କ୍ରୋଧ, ମୋହ, ମମତା, ମନାଦିକୁ ତ୍ୟାଗ କରି ଯୋଗୀଙ୍କ ଭଳି ଯୋଗ କରନ୍ତି । ଆପଣ ଅଲକ୍ଷ, ଅବିନାଶୀ, ବ୍ୟାପକ ବ୍ରହ୍ମ ଅଟନ୍ତି । ଆପଣ ଚିଦାନନ୍ଦ , ଗୁଣରହିତ ତଥା ସଗୁଣ ମଧ୍ୟ ଅଟନ୍ତି । ଆପଣଙ୍କୁ ମନ, ବାଣୀ, ବୁଦ୍ଧି ଦ୍ୱାରା ଜଣା । କେବଳ ଆପଣଙ୍କର ସତ୍ତ୍ୱ ସ୍ୱରୂପକୁ ଅନୁମାନ କରାଯାଇପାରେ । ଶୁଦ୍ଧ ସତ୍ତ୍ୱମୟ ବିଷ୍ଣୁଙ୍କର ଧ୍ୟାନ କରିବାକୁ ଯାଇ ଭାଗବତର ମଙ୍ଗଳାଚରଣରେ କୁହାଯାଇଛି:-

ଧ୍ୟାନ ସ୍ୱେନ ସଦା ନିରସ୍ତ କୁହଙ୍କ ସତ୍ୟଂ ପରଂ ଧୀମହି । ବିଷ୍ଣୁ ଶବ୍ଦର ଅର୍ଥ ହେଉଛି ସର୍ବବ୍ୟାପକ ଏହା ଜୁହୋତ୍ୟାଦି ଗଣଥ୍ୟ ବିଷ୍ଲ ବ୍ୟାପ୍ତୌ ଧାତୁରୁ ନିଷ୍ପନ୍ନ ହୋଇଛି । ଏହାର ବିଗ୍ରହ ହେଉଛନ୍ତି ସର୍ବମ ବେବେଷ୍ଟି ବ୍ୟାପ୍ତୋତିତ ବିଷ୍ଣୁଃ । ବିଷେଃ କି । ଏହି ପାଣିନୀୟ ଇତ୍ୟାଦି ସୂତ୍ରରୁ ବିଷ୍ ଧାତୁରେ ଶୁକ୍ ଯୁକ୍ତ ହୋଇ ବିଷ୍ଣୁ ଶବ୍ଦ ସିଦ୍ଧ ହୋଇଅଛି ।

ବୈଦିକ ବିଦ୍ୱାନମାନେ ବିଷ୍ଣୁ ଶବ୍ଦର ବ୍ୟାଖ୍ୟା ଏହିପରିଭାବେ କରିଛନ୍ତି ।

(କ) କୌଷୀତକି:-(ବିଶ୍ ଅର୍ଥାତ୍ ପ୍ରବେଶ କରିବା) ଯିଏ ପ୍ରତ୍ୟେକରେ ପ୍ରବିଷ୍ଟ(ଉପସ୍ଥିତ) ଅଟନ୍ତି ତାଙ୍କୁ ବିଷ୍ଣୁ କୁହାଯାଏ ।

(ଖ) ସାୟଣଚାର୍ଯ୍ୟ- ବ୍ୟାପ୍ତ୍ୟର୍ଥକ ବିଷ୍ ରୁ ବିଷ୍ଣୁ ସର୍ବବ୍ୟାପୀ ବୋଲି ମନେ କରାଯାଏ

(ଗ) ଆଲଡେନବର୍ଗ- ବିସ୍ତୃତ ଉଦ୍ୟମ କରିବା ଅର୍ଥରେ(ବି-ସ୍ନୁ)ଯୋଗୁଁ ବିଷ୍ଣୁ ହୋଇଅଛି ।

(ଘ) ମ୍ୟାକଡୋନେଲ- ବିଷ୍ଣୁ ଅର୍ଥାତ୍ ଉଦ୍ୟୋଗୀ ହେବା, ବ୍ୟବସାୟୀ ହେବା ଅର୍ଥରେ (ବିଶ୍ନୁ) ବିଷ୍ଣୁ କୁହାଯାଏ ।

(ଚ) ସ୍ୱାମୀ ଦୟାନନ୍ଦ ସରସ୍ୱତୀ-ବ୍ୟାପ୍ତ୍ୟାର୍ଥକ ଧାତୁ ବିଷ୍ ରୁ ବିଷ୍ଣୁ ଶବ୍ଦ ନିଷ୍ପନ୍ନ ହୋଇଛି ।

(ଛ) ବ୍ଲୁମ ଫିଲ୍‌ଡି:- ସର୍ବୋଚ୍ଚ ପରମପଦ ଉପରେ ଆରୋହଣ କରୁଛନ୍ତି । ତେଣୁ ତାଙ୍କୁ (ବି-ସ୍ନୁ) ବିଷ୍ଣୁ କୁହାଯାଏ ।

ଏହି ପରିଭାବେ ପ୍ରତ୍ୟେକ ବିଦ୍ୱାନ ମାନଙ୍କର ମତ ବସ୍ତୁତଃ ସମାନ ସିଦ୍ଧ ମନେ ହୁଏ । କାରଣ ବ୍ୟାପ୍ତିଗତି ର ରୂପ ଅଟେ ଏବଂ ପ୍ରବେଶ କରିବା, ଆରୋହଣ କରିବା, ଉଦ୍ୟୋଗୀ ହେବା ଆଦି ମଧ୍ୟ ଗତିର ରୂପ ଅଟନ୍ତି । ଏଣୁ ବିଷ୍ଣୁ ହିଁ ସର୍ବତ୍ର ବ୍ୟାପକ ବୋଲି ସିଦ୍ଧ ଅଟନ୍ତି ।

ବେଦର ଭାଷ୍ୟକାରମାନେ ବିଷ୍ଣୁଶବ୍ଦର ଅର୍ଥ ପରମାତ୍ମା, ବ୍ୟାପନଶୀଳ, ପରଂବ୍ରହ୍ମ ବୋଲି କହି ଅଛନ୍ତି ।

ସର୍ବବ୍ୟାପକ ବିଷ୍ଣୁଙ୍କର ଅପାର ପରାକ୍ରମର ବର୍ଣ୍ଣନା କରିବାରେ କିଏ ସମର୍ଥ ହୋଇପାରେ? ଶ୍ରୀବିଷ୍ଣୁ ନିଜର ଯୋଗମାୟା- ଶକ୍ତି-ପ୍ରକୃତି ଦ୍ୱାରା ଏହି ପ୍ରାକୃତିକ ଏକପାଦ୍ୱି ବିଭୂତିରେ ଅସଂଖ୍ୟ ବ୍ରହ୍ମାଣ୍ଡ ସୃଷ୍ଟି କରିଅଛନ୍ତି ଏବଂ ତ୍ରିପାଦ୍ୱି ବିଭୂତି ଯାହା ହେଉଛି ଅକ୍ଷର, କଳାତୀତ, ସଦାନିତ୍ୟ, ଅପ୍ରାକୃତ ସର୍ବଶ୍ରେଷ୍ଠ ଅଟନ୍ତି । ତାଙ୍କରି ମଧ୍ୟରେ ମୋକ୍ଷଧାମ କିମ୍ବା ବୈକୁଣ୍ଠ କିମ୍ବା ବିଷ୍ଣୁପଦ, (ଉତ୍ତରଂ ମଧ୍ୟଛମ୍) ପରମପଦ ନିବେଶ କରିଅଛନ୍ତି । ସମାହିତ ହୋଇଛନ୍ତି ।

ସୃଷ୍ଟି ସର୍ଜନା ପୂର୍ବରୁ ମଧ୍ୟ ବିଷ୍ଣୁ ଶୁଦ୍ଧ ଶତ୍ତ୍ୱମୟ, ଗୁଣାତୀତ ଥିଲେ । ଏହି ପରମ ସତ୍ତାତ୍ମକ, ଅବିନାଶୀ ସତ୍ତ୍ୱକୁ ପରଂବ୍ରହ୍ମ କୁହାଯାଏ । ସୃଷ୍ଟି ସଂହାରାନ୍ତେ ସେ ହିଁ ଅବଶିଷ୍ଟ ରହନ୍ତି ।

ନିଜର ନାଭି-କମଳରୁ ଜନ୍ମିତ ହିରଣ୍ୟମୟ ବ୍ରହ୍ମାଙ୍କୁ ଜ୍ଞାନଦାନ କରି ବିଷ୍ଣୁ କହି ଅଛନ୍ତି ଯେ ଯେତେବେଳେ ଏହି ଦୃଶ୍ୟମାନ ନଶ୍ୱର ପ୍ରାକୃତିକ ସୃଷ୍ଟ୍ୟାଦି ନଥିଲେ ମୁଁ ହିଁ ଶୁଦ୍ଧ ସତ୍ତ୍ୱମୟ ରୂପେ ରହିଥିଲି ।

ପ୍ରଳୟପରେ ମଧ୍ୟ ଯେଉଁ ଅବଶେଷ ରହିବ ତାହା ମଧ୍ୟ ମୁଁ ନିଜେ ଅଟେ । ଏଣୁ ମୁଁ ହେଉଛି ତ୍ରିକାଳତୀତ ପରମ ଅବିନାଶୀ । ତ୍ରିପାଦ୍ୱି ବିଭୁତିମୟ ଭଗବାନଙ୍କ ଠାରେ ଯାହା ବିଦ୍ୟମାନ ଅଟେ । ତାହା ତମୋଗୁଣୀ ନୁହେଁ, ରଜୋଗୁଣୀ କିମ୍ବା ତମ-ରଜ ମିଶ୍ରିତ ନୁହେଁ । ତାହା ସଂପୂର୍ଣ୍ଣଭାବେ ସତ୍ତ୍ୱଗୁଣୀ ଅଟେ । ତାଙ୍କ ଠାରେ ଶୁଦ୍ଧ ସତ୍ତ୍ୱମୟ ପରମାନନ୍ଦ, ଶାନ୍ତିମୟ, ସତ୍, ଚିତ୍-ଆନନ୍ଦମୟ ଆନନ୍ଦ ହିଁ ବିଦ୍ୟମାନ ଅଟେ । ଋକ ବେଦରେ କୁହାଯାଇଛି:-

ଏତାଦାନସ୍ୟ ମହିମାଷ୍ଟଯେ ଜ୍ୟାୟାଂଶ୍ଚ ପୁରୁଷଃ
ପାଦୋଷ୍ଟସ୍ୟ ବିଶ୍ୱାଭୂତାନି ତ୍ରିପାଦସ୍ୟାମୃତଂ ଦିବି ।।

ଭୂତ ବର୍ତ୍ତମାନ ଭବିଷ୍ୟ ରୂପରେ ଯେତେ ଜଗତ ରହିଅଛି ତାହା ଏହି ପୁରୁଷ ବିଷ୍ଣୁଙ୍କର ମହିମାର ଦ୍ୟୋତକ ଅଟେ । ସେ ଅପାର ମହିମାମୟ, ଅପାର ଶକ୍ତିଶାଳୀ ଅଟନ୍ତି । ଯେପରି ପ୍ରାକୃତିକ ବ୍ରହ୍ମାଣ୍ଡର

କିଛି ଅସ୍ତିତ୍ୱ ଜଣାପଡେ ନାହିଁ ସେହିପରି ଅସଂଖ୍ୟ ବ୍ରହ୍ମାଣ୍ଡ ସେହି ପରମ ପୁରୁଷଙ୍କର ଚତୁର୍ଥାଂଶରେ ପରମାଣୁ ସଦୃଶ ପ୍ରତୀୟମାନ ହୋଇଥାଏ । ଏହା ହେଉଛି ଏକପାଦ୍ୱି ବିଷ୍ଣୁଙ୍କର ଲୀଳା, ଏହାଙ୍କର ତ୍ରିପାଦ୍ୱି ବିଭୂତି ଅନନ୍ତ । ଅପାର, ମନ-ବୁଦ୍ଧି-ବାଣୀର ଅବିଷୟ ତୁରୀୟ ଅବସ୍ଥାମୟ ଅଟେ ।

'ବ୍ରହ୍ମ ସତ୍ୟଂ ଜଗନ୍ମିଥ ଜୀବୋ ବ୍ରହ୍ମୈବ ନା ପରଃ' ଏହି ସଂସାରର ଉପାଦାନ କାରଣ ବ୍ରହ୍ମ ସତ୍ୟ ଅଟେ ଏବଂ ଜଗତ ମିଥ୍ୟା ଅଟେ । ଜଗତ ପରିବର୍ତ୍ତନଶୀଳ ଅଟେ । ସର୍ବବ୍ୟାପକ ପରଂବ୍ରହ୍ମଙ୍କର ସଂକଳ୍ପରୁ ଏହି ବିଶ୍ୱର ସୃଷ୍ଟି ହୋଇଅଛି । ଭଗବାନ କହିଛନ୍ତି- ଏ କୋ ହଂ ବହୁସ୍ୟାମ୍, ଅର୍ଥାତ୍ ମୁଁ ଏକରୁ ଅନେକ ହୁଏ । ନିର୍ଗୁଣ, ଗୁଣାତୀତ, ବ୍ରହ୍ମ, ସତ୍‌ଦ୍ସ୍ୱରୂପ ବିଷ୍ଣୁଙ୍କର ଅନେକ ରୂପରେ ସଂସାର ଗଠିତ ହୋଇଥାଏ ଯେପରି ବିଷ୍ଣୁଙ୍କର ଅନେକ ଆଭୁଷଣ ବିଭିନ୍ନ ରୂପରେ ହୋଇଥାଏ । ପୃଥିବୀରୁ ପାର୍ଥିବ ବସ୍ତୁ ଯଥା-ଇଟା, ମାଠିଆ ଆଦି ଅନେକ ବସ୍ତୁନିର୍ମାଣ କରାଯାଏ, ସେହିପରି ଆକାଶର ଅନେକ ଅଂଶ ଘଟାକାଶ, ମଠାକାଶ, ହୃଦୟାକାଶ ଆଦି ଅନେକ ଆକାଶ ହୁଏ । କିନ୍ତୁ ପ୍ରକୃତରେ ରୂପରକ୍ଷୟ ହେବାପରେ ପୁଣି ସମସ୍ତ ପୃଥିବୀ ସୁବର୍ଣ୍ଣ ଆକାର ହୋଇଥାଏ ।

ସେହି ସତ୍ୟ ସ୍ୱରୂପ ବିଷ୍ଣୁ ନିଜର ପରମ ଶାନ୍ତ-ଶୁଦ୍ଧ ସତ୍ତ୍ୱତ୍ତ୍ୱ ତୁରୀୟ ଅବସ୍ଥାମୟ ଗୁଣାତୀତ ରୂପ ଦ୍ୱାରା ସୃଷ୍ଟି ରଚନା ପୂର୍ବରୁ ଥିଲେ । ସୃଷ୍ଟି କରିବା ସମୟରେ ନିଜର ଯୋଗମାୟାଙ୍କୁ ସାଥିରେ ଧାରଣ କରି ସୃଜନ କଳ୍ପନା ବିଳାସିତାରୁ ସେ ରଜୋଗୁଣାତ୍ମକ ବ୍ରହ୍ମାଙ୍କ ରୂପରେ ଜଗତ ସୃଷ୍ଟି କରନ୍ତି । ପାଳନ କରିବାର ଇଚ୍ଛାଶକ୍ତି ହେତୁ ସେ ସଗୁଣାତ୍ମକ ବିଷ୍ଣୁରୂପରେ ବିଶ୍ୱପାଳନ କରନ୍ତି । ଏବଂ ସଂହାର କରିବାର ଇଚ୍ଛାଶକ୍ତି ହେତୁ ରୁଦ୍ର ହୋଇ ବିଶ୍ୱ ସଂହାର କରନ୍ତି ।

ତେଣୁ ଏକ ହିଁ ବିଷ୍ଣୁ ସର୍ବବ୍ୟାପକ, ପରଂବ୍ରହ୍ମ, ପରମାତ୍ମା, ପୁରୁଷୋତ୍ତମ, ପୁରାଣପୁରୁଷ, ନାରାୟଣ, ରାମ, କୃଷ୍ଣ, ବାସୁଦେବ, ଜାନକୀ ବଲ୍ଲଭ, ସର୍ବସ୍ୱରୂପ ସର୍ବମୟ ଅଟନ୍ତି । ସେ ମଧ୍ୟ ଅନନ୍ତ କୋଟି ବ୍ରହ୍ମାଣ୍ଡର ନାୟକ ହୋଇ ଅନନ୍ତ କୋଟି ବ୍ରହ୍ମାଣ୍ଡରେ ଅନନ୍ତ କୋଟି ବ୍ରହ୍ମା, ବିଷ୍ଣୁ ମହେଶ୍ୱର ହୋଇ ସର୍ବମୟ ରୂପରେ ସୃଷ୍ଟି, ପାଳନ, ସଂହାର କରନ୍ତି ଏବଂ ସର୍ବରୂପ ହୋଇଯାନ୍ତି ।

ଶ୍ରୀବିଷ୍ଣୁ ମଧ୍ୟ ଦେବ-ସିଦ୍ଧ-ଯକ୍ଷ-ଅସୁର, ନାଗ-ଗନ୍ଧର୍ବ-କିନ୍ନର-ପିଶାଚ-ମନୁଷ୍ୟ, ପଶୁ-ପକ୍ଷୀ-ବୃକ୍ଷାଦି,(ଅଣ୍ଡଜ, ପିଣ୍ଡଜ, ସ୍ୱେଦଜ, ଉଦ୍ଭିଜ) ଜନ୍ଦା, ପିମ୍ପୁଡ଼ି, ସର୍ପ ଆଦି , ଆକାଶ , ପବନ, ସ୍ପର୍ଶ, ରୂପ, ରସ, ଗନ୍ଧ, ମନ, ବୁଦ୍ଧି,-ଆତ୍ମା, ଡାଳ, ଗୁଣ, ଇତ୍ୟାଦି ସବୁର ପରମାର୍ଥିକ ରୂପ ଅଟନ୍ତି । ସେ ବିଦ୍ୟା-ଅବିଦ୍ୟା, ସତ୍ୟ-ଅସତ୍ୟ, ବିଷ-ଅମୃତ ସବୁକିଛି ଅଟନ୍ତି । ବିଷ୍ଣୁ ପ୍ରତ୍ୟେକ କାର୍ଯ୍ୟର ଭୋକ୍ତା ତଥା ତାହାର ସାମଗ୍ରୀ ଏବଂ ଫଳ ମଧ୍ୟ ଅଟନ୍ତି । ସେ ଅନନ୍ତ, ଅପରିମେୟ, ସର୍ବଗାମୀ, ସର୍ବଗତ ସର୍ବରୂପରେ ସ୍ଥିତ ଅଟନ୍ତି । ସର୍ବ ଜଗତ ତାଙ୍କରି ଠାରୁ ଆବିର୍ଭୁତ ହୋଇ ତାଙ୍କରି ଠାରେ ହିଁ ସ୍ଥିତ ହୁଅନ୍ତି । ସେ ହିଁ ଅକ୍ଷୟ, ସତ୍ୟ, ନିତ୍ୟ, ଆତ୍ମାଧାର, ପରମାତ୍ମା ଅଟନ୍ତି । ଜଗତରେ ଆଦି-ମଧ୍ୟକ-ଅବସାନରେ ସେ ସ୍ଥିତ ପରମ ପୁରୁଷ ଅଟନ୍ତି ।

ବସ୍ତୁତଃ ଏହା ହେଉଛି ମୂଳ ରହସ୍ୟ ଯେ ଭଗବାନ ଶ୍ରୀବିଷ୍ଣୁ ଧର୍ମ ବିଗ୍ରହ ସତ୍ତ୍ୱରାଶି ଅଟନ୍ତି । ସତ୍ତ୍ୱରେ ସର୍ବୋତ ଭାବେ ଧର୍ମର ପ୍ରାଧାନ୍ୟ ରହିଥାଏ । ଏହି ଶୁଦ୍ଧ ସତ୍ତ୍ୱ ସ୍ୱରୂପ ଶ୍ରୀବିଷ୍ଣୁଙ୍କୁ ବେଦାନ୍ତୀମାନେ ବ୍ରହ୍ମରୂପରେ, ସାଂଖ୍ୟବାଦୀମାନେ ପୁରୁଷରୂପରେ ନ୍ୟାନିକମାନେ କର୍ତ୍ତାରୂପରେ, ମିମାଂସକମାନେ କର୍ମରୂପରେ, ଯୋଗ ଦାର୍ଶନିକ ମାନେ ଯୋଗୀ, ପରମତତ୍ତ୍ୱ ରୂପରେ ଗ୍ରହଣ କରିଛନ୍ତି ।

ଅକ୍ଷର ଅବିନାଶୀ, ସର୍ବକାରଣର କାରଣ ମହାପୁରୁଷ ଭଗବାନ ଶ୍ରୀବିଷ୍ଣୁଙ୍କର ସାକ୍ଷାତ ପରମଧାମ ବୈକୁଣ୍ଠ ଅଟେ । ସେଠାରେ ସମସ୍ତ ସତ୍ତ୍ୱ ସ୍ୱରୂପରୁ ମହିମା ଅଛି । ଶ୍ରୀମଦଭାଗବତ ଗୀତାରେ ଏହିପରିଭାବେ କୁହାଯାଇଛି:-

ନାସତୋ ବିଦ୍ୟତେଭାବୋ ନ ଭାବୋ ବିଦ୍ୟତେ ସତଃ

ଉଭୟୋରପି ଦୃଷ୍ଟୋନ୍ତ ସ୍ତନୟୋ ସ୍ତତ୍ତ୍ୱ ଦର୍ଶଭିଃ । ।

ଯେଉଁ ସତ୍ତ୍ୱମୟ ଶ୍ରୀବିଷ୍ଣୁଙ୍କ ଠାରୁ ଏହି ସଂସାର ବ୍ୟାପ୍ତ ହୋଇଅଛି ଏବଂ ଯାହାଙ୍କର ସତ୍ତା କେବେ ନଷ୍ଟ ହୁଏ ନାହିଁ ତାଙ୍କୁ ଅବିନାଶୀ ବୋଲି ସ୍ୱୀକାର କରାଯିବା ଉଚିତ୍, ସେହି ପରଂବ୍ରହ୍ମ ବିଷ୍ଣୁ ପରମଶୁଦ୍ଧ ସତ୍ତ୍ୱତ୍ତ୍ୱମୟ ସଗୁଣ ତଥା ନିର୍ଗୁଣ ଅଟନ୍ତି । ଜ୍ଞାନୀମାନେ ବିପ୍ରମାନେ ବୈଦିକ ଯାଗଯଜ୍ଞ, ଭକ୍ତଗଣ ଭକ୍ତି ଯୋଗ- ଯଜ୍ଞର, ଅନେକ ମହାବଳମ୍ବୀମାନେ ସର୍ବୋତ ଭାବେ ଯଜ୍ଞରେ ତାଙ୍କୁ ଯଜନ କରନ୍ତି ।

ଏଥିରୁ ଅନୁମିତ ହୁଏ ଯେ, ଜ୍ଞାନୀ ତଥା ଭକ୍ତ ଉପାସକମାନେ ପୂର୍ବୋକ୍ତ ଜ୍ଞାନ ଭକ୍ତି ଉପାସନା, ଯଜ୍ଞାଦି ଦ୍ୱାରା ବିଷ୍ଣୁଧାମରେ ଆନନ୍ଦ ନିବାସ କରନ୍ତି । ନିଜର ଏହି ଅବିନାଶୀ ସ୍ୱରୂପ ବିଷୟରେ ଭଗବାନ ଶ୍ରୀକୃଷ୍ଣ ଗୀତାରେ ବର୍ଣ୍ଣନା କରି କହିଛନ୍ତି । ହେ ଅର୍ଜୁନ! ମୋତେ ପ୍ରାପ୍ତ ହେବାପରେ ଜୀବର ଆଉ ପୁନର୍ଜନ୍ମ ହୁଏ ନାହିଁ ।

ବୈକୁଣ୍ଠ ଧାମରେ ମୁକ୍ତାତ୍ମା ମାନଙ୍କର ଗତି ବଡ ବିଲକ୍ଷଣ ଅଟେ । ଭାଗବତରେ କୁହାଯାଇଛି ବୈକୁଣ୍ଠଧାମରେ ମୁକ୍ତ ମାନଙ୍କର ଦେହ- ଇନ୍ଦ୍ରିୟ-ପ୍ରାଣ ମାୟିକ କିମ୍ବା ପ୍ରାକୃତିକ । ନଶ୍ୱର ହୁଏ ନାହିଁ । ଶୁଦ୍ଧ ସତ୍ତ୍ୱତ୍ତ୍ୱମୟ ସଚ୍ଚିଦାନନ୍ଦ ଭଗବାନ ବିଷ୍ଣୁଙ୍କର ଏହା ସ୍ୱରୂପ ଅଟେ । ନିଜର ପରମ ଚୈତନ୍ୟମୟ ଜ୍ଞାନାନନ୍ଦ ଦ୍ୱାରା ସେ ସମସ୍ତଙ୍କର ଚୈତନ୍ୟ ଉଦ୍ରେକ କରନ୍ତି । ଏହପରି ସର୍ବକାରଣ ସର୍ବତ୍ୟାଗୀ, ଗୁଣାତୀତ, ଦ୍ୱନ୍ଦାତୀତ, ଆନନ୍ଦରସାନନ୍ଦ, ରସସାରଜ୍ଞ ଶ୍ରୀବିଷ୍ଣୁ ଭଗବାନଙ୍କୁ ମୁଁ କୋଟି ନମସ୍କାର କରୁଅଛି ।

ସରବେରଣି, ପୋ.ଅ - ସାଆନ୍ଦା
ଜି. ଢେଙ୍କାନାଳ-୭୫୯୦୧୯



# ଅଚ୍ୟୁତାନନ୍ଦଙ୍କ ଦୃଷ୍ଟିରେ ଶ୍ରୀଜଗନ୍ନାଥ

ଦିଲ୍ଲୀପ କୁମାର ବେହୁରା



ପୁରୁଷୋତ୍ତମ କ୍ଷେତ୍ର କହିଲେ ଶ୍ରୀକ୍ଷେତ୍ର, ଯେଉଁଠି ଜଗତରନାଥ ମହାପ୍ରଭୁଙ୍କର ଅପାର କରୁଣାର ବାରି ବିଛାଡିହୋଇପଡେ ଜଗତର ଭକତମାନଙ୍କ ପାଇଁ । ସକଳତୀର୍ଥ ମଧ୍ୟରୁ ମହାତୀର୍ଥ ପୁରୀ ଚାରିଧାମରୁ ବଡ ଧାମ ବୋଲି ପରିଗଣିତ ହୁଏ । ଚତୁର୍ଦ୍ଧାମୂରତୀ କହିଲେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କୁ ନେଇ ଏ କ୍ଷେତ୍ରଟିର ମହିମା କାହିଁ କେଉଁକାଳୁ ଅଛି । ଅଦ୍ୟାବଧି ସେ ବିଷୟରେ ଐତିହାସିକମାନଙ୍କଠାରୁ ଆରମ୍ଭ କରି ପ୍ରତ୍ନତତ୍ତ୍ୱବିତ୍ ଓ ଗବେଷକ ପର୍ଯ୍ୟନ୍ତ ସେମାନଙ୍କର ଗବେଷଣା ଜାରି ରଖିଛନ୍ତି । ଜଗନ୍ନାଥଙ୍କର ମହିମା ଅପାର । ବହୁ ଗ୍ରନ୍ଥ ପୁରାଣ କିମ୍ବଦନ୍ତୀ ଜଗନ୍ନାଥଙ୍କର ଆବିର୍ଭାବ ସଂପର୍କରେ ଭିନ୍ନ ଭିନ୍ନ ରୂପ ଦେଲେ ମଧ୍ୟ ଏହା ଯେ ବହୁ ପୁରୁଣା ତାହା ସମସ୍ତେ ସ୍ୱୀକାର କରିଛନ୍ତି । ସାରଳା ଦାସଙ୍କଠାରୁ ଆରମ୍ଭ କରି ବଳରାମ ଦାସ ଜଗନ୍ନାଥ ଦାସ, ଯଶୋବନ୍ତ ଦାସ, ଅନନ୍ତ ଦାସ ଏବଂ ଅଚ୍ୟୁତାନନ୍ଦ ଦାସ ପଞ୍ଚସଖାଙ୍କ ପର୍ଯ୍ୟନ୍ତ ବହୁ ସନ୍ଥ ମୁନୀ ଜ୍ଞାନୀମାନେ ଜଗନ୍ନାଥଙ୍କ ମହିମାକୁ ଲୋକାଭିମୁଖୀ କରାଇ ଓଡିଶାକୁ ଜଗନ୍ନାଥ ଦେଶରେ ପହଞ୍ଚାଇ ପାରିଥିଲେ । ଦ୍ୱାପର ଯୁଗରେ ଶ୍ରୀକୃଷ୍ଣଙ୍କର ଲୀଳାଖେଳା ପରେ ଜରାଶବରର ତୀରରେ ଆହତ ହୋଇ ଦେହାବସାନ ପରେ ଏହି ଦାରୁରୂପ ନେଇଥିଲେ ବୋଲି କେତେକ ମତଦେଇଥିବାବେଳେ କେହି କେହି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ସମୟରୁ ଜଗନ୍ନାଥଙ୍କ ଆବିର୍ଭାବ ହୋଇଥିଲା ବୋଲି କୁହନ୍ତି । ରାମାୟଣ, ମହାଭାରତରେ ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀସ୍ଥିତି ସମ୍ବନ୍ଧରେ ଥିବାରୁ ଏହା ନିଶ୍ଚିତ ଯେ ଜଗନ୍ନାଥ ତତ୍ତ୍ୱ ସବୁଠାରୁ ପ୍ରାଚୀନ । ଅକ୍ଷୟବଟ ମହାପ୍ରଳୟ ସମୟରେ ମଧ୍ୟ ଲୀନ ହୋଇନଥିଲା ବୋଲି ପୁରାଣରେ ବର୍ଣ୍ଣନା କରାଯାଇଅଛି, ଯେଉଁ ଅକ୍ଷୟବଟ ମୂଳରେ ମାର୍କଣ୍ଡେୟ ଋଷି ଭାସି ଆସି ଆଶ୍ରୟ ନେଇଥିଲେ । ତୁଳସୀ ଦାସଙ୍କ ଠାରୁ ଆରମ୍ଭ କରି ଚୈତନ୍ୟ ମହାପ୍ରଭୁ, ଜୟଦେବ. ଶଙ୍କରାଚାର୍ଯ୍ୟଙ୍କ ପର୍ଯ୍ୟନ୍ତ ବହୁ ସନ୍ଥ ମୁନି ଋଷିଙ୍କର ଶ୍ରୀକ୍ଷେତ୍ରରେ ଉପସ୍ଥିତି ସୂଚାଇଦିଏ ଜଗନ୍ନାଥ ମହାପ୍ରଭୁଙ୍କର ମାହାତ୍ମ୍ୟ ଓ ଗୁରୁତ୍ୱକୁ । ଇନ୍ଦ୍ରଭୁତିଙ୍କ ଜ୍ଞାନସିଦ୍ଧ ବହିରେ ମଧ୍ୟ ଜଗନ୍ନାଥଙ୍କ ମହିମା ପରିଲକ୍ଷିତ ହୁଏ ।

ଷୋଡଶ ଶତାବ୍ଦୀରେ ପଞ୍ଚସଖାଙ୍କର ପ୍ରାଣପିଣ୍ଡ ଥିଲେ ଜଗନ୍ନାଥ । ସେମାନେ ସେମାନଙ୍କର ଛାଡିଯାଇଥିବା କୃତିମାନଙ୍କରେ ଏହା ପ୍ରତିପାଦନ କରି ଓଡିଆ ସାହିତ୍ୟକୁ ରସାଳିତ କରିବା ସହ ପ୍ରତ୍ୟେକ ଓଡିଆ ପ୍ରାଣରେ ଜଗନ୍ନାଥ ତତ୍ତ୍ୱକୁ ପହଞ୍ଚାଇ ପାରିବାକୁ ସକ୍ଷମ ହୋଇଥିଲେ । ଚକାଆଖିକାଳିଆ ଠାକୁର ହେଲେ ଶୂନ ଦେବତା । ଏହି ବାଦର ପ୍ରଚାରକ ହେଲେ ଅଚ୍ୟୁତାନନ୍ଦ ଦାସ । ଜଗନ୍ନାଥ ସକଳ ଶକ୍ତିର ଆଧାର । ବିଶ୍ୱନିୟନ୍ତା । ତାଙ୍କରି ଇଶାରରେ ଏ ବ୍ରହ୍ମାଣ୍ଡ ଚାଲେ । ପ୍ରତ୍ୟେକ ଜୀବର ଶରୀରରେ ସେ ଅନୁଭବ କରୁଥିଲେ ଶ୍ରୀକ୍ଷେତ୍ରର ଶ୍ରୀଜଗନ୍ନାଥଙ୍କୁ ତାଙ୍କର ରଚିତ ଶୂନ୍ୟ ସଂହିତାରେ ସେ ଜଗନ୍ନାଥ ତତ୍ତ୍ୱକୁ ନିଖୁଣ ଭାବେ ବର୍ଣ୍ଣନା କରିଯାଇଛନ୍ତି । ହିନ୍ଦୁ ଧର୍ମରେ ଜଗନ୍ନାଥ ମହାପ୍ରଭୁଙ୍କର ଗୁରୁତ୍ୱ ସର୍ବାଗେ ବିଦିତ ବୋଲି ତାଙ୍କ ରଚନାବଳୀ ମାନଙ୍କରୁ ଜଣାପଡେ । ଶ୍ରୀକ୍ଷେତ୍ରକୁ ମର୍ତ୍ତ୍ୟର ବୈକୁଣ୍ଠ ବୋଲି ମଧ୍ୟ ସେ କହିଛନ୍ତି । ଜଗନ୍ନାଥଙ୍କଠାରୁ ହିଁ ସମସ୍ତ ଅବତାର ସୃଷ୍ଟି ହୋଇଛି । ସୁଭଦ୍ରା, ଜଗନ୍ନାଥ ଓ ବଳଭଦ୍ରଙ୍କୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ବୋଲି କୁହାଯାଏ । ଦ୍ୱାପର ଯୁଗରେ ବ୍ରହ୍ମା ଅଭିଶାପ ପାଇ ସୁଭଦ୍ରା ରୂପେ ଜନ୍ମ ହୋଇଥିଲେ ବୋଲି ଯଶୋବନ୍ତ ଦାସ ଲେଖିଛନ୍ତି ।

ଆମ୍ଭେ ଶ୍ରୀଜଗନ୍ନାଥ ଦେହୀ
ବ୍ରହ୍ମା ସୁଭଦ୍ରା ହୋଇ ତହିଁ
ରାଧା ଗୁପତ ଅଙ୍ଗ ହେଉ
ଆମ୍ଭ ସଙ୍ଗତେ ପୂଜା ପାଉ
ଗୁପତ ସ୍ତିରୀ ରୂପ ହେଉ ବ୍ରହ୍ମାବୋଲିଣ ନ ବୋଲାଉ
ସ୍ତିରୀ ସ୍ୱରୂପ ବାତ୍ର ଧରି ।

ଜଗନ୍ନାଥଙ୍କୁ ତାତ୍ତ୍ୱିକ ଦୃଷ୍ଟି କୋଣରୁ ଉର୍ଦ୍ଧ୍ୱକୁ ନେଇ ଅଚ୍ୟୁତାନନ୍ଦ ଶୂନ୍ୟ ସଂହିତାରେ ଅନ୍ତିମ ପର୍ଯ୍ୟାୟରେ ଲେଖିଛନ୍ତି -

'ଅବତାରଯେତେ ଯେହି ଜଗନ୍ନାଥ ଅଙ୍ଗରୁ କ୍ଷରିମିଶନ୍ତି
ଲୀଳା ନିମନ୍ତେ ସେ ନିଳାଦ୍ରୀ ନାୟେକ ନିର୍ବିକାରେ ବସିଛନ୍ତି ।'

ଜଗନ୍ନାଥଙ୍କୁ କେତେକ ଜାଗାରେ ଅଚ୍ୟୁତାନନ୍ଦ ନିରାକାର ଅଦେହୀ ବୋଲି କହିବାକୁ ପଛାଇ ନାହାନ୍ତି । ତାଙ୍କର ପ୍ରତ୍ୟେକ ଲେଖାରେ ବହୁତ ବଡ କରି ତୋଳିଛନ୍ତି । ଜଗନ୍ନାଥ ସଂସ୍କୃତି ଉତ୍କଳୀୟ ଚେତନାର ମୂଳ ପିଣ୍ଡ । ଜଗନ୍ନାଥ ହିଁ ସେମାନଙ୍କର ଆରାଧ୍ୟ ଦେବତା । ବହୁ ମୁନି ଋଷିମାନେ ଶ୍ରୀକ୍ଷେତ୍ରକୁ ଶ୍ରୀଜଗନ୍ନାଥଙ୍କର ଦର୍ଶନ ନିମିତ୍ତ ଆସିବାର ଦୃଷ୍ଟାନ୍ତମାନ ଅଛି । ଶଙ୍କରାଚାର୍ଯ୍ୟଙ୍କ ଠାରୁ ଆରମ୍ଭ କରି ରାମାନୁଜ,





ବଲ୍ଲଭାଚାର୍ଯ୍ୟ, ଶ୍ରୀଚୈତନ୍ୟ, ତୁଳସୀ ଦାସ ଓ ଜୟଦେବଙ୍କ ଭଳି କେତେ ବଡ ବଡ ସନ୍ଥ ବଡ ଦାଣ୍ଡର ଧୂଳି ମୁଣ୍ଡରେ ମାରି ଜଗନ୍ନାଥ ମହାପ୍ରଭୁଙ୍କୁ ଦର୍ଶନ କରି ନିଜ ନିଜର ଜୀବନକୁ ଧନ୍ୟ ମନେ କରିଛନ୍ତି । ଅଚ୍ୟୁତାନନ୍ଦ ୮୪ ମନ୍ତ୍ରକଥା ତାଙ୍କ ଗ୍ରନ୍ଥରେ ଲେଖିଯାଇଛନ୍ତି । ଏହା ସାଧନାର ଏକ ବଡ ମାନଦଣ୍ଡ । ତାଙ୍କ ଲେଖାର ପ୍ରତିକ୍ଷେତ୍ରରେ ସେ ଜଗନ୍ନାଥ ମହାପ୍ରଭୁଙ୍କ ଗୁରୁତ୍ୱକୁ ମୂଳ ଆଧାର ରୂପେ ନେଇଥିଲେ ।

ଅଚ୍ୟୁତାନନ୍ଦଙ୍କର ବିଭିନ୍ନ ଗ୍ରନ୍ଥମାନଙ୍କରୁ ସୂଚନା ମିଳିଥାଏ ସେ ପଞ୍ଚସଖା ସମୟରେ ଜଣେ ବଡ ଧର୍ମସଂସ୍କାରକ ଥିଲେ । ହିନ୍ଦୁଧର୍ମର ମୌଳିକତା ରକ୍ଷାକରିବାରେ ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥ ତତ୍ତ୍ୱ ନିଶ୍ଚିତ ଭାବେ ଅଗ୍ରଗଣ୍ୟ । ଜାତିପ୍ରଥା ପ୍ରତି ବୀତସ୍ପୃହ ହୋଇ ପଡିଥିଲେ ବୋଲି ଅଚ୍ୟୁତାନନ୍ଦଙ୍କ ନିଜ ସମ୍ବନ୍ଧୀୟ ଲେଖାରୁ ସମ୍ୟକ ସୂଚନା ମିଳିଥାଏ ।

ନାହିଁ ମୋହର ବିପ୍ର ବର୍ଣ୍ଣେ ଆଶା
କ୍ଷତ୍ରୀୟ ବୈଶ୍ୟରେ ନାହିଁ ଭରସା
ସାନ ହେଲେ ମନ ସରୁଆ ହୋଇ
ତହୁଁ ଅଚ୍ୟୁତ ଯେ ଶୁଦ୍ର ବୋଲାଇ ।

ବାସ୍ତବରେ ସେ ଉଚ୍ଚ ଜାତି କରଣ କୂଳ(ଖୁଣ୍ଟିଆ ସାଙ୍ଗିଆ) ରେ ଥିଲେ ମଧ୍ୟ ନିଜକୁ ଶୁଦ୍ର ବୋଲି କହିବାକୁ ତିଳେ ହେଲେ କୁଣ୍ଠାବୋଧ କରିନଥିଲେ । ସେ ସମୟର ଅବସ୍ଥାକୁ ହୃଦୟଙ୍ଗମ କରି ଏହି ଜାତିପ୍ରଥା ଉପରେ ସେ ଏହିଭଳି ଭାବରେ ଲେଖିଛନ୍ତି । ସେ ସବୁ ଜାତିକୁ ଗୁରୁତ୍ୱ ଦେଉଥିଲେ । ସେଥିନିମନ୍ତେ କୈବର୍ତ୍ତ୍ୟ ଗୀତା, ଗୋପାଳ ଓଗାଳ, ସାତଖଣ୍ଡିଆ ହରିବଂଶ ପ୍ରଭୃତି ଏହାର ନିଦର୍ଶନ । ଢଗଢମାଳୀ ଠାରୁ ଆରମ୍ଭ କରି ଚୌତିସା, ଜ୍ୟୋତିଷ, ପ୍ରଶ୍ନ ଶାସ୍ତ୍ର, କୀର୍ତ୍ତନ, ମନ୍ତ୍ରବିଦ୍ୟା, ଅଣାକାର ସଂହିତା, ଦଶପଟଳ, ମାଳିକା, ଭଜନ, ଜଣାଣ ଏବଂ ଆହୁରି ଅନେକ ରଚନା କରି ଓଡିଆ ସାହିତ୍ୟ ଓ ପଞ୍ଚସଖା ସମୟର ଜଣେ ବଡ ସନ୍ଥଟିଏ ହୋଇପାରିଥିଲେ । ଜଗନ୍ନାଥ ହିଁ ହର୍ତ୍ତା କର୍ତ୍ତା ଦଇବ ବିଧାତା । ତାଙ୍କ ବିନା ଏ ସଚରାଚର ବ୍ରହ୍ମାଣ୍ଡର ସ୍ଥିତି ଅସମ୍ଭବ ।

ଏଥିରୁ ଅନୁମେୟ ହୁଏ ଜାତିପ୍ରଥାର ବିରୋଧରେ କେଉଁପ୍ରକାରର ଚିନ୍ତାଧାରା ତାଙ୍କର ସେ ସମୟରେ ଥିଲା । ଦ୍ୱାପର ଯୁଗରେ କୃଷ୍ଣ ଲୀଳାଖେଳା ଶେଷ କରିବା ଅନ୍ତେ ନୀଳାଚଳରେ ଦାରୁବ୍ରହ୍ମ ହୋଇ ପୂଜା ପାଇଲେ । ବ୍ରାହ୍ମଣ, ଚଣ୍ଡାଳ, ବୈଶ୍ୟ, ଶୁଦ୍ର ସମସ୍ତେ ଏକତ୍ରଭାବେ ବସି ଆନନ୍ଦ ବଜାରରେ ଛଡାଛଡି ହୋଇ ଖାଇବାର ପରମ୍ପରା ହିଁ ଜଗନ୍ନାଥ କ୍ଷେତ୍ରରେ ମାହାତ୍ମ୍ୟକୁ ପ୍ରତିପାଦିତ କରେ ।

ଜ୍ଞାନ ହିଁ ସମାଜରୁ ମଣିଷକୁ ଜନ୍ମ ମୃତ୍ୟୁର ଉର୍ଦ୍ଧକୁ ନେଇପାରେ । ସେଥିପାଇଁ ପରଂ ବ୍ରହ୍ମଙ୍କର ନାମ ଭଜନହିଁ ପ୍ରକୃତ କର୍ତ୍ତବ୍ୟ ବୋଲି ସେ ଗୁରୁତ୍ୱ ଦେଉଥିଲେ । ଯାହା ଶୂନ୍ୟସଂହିତାରେ ଅଛି ।

ନାମକୁ ଭଜିଲେ ସିନା ଗତିମୁକ୍ତି ହୋଇ
ପିଣ୍ଡକୁ କାରଣ ନାମ ବିନୁ ଆନନାହିଁ ।

ସ୍ଥିର ଚିତ୍ତରେ ନାମଭଜନ ଉପରେ ସେ ଗୁରୁତ୍ୱ ପ୍ରଦାନ କରୁଥିଲେ । ଶ୍ରୀକ୍ଷେତ୍ରକୁ ଅଚ୍ୟୁତାନନ୍ଦ ତାଙ୍କର ଶୂନ୍ୟସଂହିତାର ପ୍ରଥମ ଭାଗରେ କେନ୍ଦ୍ରବିନ୍ଦୁ କରିଛନ୍ତି ।

ବାସ୍ତବରେ ପଞ୍ଚସଖାଙ୍କ ମଧ୍ୟରୁ ଅଚ୍ୟୁତାନନ୍ଦ ନିଶ୍ଚିତଭାବେ ଜଗନ୍ନାଥତତ୍ତ୍ୱର ଗୁରୁତ୍ୱକୁ ଉପଲବ୍ଧି କରି ତାକୁ ନିଜର ଲେଖନୀ ମାଧ୍ୟମରେ କେତେକେତେ ଗ୍ରନ୍ଥ ମାନଙ୍କରେ ଲେଖି ଧାର୍ମିକ ଚେତନାକୁ ଉର୍ଦ୍ଧ୍ୱଗାମୀ କରିବା ସହିତ ଓଡିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଯାଇଛନ୍ତି । ପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀଜଗନ୍ନାଥ ଦାରୁବ୍ରହ୍ମ ମୂରତୀ ରୂପେ ବିଦ୍ୟମାନ । ଜଗତର ତ୍ରାଣକର୍ତ୍ତା ହେଲେ ନିଳାଚଳବାସୀ । ପତିତମାନଙ୍କ ଉଦ୍ଧାର ନିମନ୍ତେ ନାମ ବହିଛନ୍ତି ପତିତପାବନ । କଳିଯୁଗରେ ମହାପ୍ରଭୁଙ୍କର, ଏ ଅବତାର । ଅଚ୍ୟୁତାନନ୍ଦଙ୍କ ଅଚ୍ୟୁତମାଳିକାକୁ ତର୍ଜମା କଲେ ସେ କେତେବଡ ଭକ୍ତ ଜଗନ୍ନାଥଙ୍କର ଥିଲେ ଏବଂ କେଉଁ ପ୍ରକାରର କରୁଣା ପାଇ ଏଭଳି ମାଳିକା ଲେଖିବାକୁ ସକ୍ଷମ ହୋଇଥିଲେ ତାହା ଜଣାପଡେ । ଉତ୍କଳୀୟ ଭାଷା ସଂସ୍କୃତି ପରଂପଂରା ଓ ଧର୍ମର ବଡ ରକ୍ଷକ ଥିଲେ ଅଚ୍ୟୁତାନନ୍ଦ । ଯଦିଓ ଜଗନ୍ନାଥଙ୍କୁ ଅହେଦୀ, ନିରାକାର ଅନନ୍ତ, ଅନ୍ତର୍ଯ୍ୟାମୀ, ଶୂନ୍ୟବାସୀ, ଶୂନ୍ୟଦେହୀମାନ ଶବ୍ଦ ତାଙ୍କ ଲେଖାମାନଙ୍କରେ ବ୍ୟବହାର କରୁଥିଲେ କିନ୍ତୁ ଜଗନ୍ନାଥଙ୍କ ସତ୍ତା ସେ ଅନୁଭବ କରୁଥିଲେଦାରୁବ୍ରହ୍ମ ନୀଳାଚଳବାସୀଙ୍କ ମୂର୍ତ୍ତିରେ । ଅଚ୍ୟୁତାନନ୍ଦଙ୍କର ମାଳିକାଠାରୁ ଆରମ୍ଭ କରି ଜଣାଣ ,ଭଜନ ଏବେବି ଉତ୍କଳୀୟ ଗ୍ରାମ୍ୟ ସମୂହରେ ପୂର୍ବବତ୍ ଅକ୍ଷୁଣ୍ଣ ଭାବେ ବ୍ୟବହୃତ ହେବାର ଦେଖାଯାଏ । ବଳରାମ, ଜଗନ୍ନାଥ, ଯଶୋବନ୍ତ, ଅନନ୍ତ ଏବଂ ଅଚ୍ୟୁତାନନ୍ଦ ମିଳିତ ଭାବେ ମାନବବାଦ ଧର୍ମ ଉପରେ ଗୁରୁତ୍ୱ ଦେଉଥିଲେ । ତନ୍ମଧ୍ୟରୁ ଏହିବାଦର ମୁଖ୍ୟ ପୁରୋଧା ଥିଲେ ସନ୍ଥ ଅଚ୍ୟୁତାନନ୍ଦ । ନିଜକୁ ଯେତେ ନ୍ୟୂନ କରି ସମାଜର ମଙ୍ଗଳ ପାଇଁ ଚେଷ୍ଟିତହେବ ସେତେ ପ୍ରଭୁ କୃପାର ପାତ୍ର ହେବ ବୋଲି ଏମାନଙ୍କର ବିଶ୍ୱାସ ଥିଲା । ଭବସାଗରରୁ ପାରିହେବାକୁ ହେଲେ ଜଗନ୍ନାଥଙ୍କ କରୁଣାର ଆବଶ୍ୟକତା ଅଛି । ବାହ୍ୟଆଡମ୍ବର ଓ ଉପଚାରରେ ଧର୍ମ ରହିଲେ ତାହା ପ୍ରକୃତ ଧର୍ମ ନୁହେଁ ବୋଲି ଅଚ୍ୟୁତଙ୍କର ନିଜସ୍ୱ ମତ ଥିଲା । ନିଷ୍ଠାର ସହ ନାମ ଭଜନରେ ପ୍ରକୃତ ସତ୍ତାକୁ ଆପଣେଇ ପାରିବା ସମ୍ଭବ ବୋଲି ସେ କହୁଥିଲେ । ତେଣୁ ତାଙ୍କ ଦୃଷ୍ଟିରେ ଦାରୁବ୍ରହ୍ମ ମହାପ୍ରଭୁ ଜଗନ୍ନାଥ ହେଲେ -

ବନ୍ଦଇ ଶ୍ରୀ ଶଙ୍ଖନାଭି ଗୋଲକ ପାଟଣା
ମହୋଦଧି ବେଢିଅଛି କଳ୍ପବଟ ସୀମା
ଚାରିପାଶେ ଚାରିମଠ ମଧ୍ୟରେ ତ୍ରିକୂଟ
ଅବିନାସୀ ବ୍ରହ୍ମ ତହିଁ କଇବଲ୍ୟ ହାଟ
ନୀଳଚକ୍ର ପରେ ଉଡେ ପତିତପାବନ
ରତ୍ନସିଂହାସନେ ବିଜେ ଚତୁର୍ଦ୍ଧାରୂପେଣ ।

ଗ୍ରାମ-ପୋଖରୀଆ
ପୋଅ-ମହୁଲିଆ
ରାଜନଗର, କେନ୍ଦ୍ରାପଡା



# ବିଚିତ୍ର ଦେବତାର ବିଚିତ୍ର ଲୀଳା

ଡକ୍ଟର ସିଦ୍ଧାର୍ଥ କାନୁନ୍‌ଗୋ

ପରଂ ବ୍ରହ୍ମାପୀଡ୍ୟଃ କୁବଳୟଦଳୋତ୍‌ଫୁଲ୍ଲ ନୟନୋ
ନିବାସୀ ନୀଳାଦ୍ରୌ ନିହିତ ଚରଣୋନନ୍ତ ଶିରସି
ରସାନନ୍ଦୀରାଧା ସରସପୁରାଲିଙ୍ଗନସୁଖୋ
ଜଗନ୍ନାଥ ସ୍ୱାମୀ ନୟନପଥଗାମୀ ଭବତୁମେ ।

ଶ୍ରୀ ଜଗନ୍ନାଥାଷ୍ଟକମ୍

ଏହାର ଓଡ଼ିଆ ପଦାନୁବାଦ ଏପରି ଅଟେ-
ନିରାକାର ବ୍ରହ୍ମ ହୋଇ ସର୍ବ ପୂଜ୍ୟ ଉତ୍ପଳ ଦଳ ନୟନ
ନୀଳଗିରି ବାସୀ ଅନନ୍ତଙ୍କ ଶିରେ ସ୍ଥାପିଛ ପଦ୍ମ ଚରଣ ।
ଶ୍ରୀ ରାଧାଦେବୀଙ୍କ ପ୍ରେମପୂର୍ଣ୍ଣତନୁ ଆଲିଙ୍ଗନରେ ବିଭୋର
ପ୍ରଭୁ ଜଗନ୍ନାଥ ନୟନର ପଥେ ଗୋଚର ହୁଅନ୍ତୁ ମୋର ।



ଶ୍ରୀ ମନ୍ଦିରର ଆରାଧ୍ୟ ଦେବତା ହେଉଛନ୍ତି ପୁରୁଷୋତ୍ତମ ଶ୍ରୀଜଗନ୍ନାଥ । ନାନା ଧର୍ମ, ଦର୍ଶନ, ଚିନ୍ତା ଓ ଚେତନା ମଧ୍ୟରେ ପ୍ରଭୁଙ୍କ କଳ୍ପନା ଅବ୍ୟକ୍ତ, ଅସୀମ ଓ ଅଚିନ୍ତ୍ୟ ।

ଅନ୍ୟ ସବୁ ମନ୍ଦିରରେ ଠାକୁରଙ୍କ ଚଳନ୍ତି ପ୍ରତିମା ବିଭିନ୍ନ ଯାନି ଯାତ୍ରାରେ ବିଜେ କରିଥାନ୍ତି ।କିନ୍ତୁ ଇଏ ଏକମାତ୍ର ଠାକୁର ଯିଏ ନଅ ଦିନ ଧରି ଗର୍ଭଗୃହରୁ ବାହାରି ପୁଣି ମନ୍ଦିର ପ୍ରତ୍ୟାବର୍ତ୍ତନ କରିଥାନ୍ତି । ଜନମାନସରେ ଜଗନ୍ନାଥ ଧର୍ମ ବା ସଂସ୍କୃତି ଯେପରିଭାବେ ପ୍ରତିଭାତ ହୋଇଛି, ତାହା ଅନନ୍ୟ ସାଧାରଣ । ଇଏ ହେଉଛନ୍ତି ସେହି ଜଗନ୍ନାଥ ଯାହାଙ୍କୁ ଶବରମାନେ ଦାରୁଦେବତା ଭାବେ ପୂଜା କରିଛନ୍ତି । ବୈଷ୍ଣବମାନେ ତାଙ୍କୁ ଶ୍ରୀପତି, ଶାକ୍ତମାନେ ଶକ୍ତି, ଶୈବମାନେ ଭୈରବ, ବୌଦ୍ଧମାନେ ବୁଦ୍ଧ ଓ ଜୈନମାନେ ଋଷଭଦେବ ରୂପେ ପରିକଳ୍ପନା କରିଛନ୍ତି । ଏବେ ମଧ୍ୟ ବୈଷ୍ଣବ, ଶୈବ, ଶାକ୍ତ ଇତ୍ୟାଦି ବିଭିନ୍ନ ମତବାଦର ପୂଜାବିଧି ଶ୍ରୀମନ୍ଦିରରେ ପ୍ରଚଳିତ । ବିଭିନ୍ନ ଧର୍ମ ଦର୍ଶନ, ସଂସ୍କୃତି ତଥା ଆଚରଣକୁ ଧାରଣ କରି ଶ୍ରୀଜଗନ୍ନାଥ ଧର୍ମ ତଥା ସଂସ୍କୃତି ଏକ ଚିରନ୍ତନ ସମନ୍ୱୟର ପ୍ରତୀକଭାବେ ବିଦ୍ୟମାନ ।

ଜଗନ୍ନାଥ ସଂସ୍କୃତିର ଏକ ନିଜସ୍ୱ ସ୍ୱାତନ୍ତ୍ର୍ୟ ଏବଂ ବୈଶିଷ୍ଟ୍ୟ ଅଛି । ଉତ୍ତର ଓ ଦକ୍ଷିଣ ଭାରତର ମଧ୍ୟସ୍ଥଳରେ ଓଡ଼ିଶା ରହି ତାର ଏକ ନିଜସ୍ୱ ସଂସ୍କୃତି ବଜାୟ ରଖିଛି: ଯାହା ଜଗନ୍ନାଥ ସଂସ୍କୃତିଭାବେ ବିଦ୍ୟମାନ । ଜଗନ୍ନାଥ ସଂସ୍କୃତି ଉତ୍ତର ଭାରତ ଓ ଦକ୍ଷିଣ ଭାରତ ମଧ୍ୟରେ ଏକ ସଂଯୋଗକାରୀ ସାଂସ୍କୃତିକ ସେତୁ ରୂପେ ଆଦିବାସୀଙ୍କ ଦ୍ୱାରା ପୂଜିତ ହୋଇ ପରବର୍ତ୍ତୀ ସମୟରେ ପୂର୍ଣ୍ଣ ବିକଶିତ ବ୍ରାହ୍ମଣ୍ୟ ଧର୍ମର ସର୍ବଶ୍ରେଷ୍ଠ ଦେବତାରୂପେ ପୂଜା ପାଇଆସୁଛନ୍ତି ।

ଆଜି ମନକୁ ଏହି ପ୍ରଶ୍ନ ବାରମ୍ବାର ଆନ୍ଦୋଳିତ କରୁଛି- କିଏ ଇଏ ଜଗନ୍ନାଥ? ଏହାଙ୍କ ସ୍ୱରୂପ କଣ ? ଏ ବିଷୟରେ ବହୁ ତାତ୍ତ୍ୱିକ ଆଲୋଚନା ହୋଇସାରିଲାଣି । ଭବିଷ୍ୟତରେ ମଧ୍ୟ ହେବ । ସେତ ସ୍ୱୟଂ ପରଂବ୍ରହ୍ମ । ବ୍ରହ୍ମଙ୍କ ବର୍ଣ୍ଣନା ଅସମ୍ଭବ ବୋଲି ବେଦରେ ସ୍ୱୀକାର କରାଯାଇଛି । ଯେ ଅନନ୍ତ ଓ ଅସୀମ- ତାଙ୍କ ବିଷୟରେ ବର୍ଣ୍ଣନା କରିବା ଆମର ଧୃଷ୍ଟତା ନୁହେଁ କି ? ଦାର୍ଶନିକଙ୍କ ମତରେ To define Him is to limit him, to do determine Him is to negate Him, of Him we can only say that He is .ଅନ୍ୟଭାଷାରେ କହିବାକୁ ଗଲେ ତାଙ୍କର ଅର୍ଥାତ୍ ଇଶ୍ୱରଙ୍କ ସଜ୍ଞାନିରୂପଣର ଅର୍ଥ ତାଙ୍କୁ ସୀମାବଦ୍ଧ କରିବ । ତାଙ୍କ ବିଷୟରେ ଦୃଢଭାବେ କିଛି କହିବା ଅର୍ଥ ତାଙ୍କୁ ଅସ୍ୱୀକାର କରିବା ତାଙ୍କ ବିଷୟରେ କେବଳ ଏତିକିମାତ୍ର କୁହାଯାଇପାରେ ଯେ, ସେ ଅଛନ୍ତି ।

ବିବିଧତା ମଧ୍ୟରେ ଏକତ୍ୱ ହେଉଛି ଶ୍ରୀଜଗନ୍ନାଥଙ୍କ ଅନନ୍ତ ଲୀଳାର ବୈଶିଷ୍ଟ୍ୟ । ସବୁଧର୍ମର ସାଧୁସନ୍ଥମାନେ ଶ୍ରୀଜଗନ୍ନାଥଙ୍କ ଠାରେ ଉପଲବ୍ଧି କରିଛନ୍ତି ନିଜ ଉପାସ୍ୟ ଦେବତାଙ୍କ ସତ୍ତା । ଯିଏ ତାଙ୍କୁ ରୂପରେ ଡାକିଛି ସେହି ରୂପରେ ସେ ତାକୁ ଦେଖାଦେଇଛନ୍ତି ।

ସେଦିନ ସ୍ନାନ ପୂର୍ଣ୍ଣମା । ସ୍ନାନ ବେଦୀରେ ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରି ଗଣେଶ ଭକ୍ତ ଗଣପତି ଭଟ୍ଟ ଅନୁଭବ କଲେ ଇଏ ଜଗନ୍ନାଥ ନୁହନ୍ତି । ତାଙ୍କ ଉପାସ୍ୟ ଦେବତା ଶ୍ରୀଗଣେଶ । ତେଣୁ ସେହି ଦିନଠାରୁ ସ୍ନାନପୂର୍ଣ୍ଣମୀ ଦିନ ମହାପ୍ରଭୁ ଗଜାନନ ବେଶ ଧାରଣ କରନ୍ତି । ଠିକ୍ ସେହିପରି ସେଦିନ କାହିଁ କେତେ ଦୂରରୁ ଧାଇଁ ଆସିଥିଲେ ଗୋସ୍ୱାମୀ ତୁଳସୀ ଦାସ । ଇଚ୍ଛାଥିଲା ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରି ନିଜ ଅଭିଳାଷ ପୂରଣ କରିବେ । ମାତ୍ର ଶ୍ରୀମନ୍ଦିରର ରତ୍ନବେଦୀ ନିକଟରେ ସେ ଦେଖୁଛନ୍ତି କଣ ? ତାଙ୍କୁ ମନେହେଲା ଶ୍ରୀଜଗନ୍ନାଥଙ୍କ ପରିବର୍ତ୍ତେ ସେ ଦର୍ଶନ କରୁଛନ୍ତି





ସ୍ୱୟଂ ଶ୍ରୀରାମଚନ୍ଦ୍ର, ଲକ୍ଷ୍ମଣ ଓ ମା ଜାନକୀଙ୍କୁ । ସନ୍ଥ ତୁଳସୀଦାସଙ୍କ ଚିନ୍ତା ଓ ଚେତନାକୁ ସମ୍ମାନ ଜଣାଇ ସେହିଦିନଠାରୁ ପୁଷ୍ୟାଭିଷେକ ଯାତ୍ରା ଅବସରରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ଦେବୀ ସୁଭଦ୍ରା ଯଥାକ୍ରମେ ଶ୍ରୀ ରାମ ଚନ୍ଦ୍ର, ଲକ୍ଷ୍ମଣ ଓ ମା ସୀତାଙ୍କ ବେଶ ଧାରଣ କରୁଛନ୍ତି ।

ଶ୍ରୀଜଗନ୍ନାଥ ହେଉଛନ୍ତି ଉତ୍କଳୀୟ ସଂସ୍କୃତି ତଥା ଜନଜୀବନର ପ୍ରାଣକେନ୍ଦ୍ର । ଶ୍ରୀଚୈତନ୍ୟଙ୍କ ଠାରୁ ଆରମ୍ଭ କରି ନାନକ, କବୀର, ତୁଳସୀଦାସ, ଶଙ୍କର ଇତ୍ୟାଦି ବହୁ ସାଧୁ ସନ୍ଥ ପର୍ଯ୍ୟାୟକ୍ରମେ ପବିତ୍ର ପୁରୀଧାମକୁ ଆସିଛନ୍ତି । ଏମାନେ ଏମାନଙ୍କ ଚିନ୍ତା ଓ ଚେତନା ଦ୍ୱାରା ଶ୍ରୀ ଜଗନ୍ନାଥଙ୍କୁ ଆପଣେଇ ନେଇଛନ୍ତି । ଶଙ୍କରାଚାର୍ଯ୍ୟ ଅଦ୍ୱୈତ୍ୱ, ରାମାନୁଜଙ୍କ ବିଶିଷ୍ଟଦ୍ୱୈତ୍ୱ, ଶ୍ରୀଚୈତନ୍ୟ ଭେଦାଭେଦ ଏବଂ ବଲ୍ଲଭାଚାର୍ଯ୍ୟଙ୍କ ଶୁଦ୍ଧାଦ୍ୱୈତ୍ୱ ଚିନ୍ତାଧାରାର ମହାମିଳନ ଘଟିଛି ଶ୍ରୀଜଗନ୍ନାଥ ଧର୍ମ ବା ସଂସ୍କୃତି ଭିତରେ ।

ଶ୍ରୀଜଗନ୍ନାଥ ଏକ ବିଚିତ୍ର ଦେବତା । ଏହି ବିଚିତ୍ର ଦେବତାର ଚଳଣି ମଧ୍ୟ ବିଚିତ୍ର । ଶବରର ମେଣ୍ଢାମୁଣ୍ଡିଆ ଖେଚେଡି , ଜୈନର କୈବଲ୍ୟ, ବ୍ରାହ୍ମଣର ମନ୍ତ୍ରପାଠ ଓ ଶାକ୍ତର ବ୍ରିହୀବଳିର ସମନ୍ୱୟ ଘଟିଛି ଶ୍ରୀଜଗନ୍ନାଥଙ୍କ ପୂଜାପଦ୍ଧତିରେ । ଜାରା ଶବରର ଶସ୍ତ୍ରାଘାତରେ ମହାପ୍ରଭୁ ମାନବ ଲୀଳା ସମ୍ବରଣ କରିଛନ୍ତି । କିନ୍ତୁ ସେହି ଜାରାଶବରଙ୍କ ବଂଶଧର ବିଶ୍ୱାବସୁଙ୍କୁ ଦେଇଛନ୍ତି ନୀଳମାଧବ ରୂପେ ଆଦିସେବକର ମର୍ଯ୍ୟାଦା । ବ୍ରାହ୍ମଣ ବିଦ୍ୟାପତି ଓ ଶବରକନ୍ୟା ଲଳିତାଙ୍କ ଔରସରୁ ଜାତ ଦଇତାପତି ଆଜି ଶ୍ରୀଜଗନ୍ନାଥଙ୍କ ଜ୍ଞାତି କୁଟୁମ୍ବଭାବେ ଏବେ ମଧ୍ୟ ଶ୍ରୀମନ୍ଦିରରେ ସେବାରତ । ସ୍ନାନପୂର୍ଣ୍ଣିମା ଠାରୁ ବାହୁଡା ଯାତ୍ରା ପର୍ଯ୍ୟନ୍ତ ଏମାନଙ୍କ ଭୂମିକା ଅନସ୍ୱୀକାର୍ଯ୍ୟ। ବିଶେଷଭାବେ ଅନବସର ସମୟରେ ଏମାନେ ବିଭିନ୍ନ ପଥି ପାଞ୍ଚଣ ଦ୍ୱାରା ପ୍ରଭୁଙ୍କୁ ଯେଉଁ ସେବାପୂଜା କରିଥାନ୍ତି, ତାହା ଆଦିବାସୀ ସଂସ୍କୃତିର ନିଚ୍ଛକ ପ୍ରଭାବ । ଇଏ ହେଉଛନ୍ତି ଏକମାତ୍ର ଠାକୁର ଯାହାଙ୍କୁ ରୀତି ନୀତିକୁ ବିଭିନ୍ନ ସମୟରେ ଉଭୟ ବ୍ରାହ୍ମଣ ଓ ଅବ୍ରାହ୍ମଣ ହିଁ ସଂପନ୍ନ କରିଥାନ୍ତି । ଏ ପ୍ରକାର ବ୍ୟବସ୍ଥା ଅନ୍ୟ କୌଣସି ମନ୍ଦିରରେ ଦେଖିବାକୁ ମିଳେନାହିଁ ।

ଶ୍ରୀଜଗନ୍ନାଥ ଧର୍ମ ବିଶ୍ୱବ୍ୟାପକତା ଲାଭ କରିଛି । ସର୍ବଧର୍ମ ସମନ୍ୱୟର ପ୍ରତୀକ ଶ୍ରୀଜଗନ୍ନାଥଙ୍କ ଗୁଣକୀର୍ତ୍ତନରେ ଶତମୁଖ ହୋଇଛନ୍ତି ଯବନ କବି ହରିଦାସ, ସାଲବେଗ ଓ କବୀର । ସାଲବେଗଙ୍କ ପ୍ରାର୍ଥନାରେ ବଡଦାଣ୍ଡରେ ଶ୍ରୀଜଗନ୍ନାଥଙ୍କ ରଥ ଅଟକି ଯାଇଚି । ଅବସ୍ଥାଚକ୍ରରେ ପଡି ଓଡିଶାର ଗଜପତି ରାମଚନ୍ଦ୍ର ଦେବ ତକି ଖାଁ ଭଉଣୀ ରିଜିଆଙ୍କ ପାଣିଗ୍ରହଣ କରିଛନ୍ତି । ଗଜପତି ରାମଚନ୍ଦ୍ର ଦେବଙ୍କ ପାଇଁ ସିଂହଦ୍ୱାର ପାଖରେ ପତିତପାବନ ମୂର୍ତ୍ତୀ ଗଢାଯାଇଥିଲା । ଏହା ଆଜି ମଧ୍ୟ ସେଠାରେ ବିଦ୍ୟମାନ । ଖ୍ରୀଷ୍ଟଧର୍ମାବଲମ୍ବୀ କ୍ୟାପଟେନଙ୍କ ପ୍ରାର୍ଥନାରେ ଜାହାଜକୁ ପ୍ରବଳ ଝଡ ବତାସରୁ ରକ୍ଷା କରିଥିବା କଥା ଆଜି ଲୋକମୁଖରୁ ଶୁଣିଥାଉ । ଏହାର ପ୍ରମାଣ ସିଦ୍ଧ ଉପହାର ଏବେ ଶ୍ରୀ ମନ୍ଦିରରେ ଅଛି । ବିଶ୍ୱାବସୁଙ୍କ ଠାରୁ ଇନ୍ଦ୍ରଦ୍ୟୁମ୍ନଙ୍କ ପର୍ଯ୍ୟନ୍ତ ସାଲବେଗଙ୍କ ଠାରୁ ଶ୍ରୀ ଚୈତନ୍ୟଙ୍କ ପର୍ଯ୍ୟନ୍ତ ସବୁଭକ୍ତ ଶ୍ରୀଜଗନ୍ନାଥଙ୍କ ଚିନ୍ତା ଓ ଚେତନାରେ ନିଜକୁ ହଜାଇ ଦେଇଛନ୍ତି । ଦାସିଆ ବାଉରୀ ହାତରୁ ପ୍ରଭୁ ନଡିଆ ଏବଂ ଜଗନ୍ନାଥ ଦାସଙ୍କ ଭକ୍ତିରେ ମହୋଦଧିକୁ ସାତ ଲହଡି ପର୍ଯ୍ୟନ୍ତ ଘୁଞ୍ଚାଇ ଆଣିଛନ୍ତି । ଛଦ୍ମବେଶରେ ଭକ୍ତକବି ଜୟଦେବ କୃତ ଗୀତଗୋବିନ୍ଦର ଅପୂର୍ଣ୍ଣପଦ ପୂରଣ କରିଛନ୍ତି । ଗଜପତିଙ୍କ ମାନ ରକ୍ଷାପାଇଁ କାଞ୍ଚିରକ୍ଷା ଅଭିଯାନରେ ଯାଇଛନ୍ତି । ରତ୍ନମୁଦି ବନ୍ଧାଦେଇ ଉଭୟ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ରମାଣିକ ଗଉଡୁଣୀଠାରୁ ଦହି ଖାଇ ନିଜର ତୃଷ୍ଣା ନିବାରଣ କରିଛନ୍ତି । ଏହାର ମୂକସାକ୍ଷୀ ରୂପେ ମାଣିକପାଟଣା ଗ୍ରାମ ଏବେ ମଧ୍ୟ ବିଦ୍ୟମାନ । ଇନ୍ଦ୍ରଦ୍ୟୁମ୍ନଙ୍କ ପୁତ୍ରରୂପେ ପୟାଶ୍ରାଦ୍ଧରେ ପିଣ୍ଡଦାନ କରିଆସୁଛନ୍ତି । ରାଜରୋଷରେ ରୁଷ୍ଟ ବଳରାମ ଦାସଙ୍କ ପାଇଁ ପ୍ରଭୁ ନନ୍ଦିଘୋଷ ରଥ ଛାଡି ଚାଲି ଆସିଛନ୍ତି ବାଙ୍କି ମୁହାଣରେ ଗଢାହୋଇଥିବା ବାଲିରଥକୁ । ଯୁଗେ ଯୁଗେ ଏପରି କେତେ ଅଲୌକିକ ଲୀଳାରେ ମହାପ୍ରଭୁ ନିଜ ଭକ୍ତ ବତ୍ସଳତା ପ୍ରଦର୍ଶନ କରିଯାଇଛନ୍ତି ।

ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥ ହେଉଛନ୍ତି ଆମର ସଖା, ସହୋଦର ତଥା ବନ୍ଧୁ । ମହାପ୍ରଭୁଙ୍କ ଦିବ୍ୟ ସନ୍ଦେଶ ତଥା ମାନବୀୟ ଲୀଳାକୁ ଆମେ ହୃଦୟଙ୍ଗମ କରିପାରିଲୁ ନାହିଁ । ଆମର ଚିନ୍ତା, ଚେତନା, ଆଭିମୁଖ୍ୟ, ଚଳଣି ଓ ଚରିତ୍ରରେ ଏବେ ମଧ୍ୟ କୌଣସି ପରିବର୍ତ୍ତନ ଆସିଲା ନାହିଁ । ସାମାଜିକ ପ୍ରତିଷ୍ଠା, ସ୍ୱୀକୃତି ଓ ଭୌତିକ ବିଳାସ ପାଇଁ ଆମ ମନ ସତତ ବ୍ୟାକୁଳ । ନୈତିକ ଓ ମାନବିକ ମୂଲ୍ୟବୋଧ ସୁଦୂର ପରାହତ । ଚାରିଆଡେ ଆଜି ଅବିଶ୍ୱାସ । ସଂଘର୍ଷ ଓ ଅଶାନ୍ତିର ଏକ ବାତାବରଣ । ଆତ୍ମାର ପତନ ଘଟିଛି । ସର୍ବପଲ୍ଲୀ ରାଧାକ୍ରିଷ୍ଣଙ୍କ ଭାଷାରେ- What is missing in our age soul. there is nothing wrong with the body. We suffer from the sickness of spirit.

ସେଦିନ ପ୍ରଭୁ ଯୀଶୁ କ୍ରୁଶବଦ୍ଧ ସମୟରେ ତାଙ୍କୁ କରୁଥିବା ବ୍ୟକ୍ତିମାନଙ୍କୁ କ୍ଷମାଦେଇ ପରମପିତାଙ୍କୁ କହିଥିଲେ ହେ ପ୍ରଭୁ! ଏମାନେ କଣ କରୁଛନ୍ତି ତାହା ଜାଣିପାରୁନାହାନ୍ତି । ଏମାନଙ୍କୁ କ୍ଷମା ଦିଅ ।

ଆଜି ବିଶ୍ୱ ପ୍ରସିଦ୍ଧ ରଥଯାତ୍ରା । ମହାପ୍ରଭୁ! ଆମର ସମସ୍ତ ଦୋଷଦୁର୍ବଳତାକୁ ଦୂର କରି ଆମକୁ ଅନ୍ଧାରରୁ ଆଲୋକ ଆଡକୁ ପଥ ଦେଖାଅ । ଆମର ହୃଦୟ ଓ ମନ ପ୍ରଶସ୍ତ ହେଉ । ମହାପ୍ରଭୁଙ୍କ କରୁଣା କୈବଲ୍ୟ ଆମକୁ ପ୍ରାପ୍ତ ହେଉ । ଏତିକି ମାତ୍ର କାମନା ।

ଉପ ଶାସନ ସଚିବ
ଅର୍ଥ ବିଭାଗ
ଭୁବନେଶ୍ୱର



# ଶ୍ରୀପୁରୁଷୋତ୍ତମଙ୍କ ଉପାସନା ପଦ୍ଧତିର କ୍ରମବିକାଶ

ପଦ୍ମନାଭ ମହାପାତ୍ର



ବୈଦିକ ଚିନ୍ତନରେ ପ୍ରଥମେ କର୍ମକାଣ୍ଡ ଓ ତତପରେ ଜ୍ଞାନକାଣ୍ଡ ବିକଶିତ ହୋଇଅଛି । ବେଦର ବ୍ରାହ୍ମଣ ଭାଗ କର୍ମକାଣ୍ଡର ମୂଳଭିତ୍ତି । ଆରଣ୍ୟକ ଓ ଉପନିଷଦ ଜ୍ଞାନକାଣ୍ଡର ମୁଖ୍ୟ ଉପଜୀବ୍ୟ । ଏହି ଉଭୟ କାଣ୍ଡର ସମ୍ମିଶ୍ରଣ ହେଉଛି ଉପାସନା କାଣ୍ଡ । ସଂସାର ମଧ୍ୟରେ ସୁଖ ଓ ଶାନ୍ତିର ସହିତ ରହି ଅନ୍ତିମ କାଳ ସ୍ୱର୍ଗପ୍ରାପ୍ତ ହେବା ବୈଦିକ କର୍ମକାଣ୍ଡର ମୁଖ୍ୟ ଆଭିମୁଖ୍ୟ ଥିଲା । ସେସମୟରେ ମୁଖ୍ୟ ଉପାସ୍ୟ ଥିଲେ ବ୍ରହ୍ମ । ଆରଣ୍ୟକ ଓ ଉପନିଷଦ କାଳରେ ବ୍ରହ୍ମାଙ୍କଠାରୁ ପରଂବ୍ରହ୍ମ ଏବଂ ଏହି ଦୁଇ ତତ୍ତ୍ୱରୁ ଆତ୍ମା ପରମାତ୍ମା ତତ୍ତ୍ୱର ବିକାଶ ଘଟିଲା । ଏହାର ପରବର୍ତ୍ତୀ କାଳରୁ ବିଶ୍ୱବ୍ରହ୍ମାଣ୍ଡର କର୍ତ୍ତା ପରଂବ୍ରହ୍ମ ଏବଂ ସଂସାର ମଧ୍ୟରେ ଜାତ ସମସ୍ତ ପ୍ରାଣୀମାନଙ୍କ ଶରୀରପିଣ୍ଡ ମଧ୍ୟସ୍ଥିତ ବ୍ରହ୍ମ ଜୀବାତ୍ମା ଭାବରେ ପରିଗଣିତ ହେଲେ । ଏହି କ୍ରମରେ ପରମାତ୍ମା ଉପାସ୍ୟ ଏବଂ ଜୀବାତ୍ମା ଉପାସକ ଭାବରେ ଉଭାହେଲେ । ଏହି ତତ୍ତ୍ୱକୁ ଭିତ୍ତିକରି ଉପାସନା ମାର୍ଗର ବିକାଶ ଘଟିଲା ।

ପ୍ରଚୀନ ଉତ୍କଳ ଖଣ୍ଡରେ ଦୁଇ ପ୍ରକାରର ଉପାସନାର ଧାରା ବହୁ ପୁରାତନ କାଳରୁ ପ୍ରଚଳିତ ହୋଇଆସୁଛି । ପ୍ରଥମଟି ବୈଦିକ ବିଧି-ତାହାର ନାମ ନିଗମ, ଅନ୍ୟଟି ତାନ୍ତ୍ରିକ ବିଧି- ତାହାର ନାମ ଆଗମ, ପରବର୍ତ୍ତୀ କାଳରେ ଯେଉଁ କିଛି ବିଧି ସ୍ଥାନ-କାଳ-ପାତ୍ର ସ୍ଥିତିରେ ସଂଯୋଜିତ ହୋଇଛି, ତାହାର ନାମ ଲୋକାଚାର । ଏହି ସମସ୍ତ ବିଧିର ସମ୍ମିଶ୍ରଣରେ ପରଂବ୍ରହ୍ମ ଶ୍ରୀପୁରୁଷୋତତ୍ତମଙ୍କର ଉପାସନା ବୈଦିକ କାଳ ପରଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ଚଳି ଆସିଅଛି । ଶ୍ରୀପୁରୁଷୋତ୍ତମ ଜଗନ୍ନାଥ ପ୍ରାକ୍ ବୈଦିକ ଦେବତା ହୋଇଥିଲେ ମଧ୍ୟ ପରବର୍ତ୍ତୀ ପର୍ଯ୍ୟାୟରେ ବୈଦିକ ଓ ଆଗମିକ ବିଧିରେ କେତେ ଯୋଗୀ, ମୁନି,ଋଷି, ସନ୍ଥ ସାଧକମାନଙ୍କ ଅସାଧ ସାଧନାର ସିଦ୍ଧି ରୂପରେ କ୍ରମାନ୍ୱୟରେ ସେ ବହୁ ବିଗ୍ରହ ରୂପରେ ଆରାଧିତ ହୋଇ ହୋଇ ବର୍ତ୍ତମାନ ବ୍ରହ୍ମମାୟା ଓ ଜୀବର ପ୍ରତୀକ, ସୃଷ୍ଟି ସ୍ଥିତି ଓ ପ୍ରଳୟର ଦ୍ୟୋତକ, ଭକ୍ତମାନଙ୍କ ମଧ୍ୟରେ ବ୍ରହ୍ମାବିଷ୍ଣୁ ଓ ମହେଶ୍ୱର ରୂପେ ବିଦିତ ଦାରୁବ୍ରହ୍ମ ନାମରେ ଶ୍ରୀମନ୍ଦିରର ରତ୍ନ ସିଂହାସନରେ ବିରାଜିତ ହୋଇ ସମଗ୍ର ଜଗତର ହିତ ସାଧନ କରୁଅଛନ୍ତି । ଯେ ଯେଉଁ ରୂପରେ ତାଙ୍କର ଆରଧନା କରୁଅଛନ୍ତି, ସେ ତଦନୁରୂପ ଫଳପ୍ରାପ୍ତ ହେଉଛନ୍ତି ।

ଉପାସନାର ଦୁଇଟି ଶୈଳୀ- ପ୍ରଣବତନୁଧର ପ୍ରଭୁ ଶ୍ରୀଜଗନ୍ନାଥ ନିଗମ ପ୍ରତିପାଦ୍ୟ ହେଲେ ମଧ୍ୟ ତାଙ୍କର ଆରାଧନା ଶୈଳୀ ଉପରୋକ୍ତ ତିନି ବିଧିର ସମ୍ମିଶ୍ରଣରେ ପ୍ରଚଳିତ । ନିଗମ କହିଲେ ବେଦ ଓ ଆଗମ ତନ୍ତ୍ର ଶାସ୍ତ୍ର ଅଟେ ।

ପରମେଶ୍ୱରଙ୍କ ଠାରୁ ନିଃସୃତ ଧର୍ମଗ୍ରନ୍ଥ ବୈଦିକ ଓ ତାନ୍ତ୍ରିକ ଭେଦରେ ଦୁଇପ୍ରକାର । ଏହି ଭିତ୍ତିରେ ଭାରତୀୟ ଧର୍ମ, ସଂସ୍କୃତି, ସଭ୍ୟତା, ଆଚାର ଆଦି ନିଗମ ଓ ଆଗମ ମୂଳକ ।(ପରଶୁରାମ କଳ୍ପସୂତ୍ର ଏବଂ ଶ୍ରୀମଦ ଭାଗବତ)

ଅନ୍ତଃକରଣରେ ପରମପିତା ପରମାତ୍ମାଙ୍କର ଉପଲବଧିକୁ ଉପାସନା କୁହାଯାଏ । ଉପାସନା ମାଧ୍ୟମରେ ଜୀବାତ୍ମା ପରମାତ୍ମାଙ୍କର ସମୀପବର୍ତ୍ତୀ ହୋଇ ଆନନ୍ଦ ଲାଭ କରେ । ଉପାସନାର ଦୁଇଟି ଶୈଳୀ ହେଲା-(୧) ଯେଉଁ ଶୈଳୀରେ ଅନ୍ତଃକରଣର ପ୍ରାଧାନ୍ୟ ଥାଏ ବା ଯେଉଁ ବିଧିରେ ଉପାସକ ଜଡତାର ସହାୟତାରେ ସାଧନା କରେ ତାହାକୁ କରଣ ସାପେକ୍ଷ ଶୈଳୀ ଏବଂ(୨) ଯେଉଁ ଶୈଳୀରେ ସ୍ୱୟଂର ପ୍ରାଧାନ୍ୟ ଥାଏ ବା ଯେଉଁ ବିଧିରେ ଉପାସକ ଆରମ୍ଭରୁ ଜଡତାର ସହାୟତା ନ ନେଇ ସ୍ୱୟଂ ସାଧନା କରେ ତାହାକୁ କରଣନିରପେକ୍ଷ ଶୈଳୀ ବୋଲି କୁହାଯାଏ । ଉଭୟ ବିଧିରେ ପରମାତ୍ମାତତ୍ତ୍ୱପ୍ରାପ୍ତି ହୁଏ । ପ୍ରଥମ ବିଧିରେ ବିଳମ୍ବରେ ଓ ପରବର୍ତ୍ତୀ ବିଧିରେ ଅବିଳମ୍ବେ । କରଣସାପେକ୍ଷ ଶୈଳୀରେ ଉପାସକ ଯୋଗୀ ଏବଂ ଉପାସନାର ମୁଖ୍ୟ ମାଧ୍ୟମ ହେଉଛି ଯଜ୍ଞ ।



ପାତଞ୍ଜଳି ଯୋଗ ଦର୍ଶନ ଯୋଗର ସିଦ୍ଧି ପାଇଁ କରଣସାପେକ୍ଷ ଶୈଳୀକୁ ମହତ୍ତ୍ୱପ୍ରଦାନ କରନ୍ତି । ଧ୍ୟାନଯୋଗୀ ଭୋଗବୁଦ୍ଧିକୁ ତ୍ୟାଗକରି କାମନା ରହିତ ହୋଇ, ଅନ୍ତଃକରଣ ତଥା ଶରୀରକୁ ବଶୀଭୁତ କରି, ନିର୍ଜନ ସ୍ଥାନରେ ଏକୁଟିଆ ରହି ଯେଉଁ ଯେଉଁ ବିଧି ଅବଲମ୍ବନ କରି ନିଜର ମନକୁ ନିରନ୍ତର ପରମପୁରୁଷ ପରମାତ୍ମାଙ୍କ ଠାରେ ସଂଯୋଜିତ କରନ୍ତି ତାହା ଗୀତାର ଷଷ୍ଠ ଅଧ୍ୟାୟ ୧୦ ଠାରୁ ୨୮ ଶ୍ଳୋକରେ ଏବଂ କେଉଁ କେଉଁ ବିଧିବଧରେ ବ୍ରହ୍ମ ଯଜ୍ଞ, ରୂପ ଯଜ୍ଞ, ଅଭିନ୍ନତା ନରୂପ ଯଜ୍ଞ, ସମାଧିରୂପ ଯଜ୍ଞ, ଦ୍ରବ୍ୟ ଯଜ୍ଞ, ତପୋ ଯଜ୍ଞ, ଜ୍ଞାନ ଯଜ୍ଞ, ଯୋଗ ଯଜ୍ଞ, ପ୍ରାଣାୟାମରୂପ ଯଜ୍ଞ, ସକଳ କର୍ମଠାରୁ ସମ୍ବନ୍ଧ ବିଚ୍ଛେଦ ନିମନ୍ତେ ଅନୁଷ୍ଠାନ କରି ନିଜର ସମସ୍ତ ପାପ ନାଶ କରନ୍ତି ସେହି କଥା ଗୀତାର ୪ର୍ଥ ଅଧ୍ୟାୟ ୨୪ ଠାରୁ ୩୦ ଶ୍ଳୋକରେ ବିଶଦ ଭାବରେ ବର୍ଣ୍ଣିତ ହୋଇଅଛି । ଯଜ୍ଞ ଶବ୍ଦ ଅର୍ଥ ଯଜ୍ ଧାତୁରୁ ଉତ୍ପନ୍ନ । ତାହାର ତିନୋଟି ଅର୍ଥ ଅଛି ଯଥା-ପୂଜା, ସଙ୍ଗତୀକରଣ ଏବଂ ଦାନ । ପ୍ରଭୁଙ୍କର ପୂଜା, ସମସ୍କନ୍ଧଙ୍କ ସହିତ ସଙ୍ଗତୀକରଣ ଏବଂ କନିଷ୍ଠଙ୍କୁ ଦାନ- ମନୁଷ୍ୟର ସମସ୍ତ ପ୍ରକାର ପରିବେଶରେ ଶ୍ରେଷ୍ଠତମ କର୍ତ୍ତବ୍ୟର ଅନ୍ୟନାମ ଯଜ୍ଞ । ଶତପଥ ବ୍ରହ୍ମଣ କହନ୍ତି- ଶ୍ରଦ୍ଧାପୂର୍ବକ । ବିଧି ଉପରେ ଗୁରୁତ୍ତ୍ୱ ଦିଆଯାଉଥିବାରୁ ଏହି ଉପାସନା ପଦ୍ଧତି ଅତ୍ୟନ୍ତି କ୍ଲିଷ୍ଟ । କେବଳ ମୁକ୍ତି ବା ମୋକ୍ଷକାମୀ ଯୋଗୀ ମୁନି ଋଷିମାନେ ସେମାନଙ୍କ ଅନ୍ତର୍ମୁଖୀ ସାଧନା ବଳରେ ଜୀବନର ଚରମ ଲକ୍ଷ୍ୟ ସ୍ୱର୍ଗ ଲାଭ କରିପାରନ୍ତି । ସାଧାରଣ ସାଧକମାନଙ୍କ ପାଇଁ ଏହା ଦୁରୂହ ପନ୍ଥା । ଐଶ୍ୱର୍ଯ୍ୟଶାଳୀ ସହସ୍ରଶୀର୍ଷା ପୁରୁଷ ଦେବତା ବ୍ରହ୍ମବନରେ (ଶ୍ରୀ କ୍ଷେତ୍ରର ପୂର୍ବବର୍ତ୍ତୀ ନାମ) ଏହି ବୈଦିକ କରଣ ସାପେକ୍ଷଶୈଳୀରେ ଉପାସିତ ହେଉଥିଲେ ।

ଶ୍ରୀମଦଭଗବଦଗୀତାରେ ବର୍ଣ୍ଣିତ କର୍ମଯୋଗ, ଜ୍ଞାନ ଯୋଗ ଏବଂ ଭକ୍ତି ଯୋଗ ଏହି ତିନୋଟି ଯାକ ସାଧନା କାରଣ ନିରପେକ୍ଷ କାରଣ ତାହା ସ୍ୱୟଂ ଦ୍ୱାରା ହିଁ ସମାହିତ ହୁଏ । କର୍ମଯୋଗରେ ଉପାସକ ନିଜେ ଜଡତାକୁ ତ୍ୟାଗକରେ, ଜ୍ଞାନ ଯୋଗରେ ନିଜେ ହିଁ ନିଜକୁ ଜାଣେ ଏବଂ ଭକ୍ତିଯୋଗରେ ସ୍ୱୟଂ ସେ ଭଗବାନଙ୍କର ଶରଣାଗତ ହୁଏ । ତେଣୁ କାରଣନିରପେକ୍ଷ ସାଧନା ବିଧି ବୈଦିକକୋତ୍ତର କାଳରେ ଲୋକପ୍ରିୟ ହୋଇଛି । ଗୀତାରେ ଅଷ୍ଟାଦଶ ଅଧ୍ୟାୟ ଶ୍ଳୋକ ୬୨ ଏବଂ ୬୬ରେ ଭଗବାନ ଅର୍ଜୁନଙ୍କୁ ଉପାସନାର ଚରମ ତତ୍ତ୍ୱ ବୁଝାଇ କହିଅଛନ୍ତି- ତମେବ ଶରଣଂ ଗଚ୍ଛ ସର୍ବଭାବେନ ଭାରତ, ତତ୍ ପ୍ରସାଦାତ୍ପରାଂ ଶାନ୍ତିଂ ସ୍ଥାନଂ ପ୍ରାପପ୍ୟସି ଶାଶ୍ୱତଂ । ତୁମେ ସର୍ବତ୍ତୋଭାବରେ ସେହି ଈଶ୍ୱରଙ୍କର ଶରଣାଗତ ହୁଅ । ତାଙ୍କରି କୃପାରୁ ତୁମେ ପରମଶାନ୍ତି (ସଂସାରରୁ ପୂର୍ଣ୍ଣ ଉପରତି) ଓ ଅବିନାଶୀ ପରମ ପଦ ପ୍ରାପ୍ତ ହୋଇପାରିବ । ସର୍ବଧର୍ମାନ ପରିତ୍ୟାଗ ମାମେକଂ ଶରଣଂ ବ୍ରଜ, ଅହଂ ତ୍ୱାଂ ସର୍ବପାପେଭ୍ୟୋ ମୋକ୍ଷୟିଷ୍ୟାମି ମା ଶୁଚଃ ମୁଁ ଭଗବାନଙ୍କର ଓ ଭଗବାନ ମୋର ଭାବଟିକୁ ହୃଦୟସ୍ଥ କରିଦେଲେ କେବଳ ଭଗବତ୍ କୃପାରୁ ହିଁ ଜୀବର ଉଦ୍ଧାର ହୁଏ, ତେଣୁ ଉପାସନାର ସିଦ୍ଧିରେ ଭଗବତ୍ କୃପା ହିଁ ମୁଖ୍ୟ । ଗୀତାର ମତ ଅନୁସାରେ ସଗୁଣ, ନିର୍ଗୁଣ ଉପାସକଙ୍କ ମଧ୍ୟରେ କୌଣସି ବିବାଦ ନାହିଁ: । ଏହି ତତ୍ତ୍ୱର ସଗୁଣ, ନିର୍ଗୁଣ, ସାକାର, ନିରାକାର ଆଦି ସମସ୍ତ ରୂପ ପରମାତ୍ମଙ୍କର ଅଂଶ ବିଶେଷ ।

ପରଶୁରାମ କଳ୍ପସୂତ୍ର ଏବଂ ଶ୍ରୀମଦ୍‌ଭଗବତ କହନ୍ତି ଯେଉଁମାନେ ମୋକ୍ଷ ପାଇବାକୁ ଚାହାନ୍ତି, ସେମାନେ ପ୍ରଭୁଙ୍କୁ ବୈଦିକ ଏବଂ ତାନ୍ତ୍ରିକ ପଦ୍ଧତିରେ ପୂଜା କରିବା ବିଦ୍ଧେୟ । ବାରାହୀ ତନ୍ତ୍ରରେ କୁହାଯାଇଛି- କୃତେ ଶ୍ରୁତ୍ୟୁକ୍ତମାର୍ଗଃ ସ୍ୟାତ୍ ତ୍ରେତୟାଂ ସ୍ମୃତିସମ୍ଭବଃ । ଦ୍ୱାପରେତୁ ପୁରାଣୋକ୍ତେ କଳାବାଗମସମ୍ଭବାଃ । ଅର୍ଥାତ୍ ସତ୍ୟଯୁଗରେ ବେଦ ସମ୍ମତି, ତ୍ରେତୟାରେ ସ୍ମୃତି ସମ୍ମତ, ଦ୍ୱାପରରେ ପୁରାଣୋକ୍ତ ଓ କଳିଯୁଗରେ ଆଗମସମ୍ମତ ପୂଜା ଅନୁଷ୍ଠାନାଦି କରିବା ବିଧେୟ । ଏହାର କାରଣ ଦର୍ଶାଇ ପୁନଶ୍ଚ ପ୍ରକାଶ କରନ୍ତି-ଅଶୁଦ୍ଧାଃ ଶୁଦ୍ଧକର୍ମାଣାଃ କଳିସମ୍ଭବାଃ । ତୋଷାମାଗମମାର୍ଗେଣ ସିଦ୍ଧିନ ଶ୍ରୌତ କର୍ମଣି । କଳି ଯୁଗରେ ଜନ୍ମିତ ବ୍ରାହ୍ମଣମାନେ ଶୁଦ୍ରଙ୍କ ପରି ଅପବିତ୍ର, ତେଣୁ ସେମାନେ ଆଗମମାର୍ଗରେ ସିଦ୍ଧିଲାଭ କରିଥାଆନ୍ତି । ବେଦ ବିହିତ ବିଧିରେ ସେମାନଙ୍କୁ ସିଦ୍ଧି ମିଳେ ନାହିଁ । ଆଗମିକ ଉପାସନା ସାଧନ ଭିତ୍ତିକ, ତେଣୁ ଏଥିରେ ଉପଚାରଭିତ୍ତିକରି ସାଧନକୁ ଅଗ୍ରାଧିକାର ଦିଆଯାଏ । ଏକରୁ ବହୁ ଆଡକୁ ଯିବା ଆଗମ ଶବ୍ଦର ତାତ୍ପର୍ଯ୍ୟ । ଏହି ସବୁ ତଥ୍ୟକୁ ଭିତ୍ତିକରୀ ଉତ୍ତର ବୈଦିକ କାଳରେ ବହୁ ମୂର୍ତ୍ତିପୂଜା ପ୍ରବର୍ତ୍ତିତ ହୋଇଅଚି । ଉପାସ୍ୟ ଦେବତାଙ୍କର ବିଗ୍ରହ ଅବିକଳ ମୂର୍ତ୍ତିତତ୍ତ୍ୱାଧୀନ ନ ହେଲେ ମଧ ପ୍ରତୀକ ଭାବରେ ଗୃହୀତ ହୋଇ ବିଗ୍ରହଙ୍କ ଗୁଣ ଆରୋପିତ ହୋଇଅଛି । ଉପାସକ ତାଙ୍କର ଭାବ ମାଧମରେ (ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ, ଅପତ୍ୟ, କାନ୍ତଭାବ ଏବଂ ବେଳେବେଳେ ବୈରଭାବ) ପ୍ରଭୁଙ୍କୁ ଭକ୍ତି କରି ମୁକ୍ତିଲାଭ କରିଥାନ୍ତି । ଉଭୟ ଗୁଣ ଓ ଭାବ ସମ୍ମିଳିତ ହେଲେ ସାଧକ ପୂର୍ଣ୍ଣତା ଲାଭ କରନ୍ତି ଏବଂ ତାଙ୍କର ସାଧନା ସିଦ୍ଧ ହୁଏ ।

ଆଗମିକ ବିଧାନରେ ଭାବ ଓ ଆଚାରର ପ୍ରାଧାନ୍ୟ ଅଧିକ । ସାଧକର ମାନସିକ ସ୍ତରରେ ଉପଯୁକ୍ତ ଭାବ ଜାଗୃରୁକ ନ ହେଲେ ଫଳପ୍ରାପ୍ତି ହୋଇପାରେ ନାହିଁ । ଏହି ତଥ୍ୟକୁ ବୁଝାଇବାକୁ ଯାଇ ଜଗନ୍ନାଥଙ୍କର ପ୍ରସିଦ୍ଧି ସମ୍ବଳିତ ରୁଦ୍ରଜାମଳ ପ୍ରକାଶ କରନ୍ତି- ଭାବେନ ଲଭତେ ସର୍ବଂ ଭାବେନ ଦେବଦର୍ଶନମ । ଭାବେନ ପରମଂ ଜ୍ଞାନଂ ତସ୍ମାଦ୍ ଭାବାବଲମ୍ବନମ୍ । ଅର୍ଥାତ୍ ତଦ୍‌ଗତ ଭାବ ହୃଦୟମଧରେ ଜାତ ନହେଲେ ପୂଜା, ସାଧନା, ମନ୍ତ୍ରସିଦ୍ଧି ହୁଏ ନାହିଁ । ଏହି ତଥ୍ୟକୁ ଆହୁରି



ସରଳଭାବରେ ବୁଝାଇ ଭାବଚୂଡାମଣି ଗ୍ରନ୍ଥ କହନ୍ତି- ବହୁ ଜପାତ୍ ତଥା ହୋମାତ୍ କାୟକ୍ଳେଶାଦିବିସ୍ତରୈ । ନ ଭାବେନ ବିନା ଦେବ ମନ୍ତ୍ରଯନ୍ତ୍ରଃ ଫଳପ୍ରଦାଃ । ଯେତେ ହୋମ, ଜପ, ମନ୍ତ୍ର, ଯନ୍ତ୍ରସାଧନ କଲେ ମଧ୍ୟ ଯଦି ମନ ଭିତରେ ଭାବନା ଥାଏ । ସେ ସବୁ ଫଳହୀନ ହୋଇଯାଆନ୍ତି । ଭାବ ହେଉଛି ହ୍ଳାଦିନୀ ଶକ୍ତିର ବୃତ୍ତିବିଶେଷ । ଭାବ ମନର ଧର୍ମ, ଭାବ ମନ ମଧ୍ୟରୁ ଉତ୍ପନ୍ନ ହୋଇ ସେହି ମନ ମଧ୍ୟରେ ପୁନଶ୍ଚ ମିଶିଯାଏ । ଆଗମ ଶାସ୍ତ୍ର ମାନଙ୍କରେ ଭାବମାନଙ୍କୁ ପଶୁଭାବ ବୀରଭାବ ଓ ଦିବ୍ୟଭାବ ଏହି ତିନି ଭାଗରେ ବିଭକ୍ତ କରାଯାଇଛି । ପାଶବିକ ପ୍ରବୃତ୍ତି ସଂପନ୍ନ ବ୍ୟକ୍ତିଙ୍କୁ ପଶୁଭାବ ଯୁକ୍ତ, କାମ-କ୍ରୋଧ-ଲୋଭ-ମୋହ-ମଦ-ମାତ୍ସର୍ଯ୍ୟାଦିର ବିଜେତା ଜିତେନ୍ଦ୍ରିୟ ସୁଖଦୁଃଖରେ ସମଭାବାପନ୍ନ ବ୍ୟକ୍ତିଙ୍କୁ ବୀର ଭାବରେ ସାଧକ ବିଶ୍ୱର ସମସ୍ତ ସ୍ତ୍ରୀଙ୍କୁ ଶକ୍ତି ଓ ପ୍ରତ୍ୟେକ ପୁରୁଷଙ୍କୁ ଶିବ ଭାବରେ ଗ୍ରହଣ କରି ନିଜକୁ ଦେବତା ବୋଲି ମନେ କରୁଥିବା ବ୍ୟକ୍ତିଙ୍କୁ ଦିବ୍ୟଭାବାପନ୍ନ ସାଧକ କୁହାଯାଏ । (କୁବଜିକା ତନ୍ତ୍ର) ଆଗମ ଶାସ୍ତ୍ର ସାଧକଙ୍କ ପାଇଁ ସପ୍ତବିଧ ଆଚାରର ବ୍ୟବସ୍ଥା ମଧ୍ୟ ଉପସ୍ଥାପନ କରିଅଛନ୍ତି । ସେଗୁଡ଼ିକ ହେଲା - ବେଦାଚାର, ବୈଷ୍ଣବାଚାର, ଶୈବାଚାର, ଦକ୍ଷିଣାଚାରାବାମାଚାର, ସିଦ୍ଧାନ୍ତାଚାର ଏବଂ କୌଳାଚାର । ଏ ସମସ୍ତ ଆଚାର ଅବଲମ୍ବନରେ ପ୍ରଶାନ୍ତଚିତ୍ତ, ସମଦୃଷ୍ଟି ସମ୍ପନ୍ନ ହୋଇସାରି ସଂସାରର ସମସ୍ତ ବିକୃତିକୁ ଭୁଲିଯାଇ କୌଳାଚାରୀ ଉପାସକ ଶ୍ରୀ ପୁରୁଷୋତ୍ତମଙ୍କର ସିଦ୍ଧ ସାଧକ ଭାବରେ ପରିଗଣିତ ହୁଅନ୍ତି ।

ଦେବ ଉପାସନାରେ ଉପରୋକ୍ତ ଦୁଇଟି ଶୈଳୀର ପର୍ଯ୍ୟାଲୋଚନା କରି ସାରି ଆମେ ଏହି ସତ୍ୟରେ ଉପନିତ ହେଉଅଛୁ ଯେ- ଶ୍ରୀମନ୍ଦିରର ପୂଜା ପଦ୍ଧତିରେ କ୍ରମାନ୍ୱୟରେ ସିଦ୍ଧ ସାଧକ ପରଶୁରାମଙ୍କ ଦ୍ୱାରା ପ୍ରତିଷ୍ଠିତ ଶ୍ରୀମହାଭାରତର ବନପର୍ବରେ ବର୍ଣ୍ଣିତ ବ୍ରହ୍ମବନରେ ବ୍ରହ୍ମାଙ୍କ ଦ୍ୱାରା ପୂଜିତ ମହାବିଷ୍ଣୁ ମାଧବ ଏବଂ ପରବର୍ତ୍ତୀ କାଳରେ ଶ୍ରୀ ନୃସିଂହ, ଶ୍ରୀ ନୀଳମାଧବ ଓ ପୁରୁଷୋତ୍ତମ ଭାବରେ ନାମିତ ସେହି ବିଗ୍ରହ (ଶ୍ରୀ କ୍ଷେତ୍ରର ପୂର୍ବବର୍ତ୍ତୀ ନାମ ବ୍ରହ୍ମ ବନ) ବୌଦ୍ଧଧର୍ମ ପ୍ରଭାବରେ ପୂଜିତା ଶ୍ରୀଦେବୀ ଶ୍ରୀ ତାରା ଭୈରବୀ ଏବଂ ବ୍ରାହ୍ମଣ୍ୟ ଧର୍ମ ପ୍ରଭାବରେ ପରବର୍ତ୍ତୀ କାଳରେ ନାମ ପରିବର୍ତ୍ତିତ ସେହି ତିନି ଶକ୍ତି ମହାଲକ୍ଷ୍ମୀ, ଦକ୍ଷିଣକାଳୀ, ବିମଳାଦେବୀ ଏବଂ ବର୍ତ୍ତମାନ ରତ୍ନ ସିଂହାସନ ଉପରେ ପୂଜିତ ଚତୁର୍ଦ୍ଧାମୂର୍ତ୍ତି ଶ୍ରୀ ବଳଭଦ୍ର ଶ୍ରୀ ଜଗନ୍ନାଥ ମା ସୁଭଦ୍ରା ଏବଂ ଶ୍ରୀ ସୁଦର୍ଶନଙ୍କ ଉପାସନା ବିଧିରେ ବୈଦୀକୀ ଓ ଆଗମିକ ମିଳିତ ପୂଜା ପଦ୍ଧତି ଅନ୍ୟୋତଦ୍ଧନ୍ୟାଶ୍ରୟ ଭାବରେ ପ୍ରଚଳିତ ହୋଇ ଆସୁଅଛି ।

ଶ୍ରୀଜଗନ୍ନାଥଙ୍କ ଉପାସନାରେ ତିନି ପ୍ରମୁଖ ତତ୍ତ୍ୱ- ତନ୍ତ୍ର, ଯନ୍ତ୍ର ଏବଂ ମନ୍ତ୍ର- ଆଗମ ଶବ୍ଦରୁ ତନ୍ତ୍ର ଶାସ୍ତ୍ର ବୋଧ ହେଉଥିଲେ ମଧ୍ୟ ଏହାର ବ୍ୟୁତ୍ପତ୍ତି ହେଉଛି- ତନୁ ବିସ୍ତାରେ ଧାତୁର କର୍ତ୍ତା, କର୍ମ ଓ କରଣରେ ଷ୍ଟନ୍ ପ୍ରତ୍ୟୟ ହୋଇ ତନୋତି ବିସ୍ତାରୟତି ବହୂନାଂ ଉପକାରଂ, ତନ୍ୟତେ ବିସ୍ତାର୍ଯ୍ୟତେ ସକଳାନାଂ ଯୋଗକ୍ଷେମଃ । (ତନ୍ୟତେ ବିସ୍ତାର୍ଯ୍ୟତେ ଲୋକାନାଂ କଲ୍ୟାଣଂ ଅନେନ, ଶନ୍ୟମାନଙ୍କର ବ୍ୟୁତ୍ପତ୍ତି ଲବଧାତେଁ ବହୁ ପ୍ରକାରର ହେଉଥିବାରୁ ତନ୍ତ୍ର ଶବ୍ଦର ଅର୍ଥ ବେଦ ଓ ଲୌକିକ ବ୍ୟବହାରରେ ଭିନ୍ନ ଭିନ୍ନ ପରିଲକ୍ଷିତ ହୁଏ, । ବାରାହୀ ତନ୍ତ୍ରରେ ଯେଉଁ ସ୍ୱରୂପ ପ୍ରକାଶିତ ତାହା ସର୍ବଜନଗ୍ରାହୀ । ତନୋଟି ବିପୁଳାନର୍ଥାନ୍ ତତ୍ତ୍ୱମନ୍ତ୍ର ସମନ୍ୱିତାନ୍ ତ୍ରାଣଂ ଚ କୁରୁତେ ଯସ୍ମାତ୍ ତନ୍ତ୍ରମିତ୍ୟଭିଧୀୟତେ । ଅର୍ଥାତ୍ ବିପୁଳ ପ୍ରୟୋଜନ ବିସ୍ତାର କରିବା ଯେଉଁ ଶାସ୍ତ୍ରର ଧର୍ମ ତାହାହିଁ ତନ୍ତ୍ର । ଯେଉଁ ଶାସ୍ତ୍ର ଆଗ୍ରହୀ ଉପାସକଙ୍କୁ ତ୍ରାଣ କରେ ତାହାର ନାମ ତନ୍ତ୍ର । ଆଗତଂ ଶିବମୁଖାନ୍ନାତ ଗତଂ ଚ ଗିରିଜାମୁଖେ । ମତଂ ଚ ବାସୁଦେବସ୍ୟ ତସ୍ମାତ୍ ଆଗମ ଉଚ୍ୟତେ । ଏହି ଶାସ୍ତ୍ର ଶିବଙ୍କ ମୁଖନିଃସୃତ, ପାର୍ବତୀଙ୍କ ଦ୍ୱାରା ଶୃତ ଏବଂ ବାସୁଦେବଙ୍କର ସିଦ୍ଧାନ୍ତ । ଏହି ତନ୍ତ୍ରଶାସ୍ତ୍ର ଜାମଳ- କୁଳର୍ଣ୍ଣବାଦି ୬୪ ପ୍ରକାରକ ଅଟେ । କପିଳ-ଜୈମିନି-ବଶିଷ୍ଠ-ନାରଦ- ଗର୍ଗ-ପୁଲସ୍ତ୍ୟ-ଭୃଗୁ-ଭାର୍ଗବ-ଯାଜ୍ଞବଳକ୍ୟ- ଶୁକ୍ର-ବୃହସ୍ପତି ପ୍ରଭୃତି ମୁନିରଷିମାନଙ୍କ ପ୍ରଣିତ ବହୁବିଧ ଉପତନ୍ତ୍ର ତାନ୍ତ୍ରିକ ବାଙ୍ମୟକୁ ଏବଂ ତନ୍ତ୍ର ଉପାସକମାନଙ୍କୁ ବିଶାଳ ଓ ସମୃଦ୍ଧ କରି ଯାଇଛନ୍ତି । ତନ୍ତ୍ର ଶାସ୍ତ୍ର ଅସଂଖ୍ୟ ହେଲେ ମଧ୍ୟ ଶ୍ରୀଜଗନ୍ନାଥ ଶ୍ରୀକ୍ଷେତ୍ରରେ ପାଞ୍ଚ ରାତ୍ର ବିଧିରେ ଆରାଧିତ ଅଟନ୍ତି । ଆଚାର ବିଚାର ଦୃଷ୍ଟିରୁ ଏବଂ ଉପାସ୍ୟ ଭେଦରେ ଏହି ତନ୍ତ୍ର ଶାସ୍ତ୍ରକୁ ବୈଷ୍ଣବ, ଶୈବ ଓ ଶାକ୍ତ ତିନିଭାଗରେ ବିଭକ୍ତ କରାଯାଏ ଏବଂ ତତଜନିତ ଉପାସନା ପଦ୍ଧତିକୁ ବୈଷ୍ଣବାଗମ, ଶୈବାଗମ ଓ ଶାକ୍ତାଗମ କୁହାଯାଏ । ତନ୍ମଧ୍ୟରୁ ବୈଷ୍ଣବ ପରମ୍ପରା ଦୁଇଭାଗରେ ବିଭକ୍ତ- ଯଥା ପାଞ୍ଚ ରାତ୍ର ଏବଂ ବୈଖାନସ୍ କିନ୍ତୁ ପାଞ୍ଚରାତ୍ର ବିଧି ଶ୍ରୀକ୍ଷେତ୍ରରେ ପ୍ରଚଳିତ ।

ଯନ୍ତ୍ର-ଶବ୍ଦର ବ୍ୟୁତ୍ପତ୍ତି- ଯମ ଉପରମେ ଭ୍ୱାଦିଗଣୀୟ ଧାତୁ । ଏହି ଯମ ଧାତୁରୁ ତ୍ର ପ୍ରତ୍ୟୟରେ ଯଚ୍ଛତି ନିୟନ୍ତ୍ରିତଂ ଭବତି ଇତି ଯନ୍ତ୍ର । ଶାକ୍ତ ମତରେ ଯନ୍ତ୍ର ଦେବତାଙ୍କର ଶରୀର । ମନ୍ତ୍ର ତାଙ୍କର ଆତ୍ମା ବା ପ୍ରାଣ- ଯନ୍ତ୍ର, ମନ୍ତ୍ରମୟଂ ପ୍ରୋକ୍ତଂ ମନ୍ତ୍ରାତ୍ମା ଦେବତୈବ ହି, ଦେହାତ୍ମନା ଯଥା ଭେଦଃ ଯନ୍ତ୍ରଦେବତୟୋଃ ତଥା(ଶାକ୍ତାନନ୍ଦ ତରଙ୍ଗିଣୀ) ଯନ୍ତ୍ର ଉପରେ ଦେବତାଙ୍କ ପୂଜା ପ୍ରଶସ୍ତ ହୋଇଥିବାରୁ ଯନ୍ତ୍ରର ମହତ୍ତ୍ୱ ସର୍ବାଧିକ- ସର୍ବେଷାଂ ଏବ ଦେବାନାଂ ଯନ୍ତ୍ରପୂଜା ପ୍ରଶସ୍ୟତେ, ଶାଳଗ୍ରାମେ ମଣୌ ଯନ୍ତ୍ରେ ପ୍ରତିମାମଣ୍ଡଳେଷୁ ଚ, ନିତ୍ୟପୂଜା ହରେଃ କାର୍ଯ୍ୟ ନ ତୁ କେବଳଭୂତଳେ ।(ଗୌତମୀତନ୍ତ୍ର) ସବୁ ଦେବତାମାନଙ୍କର ପୂଜା ଯନ୍ତ୍ରରେ ହିଁ କରଣୀୟ । ଶାଳଗ୍ରାମ, ମଣି, ଯନ୍ତ୍ର, ପ୍ରତିମାଣୀ ଓ ମଣ୍ଡଳରେ ବିଷ୍ଣୁଙ୍କର ନିତ୍ୟ ପୂଜା କର୍ତ୍ତବ୍ୟ, ଖାଲି ଭୂମିରେ ଦେବପୂଜା ନିଷିଦ୍ଧ ।

ସବୁ ଦେବତାମାନଙ୍କର ସ୍ୱତନ୍ତ୍ର ଯନ୍ତ୍ର କଳ୍ପିତ ହୋଇଅଛନ୍ତି । ଯନ୍ତ୍ର ଜଣାନଥିଲେ ଅଷ୍ଟଦଳ ପଦ୍ମ ବିଶିଷ୍ଟ ଯନ୍ତ୍ର କରି ଦେବପୂଜା କରାଯାଏ । ବର୍ତ୍ତମାନର ଶ୍ରୀମନ୍ଦିର ଶ୍ରୀଯନ୍ତ୍ର ଉପରେ ନିର୍ମିତ । ଶତଦଳ କମଳ ଉପରେ ରତ୍ନ ସିଂହାସନ ବିରାଜିତ ହୋଇଥିବାବେଳେ ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ଶ୍ରୀଜଗନ୍ନାଥ ଯଥାକ୍ରମେ ତାରା ଭୁବନେଶ୍ୱରୀ ଏବଂ କାଳୀଯନ୍ତ୍ର ଉପରେ ଆସୀନ । ଦେବ ବିଗ୍ରହମାନେ ମଧ୍ୟ ତାନ୍ତ୍ରିକ । ଶ୍ରୀଜୀଉମାନେ ବୈଦିକ ଯଜ୍ଞାଦିରେ ଯୁପମୟୀ ମୂର୍ତ୍ତି କିନ୍ତୁ ବର୍ତ୍ତମାନ ଦାରୁମୟୀ ମୂର୍ତ୍ତି ଭାବରେ ବିରାଜିତ ହୋଇଅଛନ୍ତି ।

ମନ୍ତ୍ର-ଶବ୍ଦର ବ୍ୟୁତ୍ପତ୍ତି- ମନ୍ତ୍ରି ଗୁପ୍ତପରିଭାଷଣେ ଧାତୁର ମନ୍ତ୍ର୍ୟତେ ଗୁପ୍ତଂ ପରିଭାଷତେ ଅଥବା ମନ୍ତ୍ରୟତେ ଗୁପ୍ତଂ ପରିଭାଷତେ ଇତି ମନ୍ତ୍ରଃ । ମନ୍ତ୍ରାଃ ମନନାତ୍ ଇତି ଯାସ୍କୀୟ ନିରୁକ୍ତି । ମନନାତ୍ ସର୍ବଭୂତାନାଂ ତ୍ରାଣାତ୍ ସଂସାରସାଗରାତ୍ । ମନନରୂପା ହିତତ୍ଶକ୍ତି ମନନତ୍ରାଣ ଧର୍ମଣୀ । ସେହିପରି ମନନାତ୍ ତ୍ରାଣନାଜୈବ ମଦୃପସ୍ୟାବବୋଧନାତ୍ ବନ୍ତ୍ର ଇତ୍ୟୁଚତେ ବ୍ରହ୍ମନ୍ ମଦଧିଷ୍ଠାନତୋପି ବା (ଯୋଗଶିକ୍ଷା ବ୍ରହ୍ମଣେ) ସୋପି ମନ୍ତ୍ର ଜପନୀୟଃ, ଦ୍ରବ୍ୟାପଣେ ପଠନୀୟଶ୍ଚ ଇତି ଦ୍ୱିବିଧଃ, ଅର୍ଥାତ୍ ମନ୍ତ୍ର ଦୁଇ ପ୍ରକାରର, ପ୍ରଥମ ପ୍ରକାରେ ଜପ କରାଯାଏ । ଦ୍ୱିତୀୟ ପ୍ରକାର ଦେବତାଙ୍କୁ ଉପଚାର ପ୍ରଦାନ କାଳରେ ପଢାଯାଏ । ତନ୍ତ୍ର ବିଧିରେ ମନ୍ତ୍ରର ପ୍ରୟୋଗ ଦ୍ୱାରା ଦେବତା ମାନ୍ତ୍ରିକର ଅଧୀନ ହୁଅନ୍ତି - ଦୈବାଧୀନଂ ଜଗତସର୍ବଂ ମନ୍ତ୍ରାଧୀନସ୍ତ ଦେବତାଃ । ଉପଯୁକ୍ତ ଗୁରୁଙ୍କ ଠାରୁ ଶିକ୍ଷା ଲାଭକ ରି ମନ୍ତ୍ର ଗ୍ରହଣ କରାଯାଏ । ମନ୍ତ୍ରର ଅର୍ଥକୁ ଠିକ୍ ଭାବରେ ବୁଝି ଗୁରୁନିର୍ଦ୍ଦେଶିତ ବିଧି ଏକାଗ୍ର ଚିତ୍ତରେ ଜପକଲେ ହିଁ ଅଭିଷ୍ଟ ସିଦ୍ଧ ହୁଏ । ଅତିଧୀର ବା ଅତି ବେଗରେ ମନ୍ତ୍ରପାଠ ନିଷିଦ୍ଧ । ମନଃସନ୍ତୋଷଣଂ ଶୌଚଂ ମୌନଂ ମନ୍ତ୍ରାର୍ଥ ଚିନ୍ତନଂ, ଅବ୍ୟଗ୍ରମନିର୍ବେଦଃ ଜପଂସଂପତ୍ତି ହେତବଃ । ପ୍ରଥମେ ଗୁରୁ ଓ ଦେବତାଙ୍କୁ ଧ୍ୟାନ କରିବ, ତାହାପରେ ଶୁଦ୍ଧ ଉଚ୍ଚାରଣ କରି ମନ୍ତ୍ର ପାଠ କରିବା ହେଉଛି ବିଧି । ବହି ବା ଖାତାରୁ ଦେଖି ମନ୍ତ୍ର ପଢିଲେ ବା ଜପ କଲେ ତାହା ନିଷ୍ଫଳ ହୁଏ ।

ଶ୍ରୀ ନୀଳାଚଳ ଧାମରେ ଶ୍ରୀମନ୍ଦିର, କ୍ଷେତ୍ର ଓ ପୀଠ ଦେବତା ଯନ୍ତ୍ର ସ୍ଥାନରେ ଅଛନ୍ତି । ଏକାଧାରାରେ ଶୈବ-ଶାକ୍ତ-ବୈଷ୍ଣବ ପୂଜକ ତନ୍ତ୍ରମନ୍ତ୍ର ହେଉଛି ଗୁରୁଦତ୍ତ, ତାହା ସାଧନା ସ୍ଥଳରେ ଥିବା ପୂଜକଙ୍କର ମୁଖ୍ୟ ସହାୟକ ଆଧାର । ସେହି ଗୁରୁ ହେଲେ ରତ୍ନ ସିଂହାସନରେ ଉପବିଷ୍ଟ ବ୍ରହ୍ମାବିଷ୍ଣୁ ଓ ମହେଶ୍ୱର (ଶ୍ରୀସୁଭଦ୍ରା, ଶ୍ରୀଜଗନ୍ନାଥ ଏବଂ ଶ୍ରୀବଳଭଦ୍ର) ତେଣୁ ଶ୍ରୀକ୍ଷେତ୍ରରେ ପ୍ରଚଳିତ ଉପାସନା ପଦ୍ଧତିର ମୂଳଭିତ୍ତି ହେଲା-ଗୁରୁ ମନ୍ତ୍ର ସ୍ଥାନରେ, ପୂଜକ ତନ୍ତ୍ର ସ୍ଥାନରେ ଏବଂ ଦେବତା ଯନ୍ତ୍ର ସ୍ଥାନରେ ଉପସ୍ଥିତ ଅଛନ୍ତି ।

ବୈଷ୍ଣବାଗମର ପ୍ରାଚୀନ ସମ୍ପ୍ରଦାୟ ଏବଂ ଅର୍ବାଚୀନ ସମ୍ପ୍ରଦାୟଙ୍କ ଉପାସନା ବ୍ୟବସ୍ଥାରେ କିଛି ପାର୍ଥକ୍ୟ ରହିଛି । ରାମାନୁଜ ଓ ମାଧ୍ୱାଚାର୍ଯ୍ୟ ପ୍ରମୁଖ ପ୍ରାଚୀନ ବୈଷ୍ଣବ ସମ୍ପ୍ରଦାୟର ଅନ୍ତର୍ଗତ । ସେମାନଙ୍କ ଭାଷ୍ୟ ଗ୍ରନ୍ଥରେ କୃଷ୍ଣ, ଗୋପାଳ କୃଷ୍ଣ ଏବଂ ରାଧା ତତ୍ତ୍ୱ ପ୍ରକାଶିତ ହୋଇନାହିଁ । ଓଁ ନମୋ ଭଗବତେ ବାସୁଦେବାୟ ମନ୍ତ୍ର ହେଉଛି ପ୍ରାଚୀନ ପାଞ୍ଚରାତ୍ର ସ୍ୱୀକୃତ ମୌଳିକ ବୈଷ୍ଣବ ମନ୍ତ୍ର ପରବର୍ତ୍ତୀ କାଳରେ ବୈଷ୍ଣବୀୟ ବିଧିରେ ରାସତତ୍ତ୍ୱର ସନ୍ନିବେଶ ଘଟି ରାଗାନୁଗା ଭକ୍ତିକେନ୍ଦ୍ରିକ ସଂପ୍ରଦାୟର ଅଭିବୃଦ୍ଧି ଘଟି ଲକ୍ଷ୍ମୀ ବୀଜ ମାୟାବୀଜ ଓ କାମବୀଜ ସମନ୍ୱିତ କୃଷ୍ଣମନ୍ତ୍ରମାନ ରଚିତ ହୋଇଅଛନ୍ତି । ତନ୍ମଦ୍ୟରୁ ଅଷ୍ଟାଦଶାକ୍ଷର ପରମ ମନ୍ତ୍ର କ୍ଳୀଂ କୃଷ୍ଣାୟ ଗୋବିନ୍ଦାୟ ଗୋପୀଜନବଲ୍ଲଭାୟ ସ୍ୱାହା, ମନ୍ତ୍ର ଶ୍ରୀଜଗନ୍ନାଥଙ୍କର ଆରାଧ ମନ୍ତ୍ର ଭାବରେ ବର୍ତ୍ତମାନ ଶ୍ରୀମନ୍ଦିରରେ ଅନୁସୃତ ହେଉଅଛି । ଗୌତମୀୟ ତନ୍ତ୍ର ଏବଂ ନାରଦ ପାଞ୍ଚରାତ୍ର ଅନୁସାରେ ଗୋପୀ ବଲ୍ଲଭ କୃଷ୍ଣଙ୍କର ଉପାସନା ରାଧାକୃଷ୍ଣ ଉପାସନା ଭାବରେ ପରିଚିତ । ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କସହିତ ରାଧାଙ୍କୁ ସମ୍ପୃକ୍ତ କରାଇବାର ଚେଷ୍ଟା ହୋଇଥିଲେ ମଧ ଶ୍ରୀକ୍ଷେତ୍ରରେ ସେହି ପରମ୍ପରାକୁ ପୂର୍ଣ୍ଣ ଭାବରେ ଗ୍ରହଣ କରାଯାଇପାରିନାହିଁ । କାରଣ କୃଷ୍ଣଙ୍କ ସହିତ ରାଧାଙ୍କର ବୈଧ ଦାମ୍ପତ୍ୟ ସମ୍ପର୍କ ନାହିଁ । ତାଙ୍କର ମାଧ୍ୟମ ହେଉଛି ରାଗାନୁଗାଭକ୍ତି । ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ବିଧିରେ ବୈଧୀ ଭକ୍ତି ପ୍ରଧାନ ହୋଇଥିବାରୁ । ଶ୍ରୀ ରାଧାଙ୍କର ସମ୍ବନ୍ଧକୁ ଉପେକ୍ଷା କରାଯାଇଛି ।

ଭିନ୍ନ ଭିନ୍ନ ଉପାସନା ବିଧିରୁ କିଛି କିଛି ସାରମର୍ମ ନେଇ ମୂଳ ପାରମ୍ପରିକ ବୈଦିକ ଓ ଆଗମିକ ବ୍ୟବସ୍ଥାକୁ ଅକ୍ଷୁର୍ଣ୍ଣ ରଖି ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କ ପୂଜା ପଦ୍ଧତିରେ ଭିନ୍ନ ଭିନ୍ନ ସମୟରେ ଯେଉଁସବୁ ସଂସ୍କାର, ପରିବର୍ତ୍ତନ, ପରିବର୍ଦ୍ଧନ କରାଯାଇଅଛି ତାହା ପ୍ରସଙ୍ଗରେ ଅଧିକ ଗବେଷଣା ଆବଶ୍ୟକ । ପ୍ରବନ୍ଧର କଳେବରକୁ ଦୃଷ୍ଟିରେ ରଖି ଗୋପାଳାର୍ଚ୍ଚନ ପଦ୍ଧତି, ବାସୁଦେବ ପୂଜାପଦ୍ଧତି ଏବଂ ଭୁବନେଶ୍ୱରୀ ପୂଜା ପଦ୍ଧତି ଅନୁସାରେ ଉପାସନାର କ୍ରମ, ବିଧି, ମନ୍ତ୍ରମାନଙ୍କର ପ୍ରୟୋଗ ତାତ୍ପର୍ଯ୍ୟ, ଉପଯୋଗ ଓ ବିଶ୍ଳେଷଣ ପ୍ରସଙ୍ଗରେ ଆଲୋଚନା କରାଯାଇପାରିନାହିଁ । ଏସବୁ ପ୍ରସଙ୍ଗର ଉପସ୍ଥାପନା ପରବର୍ତ୍ତୀ ପ୍ରବନ୍ଧର ପର୍ଯ୍ୟାୟକ୍ରମେ କରାଯାଇପାରିବ ।

ଶ୍ରୀମନ୍ଦିର ପୁରୋହିତ
ପ୍ରତିହାରୀଗଳି, ମାଟିମଣ୍ଡପ ସାହି, ପୁରୀ



# ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ ଓ ରଥଯାତ୍ରାର ଆରମ୍ଭ

ପୀତାମ୍ବର ପ୍ରଧାନୀ



ବହୁ ପ୍ରାଚୀନ କାଳରୁ ପୁରୀର ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ରଥଯାତ୍ରା ଅନୁଷ୍ଠିତ ହୋଇ ଆସୁଅଛି । ଶ୍ରୀଜଗନ୍ନାଥ ମହାପ୍ରଭୁ ଶ୍ରୀମନ୍ଦିରରେ ପ୍ରତିଷ୍ଠା ହେବାଠାରୁ ରଥଯାତ୍ରା ହେଉଥିବାରୁ ଏହାର ପ୍ରଚୀନତା ୧୬୬ କୋଟି ବର୍ଷ ପୂର୍ବରୁ ବୋଲି ପୁରାତତ୍ତ୍ୱବିତ୍‌ମାନେ ଆକଳନ କରିଛନ୍ତି । ଜଗନ୍ନାଥ ମହାପ୍ରଭୁଙ୍କ ଶ୍ରୀ ମନ୍ଦିର ୧୯୬ କୋଟି ବର୍ଷ ତଳେ ପ୍ରତିଷ୍ଠା ହୋଇଥିଲା । ମନୁଙ୍କ ରାଜତ୍ୱ କାଳ ଅନୁଶୀଳନ କରି ଏହି ତଥ୍ୟ ଆକଳନ କରାଯାଇଛି । ଏହି ପୁରାତନ କାଳନିର୍ଣ୍ଣୟ ଓ ପ୍ରାଚୀନତା ପ୍ରସଙ୍ଗ ବହୁ ପୁରାତନ ଗ୍ରନ୍ଥମାନଙ୍କରେ ସ୍ଥାନ ପାଇଛି । ନୀଳାଦ୍ରି ମହୋଦୟ, ବାମଦେବ ସଂହିତା ନୀଳମତ ପୁରାଣ, ବ୍ରହ୍ମପୁରାଣ, ସ୍ୱତସଂହିତା, ନାରଦ ପୁରାଣ, ପଦ୍ମପୁରାଣ, କପିଳ ସଂହିତା ଇତ୍ୟାଦି ଗ୍ରନ୍ଥମାନଙ୍କରେ ଏ ବିଷୟ ବର୍ଣ୍ଣନା କରାଯାଇଛି । ପୁରୀର କ୍ଷେତ୍ର ମହାତ୍ମ୍ୟ ମଧ୍ୟ ଏଥିରେ ସନ୍ନିହିତ ହୋଇଛି ।

ରଥଯାତ୍ରା ପୁରୀରେ ହିନ୍ଦୁମାନଙ୍କର ଗୋଟିଏ ଜାତୀୟ ଅନୁଷ୍ଠାନ । ଉତ୍କଳୀୟମାନେ ବଡ ପ୍ରଶସ୍ତ ହୃଦୟର ସହିତ ରଥଯାତ୍ରା ସୃଷ୍ଟି କରିଥିଲେ ।

ରଥ ଦଉଡି ଟାଣିବା ଲାଗି ସମସ୍ତଙ୍କର ଆଗ୍ରହ ରହିଛି । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଲୋକେ ମହାଆନନ୍ଦରେ ରଥ ଦଉଡି ଟାଣନ୍ତି । ଏହିଠାରେ ଆଚାଣ୍ଡଳ ବ୍ରାହ୍ମଣଙ୍କର ସମାନ ଅଧିକାର ରଥଯାତ୍ରାର ଅନ୍ୟନାମ ପତିତପାବନ ଯାତ୍ରା । ଏହିଠାରେ ଏକତାମନ୍ତ୍ର ସାଧନ କରିବାକୁ ସୁବିଧା ସୁଯୋଗ ରହିଛି । ରାଜନୈତିକ ବକ୍ତୃତାରେ ମଧ୍ୟ ଏକତାମନ୍ତ୍ର ଆଣିବାପାଇଁ ରଥଯାତ୍ରାର ଦଉଡି ଭିଡାକୁ ଉଲ୍ଲେଖ କରାଯାଇଥାଏ । ଜଣେ ଲୋକ ତାର ସୁବିଧା ଅନୁଯାୟୀ ରଥ ଦଉଡି ଧରେ ଏବଂ ମନ ପୂର୍ଣ୍ଣ ହେଲାପରେ ଦଉଡି ଛାଡି ଦିଏ । କିନ୍ତୁ ରଥ ଠିକ୍ ସମୟରେ ଗୁଣ୍ଡିଚା ଘରେ ଲାଗେ । ଜାତୀୟ ଆନ୍ଦୋଳନରେ ଏହିପରି ମନ ଏବଂ ଧ୍ୟାନ, ଏକ ପ୍ରାଣ ଓ ଏକ ଭାବନାରେ ରଥ ଭିତ୍ତିରେ କାର୍ଯ୍ୟ କରିଥିଲେ । ରଥ ଯାତ୍ରା ଉପଲକ୍ଷେ ଭାରତର ସବୁ ପ୍ରଦେଶରୁ ଲୋକେ ଆସି ଏକତ୍ରିତ ହୁଅନ୍ତି । ବୈଦେଶିକମାନେ ମଧ୍ୟ ଏ ଜାଗାରେ କଣ ଅଛି ତାକୁ ଅନୁସନ୍ଧାନ କରିବାକୁ ଆସିଥାନ୍ତି । ଭାରତର ସିଦ୍ଧ ସାଧକମାନେ ମଧ୍ୟ ଏହିଠାକୁ ଆସି ଆପଣା ପିପାସା ମେଣ୍ଟାଇଥାନ୍ତି । କବୀର ସାଲବେଗ ଇତ୍ୟାଦି ଯାବନିକ ସାଧୁମାନେ ଜଗନ୍ନାଥଙ୍କ ଗୁଣକୀର୍ତ୍ତନରେ ଆପଣା ସ୍ୱର ମିଶାଇ ଦେଇ ଆପଣାଜୀବନକୁ ଧନ୍ୟ ମନେ କରିଛନ୍ତି ।

ନୀଳାଚଳ ଅତି ପ୍ରାଚୀନ କାଳରୁ ଥିଲା ନୀଳମାଧବ ମୂର୍ତ୍ତି ଏଠାରେ ପୂଜା ପାଉଥିଲେ। ଇନ୍ଦ୍ରଦ୍ୟୁମ୍ନ ମହାରାଜା ଦେଉଳ ତୋଳାଇ ଦାରୁବ୍ରହ୍ମ ମୂର୍ତ୍ତି ଦେଉଳରେ ବିଜେ କରାଇଥିଲେ । ଗୁଣ୍ଡିଚା ମନ୍ଦିରରେ ମୂର୍ତ୍ତି ନିର୍ମିତ ହୋଇଥିବାରୁ ଏହାକୁ ଜନକପୁର ବୋଲି କୁହାଯାଏ । ବର୍ଷକେ ଥରେ ତିନି ମୂର୍ତ୍ତି ରଥରେ ବସି ସେହି ଜନକପୁରକୁ ଯାଇ ସେଠାରେ ସାତଦିନ ରହି ପୁଣି ଫେରି ଆସନ୍ତି । ଏହି ଯାତ୍ରା ରଥଯାତ୍ରା । ଗୁଣ୍ଡିଚା ଯାତ୍ରା ଯିବା ଆସିବା ଦୁଇଦିନକୁ ମିଶାଇ ଏହା ନବଦିନ ଯାତ୍ରା ରୂପେ ପ୍ରଚଳିତ । ଏହା ମଧ୍ୟ ମହାବୀର ଯାତ୍ରା ଓ ଇନ୍ଦ୍ରଦ୍ୟୁମ୍ନ ମହୋତ୍ସବ ଭାବରେ ପ୍ରଚଳିତ । ଗୁଣ୍ଡିଚାରାଣୀ ଏହି ଯାତ୍ରା କରାଇବାରୁ ଏହାର ନାମ ଗୁଣ୍ଡିଚାଯାତ୍ରା । ସେ ଦେଉଳ ପୁରାତନ ହୋଇଥିବାରୁ ଏବେ ଜୀର୍ଣ୍ଣ ସଂସ୍କାର ହୋଇଛି । ବର୍ତ୍ତମାନ ଦେଉଳ ରାଜା ଅନଙ୍ଗ ଭୀମଦେବଙ୍କ ଅମଳରେ ୧୧୧୯ ଶତାବ୍ଦ ବା ୧୧୯୭ ଖ୍ରୀଷ୍ଟାବ୍ଦରେ ତିଆରି ହୋଇଥିଲା । ଅନଙ୍ଗ ଭୀମଦେବ କହିଥିଲେ ରାଜା ଜଗନ୍ନାଥ, ମୁଁ ନୁହେଁ । ରାଜା କପିଳେନ୍ଦ୍ର ଦେବ ଓଡିଶାର ରାଜା ମଧ୍ୟ ଏହି ବିଶ୍ୱାସରେ କାର୍ଯ୍ୟ କରୁଥିଲେ । ସେ



ମୁକ୍ତି ଚିନ୍ତାମଣି ନାମକ ଗ୍ରନ୍ଥ ରଚନା କରିଥିଲେ । କାଞ୍ଚିଯୁଦ୍ଧରେ ସ୍ୱୟଂ ଜଗନ୍ନାଥ ଅଶ୍ୱ ଧାରଣ କରି ଯୁଦ୍ଧକୁ ଯାଇଥିଲେ ଏବଂ ମାଣିକପାଟଣାରେ ମୁଦି ବନ୍ଧକଦେଇ ଦହିଖାଇଥିଲେ । ଶ୍ରୀ ମନ୍ଦିର ଜଗମୋହନରେ ଏହି ସ୍ମୃତି ଅଦ୍ୟାବଧି ବିଦ୍ୟମାନ ରହିଛି ।

ଜଗନ୍ନାଥଙ୍କ ଆବିର୍ଭାବ ସହ ରଥଯାତ୍ରାର ସୃଷ୍ଟି ଅଙ୍ଗାଙ୍ଗୀଭାବେ ଜଡିତ । ଏହି ବିଷୟଟି ପ୍ରାଚୀନ ଉତ୍କଳରେ ବିଶଦଭାବରେ ବର୍ଣ୍ଣିତ ହୋଇଛି । ସୂର୍ଯ୍ୟ କିରଣରେ ଯେଉଁ ରେଣୁ ଖଣ୍ଡମାନ ଉଡୁଥାଏ, ଦେଖାଯାଏ ନଯାଏ, ଲକ୍ଷ୍ୟ କରି ପାଏ ନାହିଁ ତାହାକୁ ପରମାଣୁ କୁହାଯାଏ ।

୨ ପରମାଣୁ = ଏକ ରେଣୁ = ଲକ୍ଷେ ରେଣୁ = ୧ତ୍ରୁଟି

୧୦୦ତ୍ରୁଟି = ୧ ବୋଧ, ୩ ବୋଧ = ୧ଲବ, ୩ଲବ = ୧କ୍ଷଣ

୫ କ୍ଷଣ = ୧ କାଷ୍ଠା, ୧୫ କାଷ୍ଠା = ୧କଳା

୧୫ କଳା = ୧ ଲଘୁତା ୧୫ ଲଘୁତା -୧ ଦଣ୍ଡ

୨ ଦଣ୍ଡ = ୧ଘଡି ବା ମୁହୂର୍ତ୍ତ ୧୫ ଦଣ୍ଡ = ୩୦ଘଡି

= ୧ଦିବସ, ୩୦ ଦଣ୍ଡ ଏକ ରାତ୍ର ଅହୋରାତ୍ର ୬୦ ଦଣ୍ଡ ଗ୍ରହମାନଙ୍କର ନାମାନୁଶାରେ ୭ ଦିନର ନାମ କରଣ ୭x୨ = ୧୪ ତିଥି

ପ୍ରତିପଦାଠାରୁ ପୂର୍ଣ୍ଣିମା ଯାଏ ୧୫ ତିଥି ଶୁକ୍ଳ ପକ୍ଷ ଏବଂ ଚନ୍ଦ୍ରକ୍ଷୟ ଅମାବାସ୍ୟାଯାଏ ୧୫ ତିଥି କୃଷ୍ଣପକ୍ଷ । ୨ ପକ୍ଷ-ଏକ ମାସ ୧୨ ମାସ = ୧ବର୍ଷ । ବର୍ଷ ଦୁଇପ୍ରକାର ସୌର ବର୍ଷ ଯଥା ମେଷ, ବୃଷ, ମିଥୁନ ଏବଂ ସାବର୍ଣ୍ଣ ବର୍ଷ ଯଥା ଚୈତ୍ର, ବୈଶାଖ, ଜ୍ୟୋଷ୍ଠକୁ କୁହାଯାଏ । ୬ ଋତୁ କୁମ୍ଭମାସ ଅର୍ଦ୍ଧଠାରୁ ମେଷାର୍ଦ୍ଧ ପର୍ଯ୍ୟନ୍ତ ବସନ୍ତ ଇତ୍ୟାଦି କ୍ରମେ ୧୨ ମାସ = ୧ଅୟନ

ଦେବତାମାନଙ୍କ ନାମାନୁସାରେ ମକର ଆଦି ୬ ମାସ = ୧ଦିନ ଏବଂ କକଡୀଦି ୬ ମାସ = ୧ ରାତ୍ର- ଯାନ୍ତୀକ୍ରୟକ

ବର୍ଷ ୪ ପ୍ରକାର ଯଥା-(୧)ସୌର (୨) ସାବର୍ଣ୍ଣ (୩)ଚାନ୍ଦ୍ରାୟଣ (୪) ନାକ୍ଷତ୍ରିକ ଅର୍ଥାତ୍ ପରିବତ୍ସର ଇଦାବସ୍ୱାର ଭାନୁବତ୍ସର ଓ ସମ୍ବତ୍ସର

ମନୁଷ୍ୟର ୧ମାସ-ପିତୃଲୋକର ଏକ ଦିନ
ମନୁଷ୍ୟର ୧ ବର୍ଷ- ଦେବତାମାନଙ୍କର ୧ ଦିନ

ମନୁଷ୍ୟ ବର୍ଷ, ସତ୍ୟ, ତ୍ରେତା, ଦ୍ୱାପର ଓ କଳି । ବର୍ଷ ପରିମାଣ ୪୩୨୦୦୦ବର୍ଷ, ଦେବତାଙ୍କର ୧୨ ବର୍ଷ ମନୁଷ୍ୟଙ୍କର ୧ ଯୁଗ ୭୧ ମନୁଷ୍ୟ ଯୁଗରେ ୧ ମନୁ, ୧୮ମନୁଭୋଗ ଶେଷରେ ଇନ୍ଦ୍ର, ଚନ୍ଦ୍ର ନକ୍ଷତ୍ର ଆଜିଯାନ୍ତି । ଏହିପରି ୧୪ ମନୁ ବ୍ରହ୍ମାଙ୍କ ଏକ ଦିନ । ମନୁଷ୍ୟ ବର୍ଷ ୩୧୧୦୪୦୦୦୦୦୦ ୦୦୦୦୦ ବ୍ରହ୍ମାଙ୍କ ୧ ବର୍ଷ ପ୍ରଥମ ପରାର୍ଦ୍ଧ ଓ ଦ୍ୱିତୀୟ ପରାର୍ଦ୍ଧ ।

ବ୍ରହ୍ମାଙ୍କ ପ୍ରଥମ ପରାର୍ଦ୍ଧରେ ପରମେଶ୍ୱର ଭୁଲୋକରେ ଜମ୍ବୁଦ୍ୱିପରେ ଉତ୍କଳ ଖଣ୍ଡର ଉତ୍କଳ ଦେଶରେ ଦକ୍ଷିଣ ମହୋଦଧିର ଉତ୍ତରତୀରରେ ଶ୍ରୀପୁରୁଷୋତ୍ତମ ବୈକୁଣ୍ଠରେ ଦଶଯୋଜନ ମଧରେ ଡାହାଣବର୍ତ୍ତକ ଶଙ୍ଖ ପଞ୍ଚକୋଷ ଭିତରେ ଶଙ୍ଖର ନାଭିମଣ୍ଡଳସ୍ଥ ନୀଳକନ୍ଦର ପର୍ବତ ନୀଳମଣି ଗଠିତ, ଶଙ୍ଖ ଚକ୍ର ଗଦା ପଦ୍ମ ସହିତ ଚତୁର୍ଭୁଜ ହୋଇ ନୀଳମାଧବ ମୂର୍ତ୍ତି ଅବତାର ହେଲେ । ଦେବତାମାନେ ପୂଜକ ହେଲେ ଶବର ଦ୍ୱିପରୁ ଯାଇ ଶବର ବୈଷ୍ଣବ ବିଶ୍ୱାବସୁ ପୂଜାକଲେ । ଏହାପରେ ପ୍ରଥମ ପରାର୍ଦ୍ଧ ଶେଷ ହଲା । ୨ୟ ପରାର୍ଦ୍ଧରେ ୫୧ ବର୍ଷ ପ୍ରବେଶ ହୁଅନ୍ତେ ପ୍ରଥମ ଏକ ଦିବସର ବ୍ରହ୍ମାଙ୍କ ନିଦ୍ରା ଆଳସ୍ୟ ତେଜା କରି ଚାହିଁ ଦେଖିଲେ ଚାରିଆଡେ ଜଳ ପରିପୂର୍ଣ୍ଣ । ସୃଷ୍ଟି ଇଚ୍ଛାକଲେ ୧୨ ସୂର୍ଯ୍ୟ ଉଦିତ ହେଲେ । ଅର୍ଦ୍ଧାସିନୀ ଦେବୀ ଅର୍ଦ୍ଧେକ ଜଳ ପାନ କଲେ । ପାତାଳରେ ସଂକର୍ଷଣ ଠାରେ ପ୍ରଚଣ୍ଡ ଅଗ୍ନି ବାଜିଲାରୁ ଜଳ ଶୃଷ୍ଟି ହେଲା । ମନୁ ସନ୍ଧି ଏକ ଯୁଗ ଗଡି ଗଲା ସତ୍ୟ ଯୁଗ ଆରମ୍ଭ ହେଲା । ୧୭୨୮୦୦୦ ବର୍ଷ ।

ଇନ୍ଦ୍ରଦ୍ୟୁମ୍ନ ମହାରାଜା ବଡ ବିଷ୍ଣୁ ଭକ୍ତ ଥିଲେ । ଏବଂ କେଉଁଠାକୁ ଗଲେ ବିଷ୍ଣୁଙ୍କ, ସହ ସାକ୍ଷାତ ହେବ ବୋଲି ଚିନ୍ତିତ ଥିଲେ । ଜଟାଳ ନାମକ ଜଣେ ବୈଷ୍ଣବ ଦୈବବସତଃ ରାଜସଭାରେ ପ୍ରବେଶ କରି ନୀଳମାଧବଙ୍କ କଥା ଜଣାଇଲେ, ରାଜା ଏ ସମ୍ବାଦ ପ୍ରାପ୍ତ ହୋଇ ରାଜା ପୁରୋହିତ ବିଦ୍ୟାପତିଙ୍କୁ ରାସ୍ତା ପ୍ରସ୍ତୁତି ଠିକଣା କରିବା ଲାଗି ପ୍ରେରଣ କଲେ । ବିଦ୍ୟାପତି ବହୁ ପରିଶ୍ରମ କରି ବିଶ୍ୱାବସୁ ଶବର ଘରେ ଯାଇ ପ୍ରବେଶ ହେଲେ ଏବଂ ତା ସହିତ ମିତ୍ରତା ସ୍ଥାପନ କଲେ । ଶବର କନ୍ୟା ସହିତ ବିଦ୍ୟାପତିଙ୍କର ବିବାହ ହେଲା ଏବଂ ତା ସାହାର୍ଯ୍ୟରେ ନୀଳମାଧବ ଦର୍ଶନ କଲେ । ବିଦ୍ୟାପତି ଦର୍ଶନଲାଭ କରି ଫେରି ଆସି ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କୁ ସଂବାଦ ଦେଲେ ।



ଇନ୍ଦ୍ରଦ୍ୟୁମ୍ନ ମହାରାଜା ସଂବାଦ ପାଇ କୃତ୍ୟକୃତ୍ୟ ହୋଇ ଦର୍ଶନ ଲାଭ ଆଶାରେ ଯାତ୍ରା କଲେ ଇତି ମଧ୍ୟରେ ନୀଳମାଧବ ଅନ୍ତର୍ଦ୍ଧାନ ହେଲେ । ରାସ୍ତାରେ ନାରଦ ଏ ସଂବାଦ ଇନ୍ଦ୍ରଦ୍ୟୁମ୍ନଙ୍କୁ ଜଣାଇଲେ । ରାଜା ସଂବାଦ ପାଇ ଯତପରୋନାସ୍ତି ଦୁଃଖିତ ହେଲେ ଏବଂ ଆପଣାଙ୍କୁ ଧିକ୍କାର କଲେ । ମାତ୍ର ଆକାଶବାଣୀ ହେଲାଯେ ତୁମ୍ଭେ ଆଉ ଏ ମୂର୍ତ୍ତି ଦେଖିପାରିବ ନାହିଁ ।

୫୦୦ ବର୍ଷ ମଧ୍ୟରେ ୧୦୦୦ ଅଶ୍ୱମେଧ ଯଜ୍ଞ କଲେ ଆମ୍ଭେ ଦାରୁବ୍ରହ୍ମ ରୂପରେ ଅବତୀର୍ଣ୍ଣ ହେବୁ । ସେତେବେଳେ ତୁମ୍ଭେ ଦର୍ଶନ ପାଇବ । ଆମ୍ଭେ ଚତୁର୍ଦ୍ଧା ମୂର୍ତ୍ତିରେ ଆବିର୍ଭୁତ ହେବୁ । ଯଥା(୧) ବଳଭଦ୍ର, ଶଙ୍ଖ ବର୍ଣ୍ଣ, ଋଗ୍‌ବେଦରେ ଚିନ୍ତା କରିବା ଓ ରାଜମନ୍ତ୍ରରେ ପୂଜା କରିବା (୨) ଜଗନ୍ନାଥ ନୀଳମେଘପରି ବର୍ଣ୍ଣ ଶ୍ୟାମବେଦରେ ଚିନ୍ତା କରିବ ଓ ଦ୍ୱାଦଶାକ୍ଷର ମନ୍ତ୍ରରେ ପୂଜା କରିବା ସୁଭଦ୍ରା ଅରୁଣ ଓ କୁଙ୍କୁମବର୍ଣ୍ଣ ମିଶ୍ରିତ, ଯଜୁର୍ବେଦରେ ଚିନ୍ତା, ଦେବୀଶକ୍ତି ମନ୍ତ୍ର ପୂଜା କରିବା, ରକ୍ତ ବର୍ଣ୍ଣ ଓ ଅଥର୍ବ ବେଦରେ ଚିନ୍ତା ।

ରାଜା ଏହି ଆକାଶବାଣୀ ଶୁଣି କ୍ଷେତ୍ର ମଧ୍ୟରେ ଅଶ୍ୱମେଧ ଯଜ୍ଞ ଆରମ୍ଭ କଲେ । ଇନ୍ଦ୍ରଦ୍ୟୁମ୍ନ ପୋଖରୀ ଠାରେ ଯଜ୍ଞ ହେଲା । ଦାରୁବ୍ରହ୍ମ ଆସି ସମୁଦ୍ରର ବାଙ୍କି ମୁହାଣ ନିକଟରେ ଲାଗିଲା । ସେଠାରୁ ଦାରୁ ଅଣାଯାଇ ଗୁଣ୍ଡିଚା ମନ୍ଦିରରେ ମୂର୍ତ୍ତି ଗଠିତ ହେଲା । ଇନ୍ଦ୍ରଦ୍ୟୁମ୍ନଙ୍କ ସ୍ତ୍ରୀ ନାମ ଗୁଣ୍ଡିଚା ଥିଲା । ଗୁଣ୍ଡିଚା ମନ୍ଦିର, ଗୁଣ୍ଡିଚା ଯାତ୍ରା ବା ରଥ ଯାତ୍ରା ତାଙ୍କ ନାମରେ ନାମିତ । ରଥଯାତ୍ରା ସେହିଦିନ ଠାରୁ ଆଜିଯାଏ ପୁରୀ ଶ୍ରୀକ୍ଷେତ୍ରରେ ଜଗନ୍ନାଥ ଧାମରେ ହୋଇ ଆସୁଛି । ନିଳାଦ୍ରି ମହୋଦୟ ଗ୍ରନ୍ଥରେ ରଥଯାତ୍ରାର ବିଶଦ ବିବରଣୀ ବର୍ଣ୍ଣିତ ହୋଇଅଛି । ଇନ୍ଦ୍ରଦ୍ୟୁମ୍ନ ମହାରାଜା ବଡଦେଉଳ ଶୁଭଦେଲେ । ୧୦୦୦ ହାତ ଉଚ୍ଚରେ ଦେଉଳ ପ୍ରସ୍ତୁତ କରାଇଲେ ଏବଂ ଦେବତା ମାନଙ୍କୁ ପ୍ରତିଷ୍ଠା କରାଇ ଦେଉଳରେ ବିଜେ କରାଇବା ଲାଗି ବ୍ରହ୍ମାଙ୍କ ନିକଟକୁ ଗଲେ ବ୍ରହ୍ମାଙ୍କ ସହ ଫେରି ଆସିଲା ବେଳକୁ ଗାଲ ମାଧବ ରାଜା ଦେଉଳ ଅଧିକାର କରି ଦେବତାଙ୍କୁ ପୂଜା କରୁଛି । ଇନ୍ଦ୍ରଦ୍ୟୁମ୍ନ ଗାଲମାଧବ ସହିତ ଯୁଦ୍ଧ କଲେ । ଗାଲମାଧବ ପରାସ୍ତ ହେଲେ । ଇନ୍ଦ୍ରଦ୍ୟୁମ୍ନ ଦେଉଳ ପ୍ରତିଷ୍ଠା କଲେ । ଠାକୁରମାନେ ଦେଉଳରେ ବିଜେ କଲେ । ନୃସିଂହ ମୂର୍ତ୍ତି ଦର୍ଶନ ପରେ ବ୍ରହ୍ମା ଶାନ୍ତି ମନ୍ତ୍ର ଜପ କଲେ ପରେ ଇନ୍ଦ୍ରଦ୍ୟୁମ୍ନ ଭକ୍ତିରେ ସନ୍ତୁଷ୍ଟ ,ହୋଇ ଜଗନ୍ନାଥ ବର ପ୍ରଦାନ କଲେ । ଇନ୍ଦ୍ରଦ୍ୟୁମ୍ନ ପ୍ରାର୍ଥନା କଲେ ପ୍ରଭୁ ମୋ ବଂଶରେ ଏ ଦେଉଳ ମୋର ବୋଲି କହିବାକୁ କେହି ନରହୁ ।

ଜଗନ୍ନାଥ ମହାପ୍ରଭୁ ଭକ୍ତର କାମନା ଅନୁସାରେ ବର ପ୍ରଦାନ କଲେ । ଫଳରେ ଇନ୍ଦ୍ରଦ୍ୟୁମ୍ନ ନିରାଶ ହେବାରୁ ଜଗନ୍ନାଥ ମହାପ୍ରଭୁ ସ୍ୱଂୟ ତାଙ୍କ ଲାଗି ଏଦିନ ବାର୍ଷିକ ଶ୍ରାଦ୍ଧ କରନ୍ତି । ଦେଉଳରେ ଏ ପ୍ରଥା ଅଦ୍ୟାବଧି ପ୍ରଚଳିତ ଅଛି ।

ଇନ୍ଦ୍ରଦ୍ୟୁମ୍ନ ମହାରାଜା ବହୁକାଳ ପୂଜା କରି ବ୍ରହ୍ମଲୋକ ଗମନ କଲେ ଏବଂ ତାହାଙ୍କ ପରେ ଶ୍ୱେତମୁଖ ରାଜା ଶାସନ କଲେ କଳି ଆରମ୍ଭ ପରେ ଅନେକ ରାଜା ପରମେଶ୍ୱରଙ୍କୁ ସେବା କରି କାଳ କଟାଇଥିଲେ । ପ୍ରଥମ ଦେଉଳ ୧୦୦୦ ହାତ ଉଚ୍ଚ କଥା ମାଦଳା ପାଞ୍ଜିରୁ ଜଣାଯାଏ ।

ରାଜାମାନଙ୍କ ଦାନ ଦ୍ୱାରା ଜଗନ୍ନାଥ ମହାପ୍ରଭୁଙ୍କ ସମ୍ପତ୍ତି ପୃଷ୍ଟିଲାଭ କଲା । ଯେ ସେତେବେଳେ ରାଜା ହେଲେ ସେମାନେ ଜଗନ୍ନାଥଙ୍କ ସେବାପୂଜା ଓ ଯାନିଯାତ୍ରାପାଇଁ ଭୂସମ୍ପତ୍ତି ଖଞ୍ଜା କରିଥିଲେ । ବର୍ତ୍ତମାନ ମଧ୍ୟ ରଥଯାତ୍ରା ପାଇଁ ଗଡଜାତ ରାଜ୍ୟମାନଙ୍କଠାରୁ କାଠ ଆସେ । ପୁରୀ ଓ ଦଶପଲ୍ଲା ଗଡଜାତ ମୁଖ୍ୟଅଟେ । ମଠମାନେ ମଧ୍ୟ ରଥଯାତ୍ରାରେ ସକ୍ରିୟ ଅଂଶ ଗ୍ରହଣ କରୁଛନ୍ତି ।

ଏଲ୍.ବି -୧୩୮
ବରଗଡ ବ୍ରିଟ କଲୋନୀ
ଭୁବନେଶ୍ୱର-୧୮





# ବସୁପ୍ରହରାଜ ଓ ଶ୍ରୀଜଗନ୍ନାଥ ପ୍ରସଙ୍ଗ

ନିରଞ୍ଜନ ରଥ



ରାଜରାଜୁଡା ଶାସନ ସମୟ । ସେତେବେଳେ ଆମ ରାଜ୍ୟର ଗଂଜାମ ଜିଲ୍ଲାରେ ବସୁ ପ୍ରହରାଜ ନାମକ ଜଣେ ବିଦ୍ୱାନ ଥିଲେ । ତାଙ୍କର ସଂସ୍କୃତ, ବ୍ୟାକରଣ, ସାହିତ୍ୟ, ନ୍ୟାୟ, ତନ୍ତ୍ର ଓ ତର୍କଶାସ୍ତ୍ର ଉପରେ ଅଗାଧ ପାଣ୍ଡିତ୍ୟ ଥିଲା । ତାଙ୍କ ଜୀବନୀ ଗ୍ରନ୍ଥରୁ ଜଣାପଡେ ପଣ୍ଡିତ ବସୁ ପ୍ରହରାଜ ଅସାଧ ସାଧନ କରି ଗଂଜାମ ଜିଲ୍ଲାର ପ୍ରସିଦ୍ଧ ତାରାତାରିଣୀ ପ୍ରତିମା ଦୁହିଁଙ୍କୁ ଗୋଟିଏ ଶକ୍ତି ମଧ୍ୟରେ ଆବଦ୍ଧ କରି ପ୍ରତିଷ୍ଠା କରିପାରିଥିଲେ । ଗୋଟିଏ ଶକ୍ତି ଭିତରେ ଦୁଇଟି ଲିଙ୍ଗ କାଳେଶ୍ୱର ଓ ରାମେଶ୍ୱର ପ୍ରତିଷ୍ଠା କରିବାର ଗୌରବ ଅର୍ଜନ କରିଥିଲେ । ସେ ରାଘବ ଯାଦବୀୟ କାବ୍ୟ ରଚନା କରିଥିଲେ । ଯେଉଁ କାବ୍ୟର ବାମପଟରୁ ପଢି ପଢି ଦକ୍ଷିଣପଟକୁ ଗଲେ ରାଘବ ଯେ ରାମଚନ୍ଦ୍ର ତଥା ଡାହାଣପଟରୁ ବାମପଟକୁ ପଢି ପଢି ଆସିଲେ ଯାଦବ ଯେ କୃଷ୍ଣଚନ୍ଦ୍ରଙ୍କୁ ବୁଝାଏ । ଏପରି କାବ୍ୟ ରଚନା କରିବା ପୃଥିବୀରେ ବିରଳ । ଯଥା-

ଶ୍ରୀରାମ ରାମାନୁଜ ଚାରୁଲୀଳା ଭାଗିରଥୀ ଭାନୁସୁତା ସମେତ
ତଦାବଗାହ୍ୟ ସୁଧୟଃ ସୃଜନ୍ତୁ ସରସ୍ୱତୀ ବର୍ଦ୍ଧିବ ।

କାବ୍ୟତୀର୍ଥେ

ସରଳାର୍ଥ- ଶ୍ରୀରାମଙ୍କର ବିଷୟ ବର୍ଣ୍ଣିତ ରାମାୟଣରେ ଓ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ବିଷୟ ବର୍ଣ୍ଣିତ ମହାଭାରତରେ ଯେଉଁ ପବିତ୍ରତା ରହିଛି, ଗଙ୍ଗା ଓ ଯମୁନାର ସଙ୍ଗମ ସ୍ଥଳରେ ଯେଉଁ ମାହାତ୍ମ୍ୟ ପ୍ରତିଷ୍ଠିତ ହୋଇଅଛି । ଅର୍ଥାତ୍ ଭାଗବତାଦି ଗ୍ରନ୍ଥରେ ଯେଉଁ ମାହାତ୍ମ୍ୟ ବିସ୍ତାରିତ ହୋଇଅଛି, ଏହି ରାଘବ ଯାଦବୀୟ କାବ୍ୟତୀର୍ଥରେ ସଜ୍ଜନମାନେ ନିମଗ୍ନହୋଇ ତ୍ରିବେଣୀ ସ୍ନାନ ପରି ପୁଣ୍ୟଫଳ ଲାଭ କରନ୍ତି ।

ଏସବୁର ମର୍ମ ପୁରୀ ଗଜପତି ମହାରାଜା ଲୋକଙ୍କ ମୁଖରୁ ଶୁଣି ତାଙ୍କୁ ଡକାଇ ନେଇ ମୁକ୍ତି ମଣ୍ଡପର ନୈରତ କୋଣରେ ଖମ୍ବ, ଲକ୍ଷ୍ମୀ ରନ୍ଧନଶାଳାର ଗୋଟିଏ ଚୁଲି ପ୍ରଦାନ କରିବା ସଙ୍ଗେ ସଙ୍ଗେ ଶ୍ରୀକ୍ଷେତ୍ରରେ ତାଙ୍କର ପରିବାର ଯାବତ୍ ଚନ୍ଦ୍ରାର୍କେ ରହିବା ନିମନ୍ତେ ଗୋଟିଏ ସାହିର ନାମ ଆଠଗଡିଆ ସାହି ନାମରେ ନାମିତ କରି ସେଠାରେ ବସବାସ କରିବା ପାଇଁ ସର୍ବବିଧ ସୁବିଧା କରିଦେଇଥିଲେ । ବର୍ତ୍ତମାନ ମଧ୍ୟ ଶ୍ରୀକ୍ଷେତ୍ରରେ ସେହି ଆଠଗଡିଆ ସାହି ଦେଖିବାକୁ ମିଳେ । ପ୍ରକାଶ ଥାଉ କି ମୁକ୍ତିମଣ୍ଡପରେ କେବଳ ପୁରୀ ଷୋହଳ ଶାସନ ବ୍ରାହ୍ମଣମାନଙ୍କର ପୁରୁଷାନୁକ୍ରମେ ଅଧିକାର ରହିଥାଏ ।

ଆଖପାଖ ଅଞ୍ଚଳର ଜନଶ୍ରୁତିରୁ ଜଣାଯାଏ ଯେ ଥରେ ପୁରୀ ସିଂହଦ୍ୱାରର ଅନତି ଦୂରେ ଜଣେ ଲୋକ ଭୀଷଣ ପେଟ ରୋଗରେ ଆକ୍ରାନ୍ତ ହୋଇ ଯନ୍ତ୍ରଣାରୁ ମୁକ୍ତି ପାଇବା ନିମନ୍ତେ ଜୀବନର ସମସ୍ତ ଆଶା ପରିତ୍ୟାଗ କରି ନୀଳଚକ୍ରକୁ ଚାହିଁ ନିର୍ଜଳ ନିରାହାରରେ ଅଧିଆ ପଡି ରହିଲେ । କିଛି ଦିନ ଏପରି ରହିବା ପରେ ସ୍ୱୟଂ ପ୍ରଭୁ ଜଗନ୍ନାଥ ତାଙ୍କୁ ସ୍ୱପ୍ନରେ କହିଲେ, ତୁମେ ପେଟପୁରା ବିଷ୍ଠା ଖାଇଲେ ତୁମର ପେଟ ଯନ୍ତ୍ରଣା ଆପେ ଆପେ କମିଯିବ । ନିଦ୍ରା ଭଙ୍ଗ ପରେ ପେଟ ରୋଗୀ ଜଣକ ଏ କଥାର ମର୍ମ ବୁଝି ନପାରି ମୁକ୍ତି ମଣ୍ଡପର ପଣ୍ଡିତମାନଙ୍କୁ ଜଣାଇଲେ । ସେତେବେଳେ ବସୁ ପ୍ରହରାଜ ମୁକ୍ତିମଣ୍ଡପରେ ଅନୁପସ୍ଥିତ ଥିଲେ । ଉପସ୍ଥିତ ପଣ୍ଡିତମାନେ କହିଲେ, ଆମେ ଏକଥା କେହି କହିପାରିବୁ ନାହିଁ ।

ପେଟରୋଗୀ ଜଣକ ବହୁକଷ୍ଟ ସ୍ୱୀକାର କରି ପୁରୁଷୋତ୍ତମପୁର ନିକଟସ୍ଥ ବୀର ଜଗନ୍ନାଥପୁର ଶାସନରେ ପହଞ୍ଚି ବସୁ ପ୍ରହରାଜଙ୍କ ସହ ସାକ୍ଷାତ କରି ସ୍ୱପ୍ନ ବୃତ୍ତାନ୍ତ ବର୍ଣ୍ଣନା କଲେ । ସମସ୍ତ ବିଷୟ ଶୁଣିବା ପରେ ବସୁ ପ୍ରହରାଜ କହିଲେ, ଏହି ସାଧାରଣ କଥାଟି ମୁକ୍ତିମଣ୍ଡପର ପଣ୍ଡିତମାନେ ସମାଧାନ କରିପାରିଲେ ନାହିଁ । ହେଉ ସଂଧ୍ୟାବେଳେ ଦେଖିବା ।

ସେହିଦିନ ସଂଧ୍ୟା ସମୟରେ ଜଗନ୍ନାଥପୁର ଶାସନରେ ଗୋଟିଏ ବ୍ରତୋପନୟନ ଭୋଜିରେ ଯୋଗ ଦେବା ପାଇଁ ପ୍ରହରାଜ ମହାଶୟଙ୍କୁ ନିମନ୍ତ୍ରଣ ଥାଏ । ବସୁପ୍ରହରାଜ ଉକ୍ତ ଭୋଜିରେ ଯୋଗ ନ ଦେଇ ପେଟରୋଗୀକୁ ଭୋଜିରେ ଯୋଗ ଦେବାପାଇଁ ନିର୍ଦ୍ଦେଶ ଦେଲେ । ରୋଗୀଜଣକ ଆଶ୍ଚର୍ଯ୍ୟ ହୋଇ କହିଲେ, ମହାଶୟ ମୁଁ ପେଟ ଯନ୍ତ୍ରଣାରେ ଛଟପଟ ହେଉଛି । ଯାହା ଖାଏ ସାଙ୍ଗେ ସାଙ୍ଗେ ବାନ୍ତି ହୋଇଯାଏ । ମୁଁ କିପରି ଭୋଜିରେ ଯୋଗ ଦେବି? ବସୁ ପ୍ରହରାଜ କହିଲେ, ତୁମେ ଯାଅ ଯେତିକି ଇଚ୍ଛା ସେତିକି ଖାଅ । ରୋଗୀଜଣକ ବସୁ ପ୍ରହରାଜଙ୍କ କଥା ଅମାନ୍ୟ କରି ନ ପାରି ବ୍ରତୋପନୟନ ଭୋଜିରେ ଯୋଗ ଦେଇ ଗୋଟିଏ ଗୁଣ୍ଡା ଖାଇବାପରେ ତାଙ୍କ ପେଟଯନ୍ତ୍ରଣା କିଛିଟା କମ୍ ହେବା ଭଳି ଅନୁଭବ କଲେ । ପୁଣି ଆଉ ଗୋଟିଏ ଗୁଣ୍ଡା ଖାଇବପରେ ଆହୁରି କିଛିଟା କମିବା ଭଳି ଅନୁଭବ କଲେ । ଏପରି ସେ ପେଟପୁରା ଖାଇବା ବେଳକୁ ତାଙ୍କର ପେଟ ଯନ୍ତ୍ରଣା ସଂପୂର୍ଣ୍ଣ ଉଣା ହୋଇଯାଇଥିଲା । ଏଥିରେ ରୋଗୀଟିର ଆନନ୍ଦର ସୀମା ରହିଲାନାହିଁ । ଘରକୁ ଫେରିବା ମାତ୍ରେ ପ୍ରହରାଜ ପଚାରିଲେ, ପେଟ ଅଧିକା କାଟୁଛି, ନା କିଛି କମ୍ ହେଲା ? ରୋଗୀ ଜଣକ ପ୍ରଫୁଲ୍ଲ ମନରେ କହିଲେ, ଆଜ୍ଞା ସଂପୂର୍ଣ୍ଣ କମିଗଲା, ବର୍ତ୍ତମାନ ମୁଁ ସୁସ୍ଥ । ବସୁ ପ୍ରହରାଜ କହିଲେ କିପରି କମିଲା ଜାଣ ? ଯେଉଁ ବ୍ରତୋପନୟନ ଭୋଜି ଆପଣ ଖାଇବାକୁ ଯାଇଥିଲେ, ସେହି ବ୍ରାହ୍ମଣ ଜଣକ ତାଙ୍କର ଝିଅଟିକୁ ଦୁଇଶତ ଟଙ୍କାରେ ଗୋଟିଏ ବୃଦ୍ଧ ବ୍ରାହ୍ମଣଙ୍କୁ ବିକ୍ରି କରି ବିକ୍ରିଲବ୍ଧ ଧନରେ ବ୍ରତୋପନୟନ ଭୋଜି କରିଛନ୍ତି । ଯେହେତୁ ଝିଅଧନ ବିଷ୍ଠା ଧନ ସହିତ ସମାନ, ଆପଣ ସେ ଭୋଜି ଖାଇବା ବିଷ୍ଠା ସଙ୍ଗେ ସମାନ ହେଲା । ତେଣୁ ଆପଣଙ୍କର ପେଟ ଯନ୍ତ୍ରଣା ସଂପୂର୍ଣ୍ଣ ରୂପେ କମିଗଲା । ଜଗନ୍ନାଥଙ୍କ ସ୍ୱପ୍ନ ସାକାର ହେଲା ।

ରାମ ନଗର
ବ୍ରହ୍ମପୁର - ୭୬୦୦୮
ଗଞ୍ଜାମ



# ହାତରେ ମୋ ମୁଠା ମୁଠା ଶରଧାବାଲି

ପୂର୍ଣ୍ଣଚନ୍ଦ୍ର ଦାସ



ଜଗନ୍ନାଥ ହେ, କିଛି ମାଗୁନାହିଁ ତୋତେ
ଧନ ମାଗୁନାହିଁ ଜନ ମାଗୁ ନାହିଁ
ମାଗୁଛି ଶରଧା ବାଲିରୁ ହାତେ ।

ଶରଧାବାଲି ପାଇଁ ଭକ୍ତମନରେ ଅସୀମ ଶ୍ରଦ୍ଧା । ଅସରନ୍ତି ପ୍ରେମ । ନରେନ୍ଦ୍ରରେ ସ୍ନାନ ସାରି ଶରଧାବାଲିକୁ ମୁଣ୍ଡରେ ମାରି ଭକ୍ତ ଭାବ ବିଭୋର ହୁଏ । ସେ ପାଏ ପରମ ତୃପ୍ତି । ନିମ୍ମଜିତ ହୁଏ ବିଭୁ ପ୍ରେମରେ । ଶରଧାବାଲି ପାଲଟି ଯାଏ ତାପାଇଁ ପବିତ୍ରତାର ସ୍ୱର୍ଣ୍ଣାଭ ପ୍ରଲମ୍ଭୁ । ଯେଉଁଠି ଝରିଯାଏ ନବଦିନ ବ୍ୟାପି ଘୋଷ ଯାତ୍ରାରେ କଳାଠାକୁରଙ୍କର ଶ୍ରୀଚରଣର ପଦରାଜ । ଶ୍ରୀଅଙ୍ଗରୁ ଝରିପଡେ ବାସଚନ୍ଦନ । ଶରଧା ବାଲିର ଅଣୁ ପରମାଣୁରେ ଘୁରିବୁଲେ ଚନ୍ଦନ ତୁଳସୀର ବାସ । ଭକ୍ତମନରେ ସୃଷ୍ଟିକରେ ବିଷ୍ଣୁପ୍ରେମର ତନ୍ମୟତା । ଶରଧାବାଲି ପାଲଟିଯାଏ ଭକ୍ତ ଓ ଭଗବାନଙ୍କର ସ୍ୱର୍ଗୀୟ ମିଳନର ମୁକ୍ତି ତୀର୍ଥ ଜଗନ୍ନାଥ ପ୍ରେମୀ ଭକ୍ତପାଇଁ ।

ଅଷ୍ଟାଦଶ ଶତାବ୍ଦୀର ପ୍ରସିଦ୍ଧ ଓଡିଆ କବି ଭକ୍ତ ବନମାଳୀ ଦାସ ଜଣାଇଲେ ତାଙ୍କ ଆରାଧ୍ୟ ପ୍ରଭୁ ଜଗନ୍ନାଥଙ୍କ ପଦ ପଙ୍କଜରେ ତାଙ୍କ ହୃଦୟର ନୈବେଦ୍ୟ ଜଣାଣ ମାଧ୍ୟମରେ । ହେ ମହାପ୍ରଭୁ, ହେ ବଳିଆରଭୁଜ ତୁମେତ ଚଉବର୍ଗଦାନୀ ମୁଁ ତୁମକୁ କଣବା ମାଗିବି । ହେ ପଭୁ ଧନ, ଜନ ଐଶ୍ୱର୍ଯ୍ୟ, ସୁଖ, ସ୍ୱାଛନ୍ଦ୍ୟ ମୋର କଣହେବ, ତୁମେତ ମୋର ସବୁ କିଛି । ମାଗୁଛି ମୁଁ କେବଳ ତୁମ ଶରଧାବାଲିରୁ ହାତେ....

ଭକ୍ତମାଗେ ଶ୍ରୀଚରଣ ତଳେ ଦୁଇପାଦ ଜାଗା, ଶରଧା ବାଲିରୁ ହାତେ । ଏ ସଂସାର ସାଗର ପାରିହେବାପାଇଁ ଭବବନ୍ଧନରୁ ମୁକ୍ତି ପାଇବା ପାଇଁ କେହି କେହି ଭକ୍ତ ଆକୁଳ ନିବେଦନ କରିଥାନ୍ତି ଜଗନ୍ନାଥଙ୍କ ପଦାରବିନ୍ଦରେ । କିଛିତ ଦେଲନାହିଁ ପ୍ରଭୁ କିମ୍ବା ଦେଲ ଯାହା ନେଲ ତାହା ବୋଲି କହି କହି କେହି ଗାଳି ଦିଅନ୍ତି । ନିଜର ଦୁଃଖ, କଷ୍ଟ ପାଇଁ କେହି ପୁଣି ଗାଳି ଦିଅନ୍ତି କଳାଶ୍ରୀମୁଖକୁ ।

ମଧ୍ୟଯୁଗର ଭକ୍ତକବି କବିସୂର୍ଯ୍ୟ ବଳଦେବ ରଥ ଥିଲେ ଏକାନ୍ତ ଜଗନ୍ନାଥଙ୍କର ପରମ ଭକ୍ତ । ଜଗନ୍ନାଥଙ୍କ ପାଦପଦ୍ମରେ ସେ ନିଜକୁ ସମର୍ପଣକରି ଜୀବନର ସମସ୍ତ ଦୁଃଖକୁ ସେ ଆଦରି ନେଇଥିଲେ ଭକ୍ତ ନିମନ୍ତେ ଭଗବାନ ହିଁ ଏକମାତ୍ର ତ୍ରାଣକର୍ତ୍ତା । ହେଲେ ଜଗନ୍ନାଥ ବଳଦେବଙ୍କ ଦୁଃଖ ନଶୁଣିବାରୁ ଅଭିମାନୀ ମନ ତାଙ୍କର ବ୍ୟାକୁଳ ହୋଇ ଗୁମୁରି ଉଠିଛି । ଭକ୍ତ ସର୍ବଦା ଅଭିମାନୀ ।

କବିସୂର୍ଯ୍ୟଙ୍କ ଅନ୍ୟଏକ ଜଣାଣ ସେ ଭକ୍ତିପୂର୍ଣ୍ଣ ଭାବନା ଓ ଅନ୍ତରର ଦୈବକ୍ତିକ ଭକ୍ତିଭାବ ଜଗତର ନାଥ ଜଗନ୍ନାଥଙ୍କ ପାଖରେ ହୃଦୟର ଭକ୍ତି ଅର୍ଘ୍ୟ 'ସର୍ପଜଣାଣ' ମାଧ୍ୟମରେ ଜଗନ୍ନାଥଙ୍କୁ ସର୍ପ ସହିତ ତୁଳନା କରି କବିତ୍ୱର ଜଣେ ଦରଦି ଭକ୍ତର ପ୍ରଚଣ୍ଡ ଅଭିବ୍ୟକ୍ତି ପ୍ରକାଶ କରିଛନ୍ତି ।

ଜଣେ ଭକ୍ତ ଜଗନ୍ନାଥଙ୍କୁ ଗାଳି କରିପାରେ, ତାଙ୍କ ଉପରେ ଅଭିମାନ କରିପାରେ, ଶ୍ରୀଭୁଜ ତଳେ ଆଶ୍ରା ମାଗିପାରେ, ଶରଧାବାଲିରୁ ହାତେ ମାଗିପାରେ । କେବଳ ଭକ୍ତବତ୍ସଳ ଜଗନ୍ନାଥ କେତେବେଳେ ଦିଅନ୍ତି, ପୁଣି କେତେବେଳେ ଭକ୍ତକୁ କଷଟି ପଥରରେ ପରୀକ୍ଷା କରନ୍ତି । ସେଥିପାଇଁ ତ ସିଏ ହଟିଆ ଠାକୁର..... ସାଧାରଣତଃ ମନରେ ପ୍ରଶ୍ନଉଠେ ଶରଧାବାଲିର ଅବସ୍ଥିତି କେଉଁଠାରେ ? ଓ ଏହାର ମାହାତ୍ମ୍ୟ କଣ ?

ଜଗନ୍ନାଥ ଧାମ ଯାହାକି ଶ୍ରୀକ୍ଷେତ୍ର ନାମରେ ପୃଥିବୀ ବିଖ୍ୟାତ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ଭାବରେ ପୁରାଣଶାସ୍ତ୍ରରେ ବର୍ଣ୍ଣିତ, ସେଇ କ୍ଷେତ୍ରରେ ଆମେ ଦେଖୁ ଶରଧାବାଲି । ଜଗନ୍ନାଥଙ୍କ ମାଉସୀମା ମନ୍ଦିର ବା ଶ୍ରୀଗୁଣ୍ଡିଚା ମନ୍ଦିର ନିକଟରେ ଠୁଳୀଭୁତ



ଯେଉଁ ବାଲି, ତାହା ହିଁ ଶରଧାବାଲି ନାମରେ ବର୍ତ୍ତମାନ ବିଦିତ ଓ ପରିଚିତ । ସେଇ ବାଲି ଆଜି ଶରଧାବାଲିର ସ୍ମୃତି ବହନ କରେ । ସେଇବାଲି ଭକ୍ତ ପାଇଁ ଅତି ପବିତ୍ର ଓ ବିଷ୍ଣୁପ୍ରେମର ବିଭୂତି ।

ଶ୍ରୀକ୍ଷେତ୍ର ଧାମରେ ଶରଧାବାଲିର ସ୍ଥିତି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଗୁଣ୍ଡିଚା ମନ୍ଦିରର ପାଦଦେଶରୁ ବଡଶଙ୍ଖ ପର୍ଯ୍ୟନ୍ତ ଲମ୍ୱିଯାଇଛି ଏ ବାଲୁକାର ଶଯ୍ୟା । ଗୁଣ୍ଡିଚା ମନ୍ଦିର ହେଉଛି ଜଗନ୍ନାଥଙ୍କର ଜନ୍ମସ୍ଥାନ । ତେଣୁ ଏହାର ନାମ ଜନକପୁର । ଗୁଣ୍ଡିଚା ମଣ୍ଡପକୁ ମହାବେଦୀ, ଯଜ୍ଞବେଦୀ ବୋଲି ଆଖ୍ୟା ଦିଆଯାଏ । ରାଜା ଇନ୍ଦ୍ରଦ୍ୟୁମ୍ନ ଅଶ୍ୱମେଧ ଯଜ୍ଞକରି ଶ୍ରୀ ଜିଉମାନଙ୍କୁ ପାଇଥିଲେ ବୋଲି ଏହାର ନାମ ଯଜ୍ଞବେଦୀ । ବର୍ଷକେ ଥରେ ଗଜପତି ଶ୍ରୀଜଗନ୍ନାଥ ଭାଇ ଭଉଣୀଙ୍କୁ ସାଙ୍ଗରେ ନେଇ ନିଜ ଜନ୍ମସ୍ଥାନକୁ ରଥରେ ବସି ଆସନ୍ତି । ଏହି ବେଦୀରେ ସାତଦିନ ଅବସ୍ଥାନ କରି ଶ୍ରୀମନ୍ଦିରକୁ ପୁଣି ଫେରିଯାଆନ୍ତି । ଯିବାଦିନ ଓ ଆସିବା ଦିନକୁ ମିଶାଇ ନବଦିନ ହୋଇଥିବାରୁ ଏହାକୁ ନବଦିନ ଯାତ୍ରା ବୋଲି କୁହାଯାଏ । ଏହି ନବଦିନ ବ୍ୟାପି ଯାତ୍ରାର ଶରଧାବାଲିରେ ପାଦ ପଡିଗଲେ ଭକ୍ତପ୍ରାଣ ଭକ୍ତିଭାବରେ ଉଦବେଳିତ ହୁଏ ।

ଭକ୍ତ ନୀଳାମ୍ୱର ଦାସ ଇନ୍ଦ୍ରଦ୍ୟୁମ୍ନଙ୍କ ମୁଖରେ ଆବେଦନ କରିଅଛନ୍ତି ଶ୍ରୀଜଗନ୍ନାଥଙ୍କୁ । ଶ୍ରଦ୍ଧାର ଆବେଦନ, ଶ୍ରଦ୍ଧାର ପ୍ରାର୍ଥନା । ଶ୍ରଦ୍ଧା ହେଉଛି ଏକ ଭଗବତ ସଦଗୁଣ । ଯେ ଶ୍ରଦ୍ଧାବାନ ସେ କେବଳ ଅସାଧ ସାଧନ କରିପାରେ ତେଣୁ ଗୀତାରେ ଭଗବାନ କୃଷ୍ଣ କହିଛନ୍ତି ଶ୍ରଦ୍ଧାବାନ ଲଭତେ ଜ୍ଞାନଂ ତତ୍‌ପରେ ସଂଯତେନ୍ଦ୍ରିୟ । ଭକ୍ତ ଓ ସାଧକମାନଙ୍କ ପାଇଁ ସିଦ୍ଧିର ଏକମାତ୍ର ଚାବିକାଠି ହେଉଛି ଶ୍ରଦ୍ଧା । ମନରେ ଶ୍ରଦ୍ଧା ସୃଷ୍ଟି ହେଲେ, ସୃଷ୍ଟିହୁଏ ଅଭୀପ୍‌ସା । ନିଜକୁ ଚିହ୍ନିବା, ନୂତନତ୍ୱର ସନ୍ଧାନ ପାଇଁ ମନରେ ଅଦ୍ୟମ ଅଭୀପସା ଜାଗ୍ରତ ହେଲେ, ମୋକ୍ଷର ଦ୍ୱାର ଉନ୍ମୁକ୍ତ ହୁଏ । ଶେଷରେ ନିଜକୁ ସମର୍ପଣ କରିବାକୁ ହୁଏ ପ୍ରଭୁ ପଦାରବିନ୍ଦରେ । ଜୀବନର ସବୁ ସମସ୍ୟାକୁ ପ୍ରଭୁଙ୍କ ପାଦତଳେ ସମର୍ପଣ କରିଦେଲେ ଜୀବନରେ ଶାନ୍ତିର ଚନ୍ଦନଶୀତଳ ସ୍ପର୍ଶଆସେ ଏବଂ ଜୀବନ ସାର୍ଥକ ହୁଏ । ମାନବଚେତନାର ରୂପାନ୍ତର ଓ ନବନିର୍ମାଣ ଘଟେ । ଯାହାକି ମର୍ତ୍ତ୍ୟରେ ହୋଇପାରେ ଅମରାବତୀର ଅମୃତମୟ ସନ୍ଧାନ । ସବୁର ମୂଳ ତତ୍ତ୍ୱଟି ହେଉଛି ଶ୍ରଦ୍ଧା । ଶ୍ରଦ୍ଧାହେଉଛି ଜଗନ୍ନାଥ ସଂସ୍କୃତିର ଏକ ମହନୀୟ ପରମ୍ପରା । ବିଶ୍ୱପ୍ରେମ ପାଇଁ ଶ୍ରଦ୍ଧାର ଭୂମିକା ଯେ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ, ଏକଥା ମୁକ୍ତକଣ୍ଠରେ ଏବେ ସ୍ୱୀକାର କରାଯାଇପାରେ । ମହାମିଳନ ପୀଠ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଶରଧାବାଲି ସେହି ଶ୍ରଦ୍ଧା ସହାନୁଭୂତିର ବିଶ୍ୱପରିବାର ଗଠନ ପାଇଁ ସେ ବାଲିର ଆତ୍ମିକ ସତ୍ତାରୁ ଯେଉଁ ବସୁଧୈବ କୁଟୁମ୍ବକମ୍ ର ଆହ୍ୱାନ ଆସୁଛି ତାକୁ ଶୁଣିବାରବେଳ ଆଜି ଆସିଛି । କାରଣ ପ୍ରତ୍ୟେକ ସମୟ ହେଉଛି ଦେବମୁହୂର୍ତ୍ତ ।

ପୌରାଣିକ ପୃଷ୍ଠଭୂମି

ବ୍ୟାସଦେବକୃତ ସ୍କନ୍ଦପୁରାଣରେ ଶରଧାବାଲି ସଂପର୍କରେ ଗୋଟିଏ କାହାଣୀ ଦେଖିବାକୁ ମିଳେ । ଅବନ୍ତୀର ରାଜା ଇନ୍ଦ୍ରଦ୍ୟୁମ୍ନ ଯେତେବେଳେ ଶ୍ରୀକ୍ଷେତ୍ରକୁ ଆସିବାପାଇଁ ବର୍ତ୍ତମାନ ଥିବା ଅଠରନଳାଠାରେ ପହଞ୍ଚିଲେ ସେତେବେଳେ ଘାଟଜଗୁଆଳୀ ଘାଟପୃଷ୍ଠି ରାଜା ଇନ୍ଦ୍ରଦ୍ୟୁମ୍ନଙ୍କୁ ଛାଡି ଦେଲାନାହିଁ । ସେ କହିଲା ଯେ ଶ୍ରୀକ୍ଷେତ୍ର ପରି ଏକ ପବିତ୍ର ପୀଠକୁ ସାଧୁସନ୍ଥ ବ୍ୟତୀତ ଅନ୍ୟକେହି ଯାଇପାରିବେନାହିଁ । ସାଧୁ, ସନ୍ନ୍ୟାସୀମାନେ ହିଁ କେବଳ ଶ୍ରକ୍ଷେତ୍ରରେ ଅବସ୍ଥାନ କରିପାରବେ, ରାଜକୀୟ ଅହମିକାର ଦମ୍ଭ ସେଠାରେ ହୋଇପାରିବ ନାହିଁ । ଏକଥା ଶୁଣି ରାଜା ବିବ୍ରତ ହୋଇ ପଡିଲେ । ଅନ୍ୟ ଉପାୟ ନପାଇ ସେଠାରୁ ଫେରିଗଲେ ଏବଂ ଚନ୍ଦନପୁର ସ୍ଥିତ କପୋତେଶ୍ୱର ମହାଦେବଙ୍କ ନିକଟରେ ଗୁହାରିଆ ପଡିଲେ । ମହାଦେବଙ୍କ ନିର୍ଦ୍ଦେଶ କ୍ରମେ ରାଜା ଇନ୍ଦ୍ରଦ୍ୟୁମ୍ନ ରାଜାଙ୍କର ବେଶ ପରିହାର କରି ସନ୍ନ୍ୟାସୀ ବେଶରେ ଯିବାରୁ ଘାଟପୃଷ୍ଠି ଘାଟ ଛାଡିଦେଲା ଏବଂ ରାଜା ଶ୍ରୀକ୍ଷେତ୍ର ପଦାର୍ପଣ କଲେ ।

ସେଠାରେ ପହଞ୍ଚି ରାଜା ଯାହା ଦେଖିଲେ ସେଥିରେ ସେ ବିବ୍ରତ ହୋଇଉଠିଲେ । ଚତୁର୍ଦ୍ଦିଗରେ ରାଶି ରାଶି ବାଲି ତାଙ୍କ ଦୃଷ୍ଟିପଥାରୁଢହେଲା । ଶବର ପୂଜିତ ଇନ୍ଦ୍ରନୀଳମଣି ପ୍ରସ୍ତର ନିର୍ମିତ ନୀଳମାଧବଙ୍କର ସ୍ଥିତି ସେହି ସୀମାହୀନ ବାଲୁକାରାଶୀ ଭିତରେ ଅବଲୁପ୍ତ ହୋଇଯାଇଥିଲା । ବିକଳ ହୋଇ ରାଜା ପ୍ରଳାପ କରିବାକୁ ଲାଗିଲେ ।

କିଂ କରୋମି, କ୍ୱଂ ଗଚ୍ଛାମି
କ୍ୱମେ ରକ୍ଷା କରିଷ୍ୟାମି

କିଛି ସମୟପରେ ନାରଦମହାମୁନୀ ଆବିର୍ଭୂତ ହେଲେ ସ ରାଜାଙ୍କୁ ଆଶ୍ୱସନା ଦେଇ କହିଲେ ଯେ ବିଦ୍ୟାପତି ଏହି କ୍ଷେତ୍ର ଛାଡି ଯିବାପରେ କ୍ଷେତ୍ର ରାଶି ବାଲିରେ ଆବୃତ ହୋଇ ପଡିଲା । ବାଲିଝଡ ଦିବାନିଶି ଅବିରାମ ଲାଗିରହିବାରୁ ପରିବେଶ ଦାରୁଣ ଓ ଦୁର୍ବିସହ ହୋଇ ପଡିଲା । ନାରଦ କହିଲେ ହେ ରାଜା, ବାଲିରେ



ଚତୁର୍ଦ୍ଦିଗ ପୂର୍ଣ୍ଣ ହୋଇ ଥିବାରୁ ତୁମେ ଆଉ ସେହି ଲାବଣ୍ୟମୟ ନୀଳମାଧବଙ୍କୁ ଦର୍ଶନ କରିପାରିବନାହିଁ । ତୁମେ ଯାଇ ନୀଳକଣ୍ଠ ସ୍ୱୟମ୍ଭୁଙ୍କ ଦକ୍ଷିଣ ପାର୍ଶ୍ୱସ୍ଥ ଭଗବାନ ଯଜ୍ଞ ନୃସିଂହଙ୍କର ଉପାସନା କର । ତାଙ୍କର ଉପାସନା ତୁମକୁ ତୁମରି ଅଭିଷ୍ଟ ସିଦ୍ଧି କରିବା ପାଇଁ ଦିଗଦର୍ଶନ ଦେବ । ରାଜା ଇନ୍ଦ୍ରଦ୍ୟୁମ୍ନ ଗଭୀର ଶ୍ରଦ୍ଧାର ସହ ଆରମ୍ଭ କଲେ ନୃସିଂହ ଉପାସନା । କିଛି ଦିନପରେ ଦୈବୀବାଣୀ ହେଲା ହେ ରାଜା, ଚିନ୍ତାକର ନାହିଁ ଅଚିରେ ମୁଁ ମର୍ତ୍ତ୍ୟମଣ୍ଡଳେ ନିରାକାରରୁ ଦାରୁଆକାର ଧାରଣ କରି ଆବିର୍ଭୁତ ହେଉଛି । ଏହା ଶୁଣି ରାଜା ଆଶ୍ୱସ୍ତ ହେଲେ । ଅଶେଷ ଶ୍ରଦ୍ଧାସହ ଯେଉଁ ବାଲୁକା ରାଶିଉପରେ ବସି ରାଜା ଧ୍ୟାନସ୍ଥହେଲେ ଏବଂ ତାଙ୍କର ଉପାସିତ ଫଳ ପ୍ରାପ୍ତିହେଲେ ସେହି ବାଲିର ନାମ ଶରଧାବାଲି ହେଲା । ଆଜି ସେ ବାଲିକୁ ଦେଖିଲେ ଏହି ପୌରାଣିକ କାହାଣୀ ସ୍ମରଣକୁ ଆସେ ଏବଂ ମନେହୁଏ ସତେକଣ ଏହି ସ୍ଥାନରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ଶ୍ରଦ୍ଧାମୂର୍ତ୍ତିମନ୍ତ ହୋଇ ଉଠିଥିଲା । ସେହି ସ୍ମୃତିର ସୁବର୍ଣ୍ଣ ସ୍ମାରକୀ ଏହି ଶରଧାବାଲି ଏବେ ମଧ ସେହି ପୌରାଣିକ ସ୍ଥଳର ଚିତ୍ରକୁ ଜନମାନସରେ ନିରନ୍ତର ଜାଗ୍ରତ କରୁଛି ।

ଶରଧାବାଲିର ମହତ୍ତ୍ୱ ଓ ମୂଲ୍ୟବୋଧ ସଂପର୍କରେ ଉପରୋକ୍ତ ଯେଉଁ ପୌରାଣିକ କାହାଣୀର ଅବତାରଣା କରାଯାଇଛି ନଥାଇ ପାରେ । ଆଧ୍ୟାତ୍ମିକ ଦିଗ୍‌ବଳୟରେ ବିଶ୍ୱାସ ହିଁ ସୂର୍ଯ୍ୟପରି ଶୁଭରଶ୍ମି ବିଛୁରଣ କରିପାରେ ସେହି ଦୃଷ୍ଟିରୁ ଏପରି ଏକ ବିଶ୍ୱାସ କୁହାଯାଇପାରେ । କାରଣ ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂରେ ।

ଐତିହାସିକ ପୃଷ୍ଠଭୂମି

ଇତିହାସ ଓ କିମ୍ବଦନ୍ତୀ କହେ ପୁରୀ ବଡଦାଣ୍ଡ ଓ ଗୁଣ୍ଡିଚାମଣ୍ଡପର ମଧ୍ୟବର୍ତ୍ତୀ ଅଞ୍ଚଳରେ ଆଗେ ମାଳିନୀ ନଈ ପ୍ରବାହିତ ହେଉଥିଲା । ଏହି ନଦୀ ବଡଦାଣ୍ଡ ଓ ଗୁଣ୍ଡିଚା ବାଡିକୁ ଦୁଇଭାଗରେ ବିଭକ୍ତ କରୁଥିଲା । ଜଗନ୍ନାଥଙ୍କର ପ୍ରଖ୍ୟାତ ଘୋଷଯାତ୍ରା ସମୟରେ ଶ୍ରୀବଳଭଦ୍ର, ଶ୍ରୀଜଗନ୍ନାଥ ଓ ସୁଭଦ୍ରା ତାଙ୍କର ମାଉସୀମା ମନ୍ଦିର ଓ ଗୁଣ୍ଡିଚା ମନ୍ଦିରକୁ ନବଦିନବ୍ୟାପି ଯାତ୍ରା କରୁଥିଲେ ରଥରେ । ତିନିଠାକୁରଙ୍କ ପାଇଁ ତିନୋଟି ରଥ ହୋଇଥାଏ । ଏହି ରଥମାନେ ସିଂହଦ୍ୱାର ନିକଟରୁ ଟଣାହୋଇଯାଆନ୍ତି କିନ୍ତୁ ଗୁଣ୍ଡିଚା ମଣ୍ଡପ ନିକଟରେ ନଈଥିବାହେତୁ ଏହି ରଥଗୁଡିକ ସିଧାସଳଖ ଗୁଣ୍ଡିଚାମନ୍ଦିର ନିକଟକୁ ଯିବା ସମ୍ଭବ ହେଉନଥିଲା । ତେଣୁ ନଈ ସେପାଖରେ ଅର୍ଥାତ୍ ଗୁଣ୍ଡିଚା ମଣ୍ଡପ ପଟେ ଆଉ ତିନିଗୋଟି ରଥ ପ୍ରସ୍ତୁତ ହୋଇ ରଖା ଯାଉଥିଲା । ଏଭଳି ବ୍ୟବସ୍ଥା ବ୍ୟୟସାପେକ୍ଷ ହେବା ସଙ୍ଗେ ସଙ୍ଗେ ବହୁ ଅସୁବିଧା ମଧ୍ୟ ହେଉଥିଲା । ଏହିପରି ବହୁବର୍ଷ ଚାଲିଲା ।

ରଥଯାତ୍ରା ବର୍ଷାକାଳରେ ପଡୁଥିବାରୁ ମାଳିନୀ ନଈ ବର୍ଷା ଜଳରେ ଭରି ଯାଉଥିଲା । ତାର ତଟଦେଶ କର୍ଦ୍ଦମାକ୍ତ ହୋଇ ଯାଉଥିଲା । ଶ୍ରୀଜୀଉମାନଙ୍କୁ ରଥରୁ ଅବତରଣ କରି ନୌକାରେ ନଦୀପାରହୋଇ ଆଉ ପାରିକି ନିଆଯାଉଥିଲା । ଗୁଣ୍ଡିଚା ଘରକୁ ଯିବା ବାଟରେ ଓ ବଡଦେଉଳକୁ ଆସିବା ବାଟରେ ଶ୍ରୀଜିଉମାନଙ୍କୁ ଦୁଇଦିନ ଏପରିକକି ବର୍ଷେ ବର୍ଷେ ଅଧିକ ଦିନ ଲାଗୁଥିଲା ।

ତ୍ରୟୋଦଶ ଶତାବ୍ଦୀରେ ଅଠରନଳା ବା ଶଂଖୁଆ ସେତୁ ରାଜା ନରସିଂହଦେବଙ୍କ ଉଦ୍ୟମରେ ବନ୍ଧାଗଲା । ତାଙ୍କର ପଟ୍ଟମହିଷୀ ରାଣୀ ଶ୍ରଦ୍ଧାଦେବୀ ଭାବିଲେ, ଯଦି ମାଳିନୀ ନଈକୁ ପୋତିଦିଆଯାଇପାରିବ ତେବେ ସିଂହଦ୍ୱାର ନିକଟରୁ ତିନୋଟିଯାକ ରଥ ବାହାରି ଆଉ ନଈପାଖରେ ନ ଅଟକି ଗୁଣ୍ଡିଚା ମନ୍ଦିରକୁ ଚାଲିଯାଇ ପାରିବ । ଏ ସମସ୍ୟାର ସମାଧାନ ପାଇଁ ସେ ଦୃଢ ପଦକ୍ଷେପ ଗ୍ରହଣ କଲେ । ରାଜ୍ୟର ପ୍ରଜାମାନଙ୍କୁ ଡକାଇ ସେମାନଙ୍କ ଦ୍ୱାରା ଶଗଡ ଶଗଡ ବାଲିଅଣାଇ ସେଇ ନଦୀ ଶଯ୍ୟାକୁ ପୋତିଦେଲେ । ନଦୀର ସ୍ଥିତି ଅବଲୁପ୍ତହେଲା । ରହିଲା କେବଳ ବାଲୁକାରାଶିର ଅଭିବ୍ୟକ୍ତ ଆଉ ଛଅ ଗୋଟି ରଥ ନିର୍ମାଣର ଆବଶ୍ୟକତା ରହିଲା ନାହିଁ । ରଥଯାତ୍ରା ମହୋତ୍ସବ ତିନିଗୋଟି ରଥରେ ସମାପନ କରାଗଲା । ଓଡିଆର ଜାତି ନନ୍ଦିଘୋଷ ଗଡିଚାଲିଲା । ଘର୍ଘର ନାଦକରି ସିଂହଦ୍ୱାରରୁ ଗୁଣ୍ଡିଚା ବାଡିଅଭିମୁଖେ । ସେହି ବାଲି ଶରଧାବାଲି ନାମରେ ନାମିତ ହୋଇ ଶ୍ରଦ୍ଧାମଣି ମହାପାଟଦେଈ ଅସୀମ ଶ୍ରଦ୍ଧାର ନିର୍ମଳ ନିଦର୍ଶନ ହୋଇ ଅଦ୍ୟାବଧି ରହିଛି ।

ସର୍ବଶେଷରେ ରାଜା ଇନ୍ଦ୍ରଦ୍ୟୁମ୍ନଙ୍କର ଶ୍ରଦ୍ଧାର ଚିହ୍ନ ରଖିବା ପାଇଁ ହେଉ କି ରାଜାମାତା ଶ୍ରଦ୍ଧାମଣିଙ୍କର ଶ୍ରଦ୍ଧାରୁ ସୃଷ୍ଟିହୋଇଥିବା ଯୋଗୁ ହେଉ, ଶରଧାବାଲିର ଆଜି ଯେଉଁ ସ୍ଥିତ ତାହା କେବଳ ଶ୍ରଦ୍ଧାର ମୂଲ୍ୟବୋଧକୁ ଉଦ୍‌ଘୋଷଣା କରି ଭକ୍ତଜନର ଶ୍ରଦ୍ଧା ଭାଜନ ହୋଇପାରିଛି । ଶରଧା ନଈର ବାଲି ଶରଧାବାଲି ହେଲା କିମ୍ବା ରାଣୀ ଶ୍ରଦ୍ଧାଦେବୀଙ୍କର ନାମାନୁସାରେ ବାଲିର ନାଁ ଶରଧାବାଲି ହେଲା, ଏ ବିଷୟରେ ଦୃଢ ପ୍ରାମାଣିକ ତଥ୍ୟ ଏବଂ ଏକାନ୍ତ ନିର୍ଭରଯୋଗ୍ୟ ଐତିହାସିକ ତଥ୍ୟ ସଠିକ୍ ମିଳେ ନାହିଁ । ଦୁର୍ବଳ ପ୍ରତୀୟମାନ ହୁଏ । ଜଗନ୍ନାଥଙ୍କ ଦାରୁମୂର୍ତ୍ତୀ ଗଢାଇଥିବା, ମନ୍ଦିର ନିର୍ମାଣ କରିଥିବା ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ନାମାନୁସାରେ ଇନ୍ଦ୍ରଦ୍ୟୁମ୍ନ

ପୁଷ୍କରିଣୀ କିମ୍ବା ରାଣୀ ଗୁଣ୍ଡିଚା ଦେବୀଙ୍କ ନାମାନୁସାରେ ଗୁଣ୍ଡିଚାଯାତ୍ରା ମାଉସୀ ମା ମନ୍ଦିର ଗୁଣ୍ଡିଚା ମନ୍ଦିର ବୋଲି କଥିତ ହେଲା । ଠିକ୍ ସେଇଭଳି ରାଜା ନରସିଂହ ଦେବଙ୍କ ପାଟମହିଷୀ ଶ୍ରଦ୍ଧାଦେବୀଙ୍କ ନାମାନୁସାରେ ଶରଧାବାଲି ହୋଇ ଥିବାର ବର୍ଣ୍ଣନାକୁ ଗ୍ରହଣ କରିନିଆଯାଇପାରେ ।

ପାବନୀ କ୍ଷେତ୍ର ଜଗନ୍ନାଥ ଧାମର ପ୍ରତିଟି ରେଣୁ ପବିତ୍ର ପ୍ରତିଟି ଧୂଳିକଣା ଭକ୍ତଜନର କପାଳ-ଚନ୍ଦନ ବୋଲି ବିବେଚିତ ହୁଏ । ବାଇଶି ପାହାଚରେ ଗଡିଗଲେ ସମସ୍ତ ପାପତାପ କ୍ଷାଳିତ ହୋଇଯାଏ ବୋଲି ହିନ୍ଦୁର ବିଶ୍ୱାସ । ଅବଢ଼ା ବା ମହାପ୍ରସାଦକୁ ଆନନ୍ଦବଜାରରେ ଏକତ୍ର ସେବନ କଲେ, ଆତ୍ମାଶୁଦ୍ଧ ହୁଏ ବୋଲି କୋଟି କୋଟି ଓଡିଆର ବିଶ୍ୱାସ । ସେମିତି ଶରଧାବାଲିକୁ ନେଇ ଭକ୍ତ ମୁଣ୍ଡରେ ଲଗାଏ, ଦେହରେ ବୋଳି ହୁଏ, ତୁଣ୍ଡରେ ମାରେ, କାନିରେ ବାନ୍ଧିଆଣେ । ଯେହେତୁ ତାହା ପ୍ରଭୁଙ୍କର ଚରଣ ରେଣୁ ଓ ପବିତ୍ର । ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥଙ୍କର ଏହାହିଁ ବୈଶିଷ୍ଟ୍ୟ ଓ ମହିମା । ଜଗନ୍ନାଥ ସ୍ୱାମୀଙ୍କର ଲୀଳାକ୍ଷେତ୍ର- ଶ୍ରୀକ୍ଷେତ୍ର । ତାହା ପୂଣ୍ୟପୀଠ, ମୁକ୍ତିତୀର୍ଥ ଓ କୈବଲ୍ୟ ତୀର୍ଥ, ସେଠାରେ ଶରଧାବାଲି ମଧ୍ୟ ସେତିକି ପୁଣ୍ୟସ୍ନାତ ଓ ପବିତ୍ର ।

ପ୍ରାଚୀନ ଭାରତୀୟ ଇତିହାସ,
ସଂସ୍କୃତ ଓ ପ୍ରତ୍ନତତ୍ତ୍ୱ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ

# ଅମୃତ ଇଂଗିତ

ରକ୍ଷକ ନାୟକ

ଓହ୍ଲାଇ ଆସ ନିଜ ନିଜ ସିଂହାସନରୁ
ଦାଣ୍ଡ ହେଇଯାଅ
ନିଜକୁ ଟେକିଦିଅ ସମୟ ହାତରେ
ଅଂଧାରରୁ ଆଲୁଅକୁ ଯାଅ ।
ପ୍ରତିଟି ମୁହୂର୍ତ୍ତ ଏକ ଏକ ଯାତ୍ରା
ନିଜ ପାଖକୁ, ଉତ୍ସ ନିକଟକୁ
ପ୍ରସାରିତ ହେବାକୁ,
ପ୍ରତିଟି ଯାତ୍ରା, ଏକ ଏକ ଅଙ୍ଗୀକାର
ଅକ୍ଷୟ ଅନ୍ୱେଷଣର, ଅମୂର୍ତ୍ତ ଆସକ୍ତିର
ଯେଉଁଠି ପଡିବ ପାଦ
ତାକୁ କରିଦିଅ ଉତ୍ତରଣ ପଥ
ପ୍ରତିଟି ଆରମ୍ଭ ଏକ ଏକ ସ୍ୱୟଂସିଦ୍ଧ ସମାପ୍ତ ।
ସେ ବାହାରି ଆସିଛନ୍ତି
ଆମ ଆକାଂକ୍ଷାକୁ, ଆମ ଅଂଧାରର ଅଗଣାକୁ
ଆଲୋକିତ ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ
ସେ ଆମ ସଖା ଓ ସଂଗାତ ।



ଚାଲ ଯିବା ବଡଦାଣ୍ଡକୁ
ରଥ ଯାତକୁ, ଯେଉଁଠି
ସର୍ବେ ଏକାକାର
ଭକ୍ତ କିଏ ଭଗବାନ କିଏ
ନୁହଁଇ ଗୋଚର ।
ସବୁ ଯାତ୍ରା ହେଉ ରଥଯାତ୍ରା
ସବୁ ପଥ ହେଉ ବଡଦାଣ୍ଡ
ସବୁ ଦେହ ଗୋଟେ ଗୋଟେ ରଥ
ପଂଚେନ୍ଦ୍ରୀୟ ଖୋଲା ରଖି
ଶୁଣିନିଅ ଦେଖି ନିଅ
ରଥଯାତ, ରଥଗୀତ
ଅମୃତ ଇଂଗିତ ।

ପାଇକ ସାହି, ସୋରଭା
ନୟାହାଟ, ପୁରୀ - ୭୫୨୧୦୭



# ସର୍ବଧର୍ମ ସମନ୍ୱୟ ଭାବ ଓ ରଥଯାତ୍ରା

ପ୍ରଭାତ କୁମାର ନନ୍ଦ



ସମଗ୍ର ବିଶ୍ୱର ବିଭିନ୍ନ ଧାର୍ମିକ ଚେତନାକୁ ଅନୁଶୀଳନ କଲେ, ତନ୍ମଧ୍ୟରେ ଶ୍ରୀଜଗନ୍ନାଥ ସଂସ୍କୃତିଜନିତ ଚେତନା ସାରାଜଗତ ଏକତ୍ୱ ଭାବ ପ୍ରତିପାଦନ କରି ଭେଦଭାବ ବିହୀନ ସମାଜ ଗଠନ ନିମିତ୍ତ ଅଧିକ ପ୍ରେରଣା ପ୍ରଦାନ କରିଥାଏ । ମହାପ୍ରଭୁଙ୍କର ନାମ ଅଗଣିତ ଥିଲେ ମଧ୍ୟ ତନ୍ମଧ୍ୟରୁ ଜଗନ୍ନାଥ ବା ଜଗତର ନାଥ ନାମ ବିଶ୍ୱ ଜନନୀ ଭାବରେ ପରିପ୍ରକାଶ କରିଥାଏ । ତେଣୁ ଜ୍ଞାନୀଗୁଣୀ ବ୍ୟକ୍ତିମାନେ ତାଙ୍କର ଆରାଧନାରେ ଶ୍ରୀଜଗନ୍ନାଥଙ୍କୁ ନିଜର ନାଥ ସ୍ୱାମୀ ଭାବରେ ଗ୍ରହଣ କରିଛନ୍ତି ।

ମନ୍ନାଥ ଶ୍ରୀଜଗନ୍ନାଥ, ମଦ୍‌ଗୁରୁ ଶ୍ରୀ ଜଗତ୍ ଗୁରୁ
ମହାତ୍ମା ସର୍ବ ଭୂତାତ୍ମା, ତସ୍ମୈ ଶ୍ରୀ ଗୁରବେ ନମଃ

ଉପରୋକ୍ତ ଶ୍ଳୋକରୁ ଶ୍ରୀଜଗନ୍ନାଥ ଚେତନାର ବ୍ୟାପକତା ଏବଂ ବିଶ୍ୱର ସମସ୍ତ କ୍ଷେତ୍ରରେ ତାହା ବାସ୍ତବ ବୋଲି ପ୍ରମାଣିତ ହୋଇଛି ।

ଆଧୁନିକ ବିଶ୍ୱରେ ଅନ୍ଧାନୁକରଣକୁ ପରିହାରକରି ସତ୍ୟାନୁସରଣକୁ ଅଧିକ ମହତ୍ତ୍ୱ ଦିଆଯାଇଛି । ଏକବିଂଶ ଶତାବ୍ଦୀକୁ ବିଶ୍ୱର ଜ୍ଞାନ ପ୍ରସାରଣ ଏବଂ ଜ୍ଞାନ ବିସ୍ଫୋରଣର ଶତାବ୍ଦୀ କହିଲେ ଅତ୍ୟୁକ୍ତି ହେବନାହିଁ । ଭୌତିକ ଏବଂ ଔଦ୍ୟୋଗିକ ସାଧନର ସହଯୋଗରେ ଜ୍ଞାନ ଅର୍ଜନ ଜ୍ଞାନର ପ୍ରଚାର ଓ ତାହାର ଅନୁଶୀଳନ, ପୂର୍ବ ଶତାବ୍ଦୀ ଗୁଡିକର ସୁଯୋଗ ତୁଳନାରେ ଅଧିକ ସହଜ ସାଧ୍ୟ ହୋଇପାରିଛି । ପ୍ରତିଦିନ ବିଶ୍ୱର ବିଭିନ୍ନ ଦେଶରେ ନୂତନ ପଦ୍ଧତି ଓ ଉଚ୍ଚତର ଜ୍ଞାନର ଉଦ୍ଭାବନ ହେଉଛି । ମାନବ ମସ୍ତିଷ୍କର ଅଦ୍ୟାବଧି ସର୍ବ ପ୍ରସିଦ୍ଧି ଓ ଆଶ୍ଚର୍ଯ୍ୟମୟ ଉଦ୍ଭାବନ କମ୍ପ୍ୟୁଟର ଜ୍ଞାନ ଆନ୍ଦୋଳନ କ୍ଷେତ୍ରରେ ପ୍ରମୁଖ ଭୂମିକା ଗ୍ରହଣ କରିଛି ।

ଉପରୋକ୍ତ ଭାବକୁ ବିଚାର କଲେ, ସମଗ୍ର ପୃଥିବୀରେ ଜଗନ୍ନାଥଙ୍କ ସମ୍ବଳିତ ପୌରାଣିକ ଗାଥା ବା ଅନୁଭୂତିର କାହାଣୀ ପ୍ରଚାର କରି ଆମେ ଜଗନ୍ନାଥଙ୍କର ମହତ୍ତ୍ୱକୁ ସର୍ବଜନ ବିଶ୍ୱାସ ସମ୍ମତ କରିପାରିବା ନାହିଁ । ତେଣୁ ଯେଉଁ ଧର୍ମ ଓ ଚିନ୍ତାଧାରା ସମାଜରେ ମଙ୍ଗଳ ନିମିତ୍ତ ଅଭିପ୍ରେତ ଏବଂ ଯୁକ୍ତି ସମ୍ମତ, ସେହି ଭାବାବଳିର ପ୍ରଚାର କରି ଆମେ ଶ୍ରୀଜଗନ୍ନାଥ ଚେତନାର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିପାରିବା । ଆଗାମୀ ବର୍ଷ ଗୁଡିକରେ ସମସ୍ତ ଉତ୍କଳୀୟ ବା ଜଗନ୍ନାଥପ୍ରେମୀମାନଙ୍କର ଏହାହିଁ ପ୍ରଥମ କର୍ତ୍ତବ୍ୟ ହେବା ଉଚିତ୍ । ବିଶ୍ୱରେ ଭାତୃତ୍ୱଭାବର ବିକାଶ ନିମିତ୍ତ ଓ ଭେଦଭାବ ବିହୀନ ସମାଜ ଗଠନ ନିମିତ୍ତ ଯେଉଁ କେତେକ ଲୀଳା ଶ୍ରୀକ୍ଷେତ୍ରରେ ଅନୁଷ୍ଠିତ ହୁଏ, ତନ୍ମଧ୍ୟରୁ ରଥଯାତ୍ରା ହିଁ ଶ୍ରେଷ୍ଠ । ଶ୍ରୀଜଗନ୍ନାଥ ସଂସ୍କୃତିର ଅନ୍ୟନାମ ଯାତ୍ରା ଭିତ୍ତିକ ସଂସ୍କୃତି କହିଲେ ଅତ୍ୟୁକ୍ତି ହେବନାହିଁ । ଲୋକମୁଖରେ ଶ୍ରୀକ୍ଷେତ୍ରରେ ବାର ମାସରେ ତେର ଯାତ୍ରା ହୁଏ ବୋଲି ପ୍ରସିଦ୍ଧି ରହିଛି । ଇଂରାଜୀରେ ଲୋକ ପ୍ରିୟ ମନ୍ତବ୍ୟ Man learns when he leaves his home (ମାନବ ନିଜ ଗୃହ ପରିସର ମଧ୍ୟରୁ ବାହ୍ୟ ଅଞ୍ଚଳକୁ ଗଲେ ହିଁ ଅଧିକ ଶିକ୍ଷା ଲାଭ କରିବାର ସୁଯୋଗ ପାଇଥାଏ) । ଏହି ଭାବ ଶ୍ରୀଜଗନ୍ନାଥ ସଂସ୍କୃତିରେ ଛତ୍ରେ ଛତ୍ରେ ପ୍ରମାଣିତ ହୋଇଛି । ଯାତ୍ରା ଦ୍ୱାରା ମାନବ ସମାଜର ଜ୍ଞାନୀ ଓ ଅଭିଜ୍ଞ ବ୍ୟକ୍ତି ମାନଙ୍କର ସମ୍ପର୍କରେ ଆସି ସେମାନଙ୍କ ଠାରୁ ଅଧିକ ଜ୍ଞାନ, ଜୀବନଚର୍ଯ୍ୟାର ଅଧିକ ଉନ୍ନତ ପନ୍ଥା ବିଷୟରେ ଜାଣି ନିଜକୁ ସମୃଦ୍ଧି କରିଥାଏ । ବିଭିନ୍ନ ଯାତ୍ରା ମନୋରଂଜନ ଧର୍ମୀ ରୂପେ ପ୍ରତିଭାତ ହୋଇଥିଲେ ମଧ୍ୟ ମାନବର ଜ୍ଞାନ ଓ ଅଭିଜ୍ଞତା ବୃଦ୍ଧି ଭାବକୁ ଚରିତାର୍ଥ କରିଥାଏ ।

ଶ୍ରୀଜଗନ୍ନାଥଙ୍କ ସଂସ୍କୃତିରେ ଅଗଣିତ ପର୍ବ ପର୍ବାଣୀ ପ୍ରାୟ ପ୍ରତ୍ୟେକ ଦିନ ପାଳନ କରାଯାଉଥିଲେ ମଧ୍ୟ ସେଗୁଡିକ ମଧ୍ୟରୁ ବାରଗୋଟି ବିଶେଷ ଯାତ୍ରା ଅଧିକ ଲୋକପ୍ରିୟ ଓ ବହୁଭକ୍ତମାନଙ୍କଦ୍ୱାରା ସମାହିତ । ସେଗୁଡିକ ନିମ୍ନରେ ପ୍ରଦାନ କରାଗଲା ।

୧) ସ୍ନାନ ଯାତ୍ରା

୨) ରଥ ଯାତ୍ରା

୩) ଶୟନ ଯାତ୍ରା

୪) ଦକ୍ଷିଣାୟନ ଯାତ୍ରା

୫) ପାର୍ଶ୍ୱ ପରିବର୍ତ୍ତନ ଯାତ୍ରା

୬) ଉତ୍‌ଥାପନ ଯାତ୍ରା

୭) ପ୍ରାବରଣ ଷଷ୍ଠୀ

୮) ପୁଷ୍ୟାଭିଷେକ ଯାତ୍ରା

୯) ଉତ୍ତରାୟଣ ଯାତ୍ରା

୧୦) ଦୋଳ ଯାତ୍ରା

୧୧)ଦମନକ ଯାତ୍ରା

୧୨)ଚନ୍ଦନ ଯାତ୍ରା

ଉପରୋକ୍ତ ଭାବକୁ ନିଳାଦ୍ରୀ ମହୋଦୟ ଗ୍ରନ୍ଥରେ ନିମ୍ନମତେ ବର୍ଣ୍ଣନା କରାଯାଇଛି :-

ମଞ୍ଚେସ୍ନାନଂ ରଥବର ଗତିଶୟନଂ ଗୟନଦ୍ୱୟଂ

ପାର୍ଶ୍ୱ ବୃତ୍ତ ଶୟନ ନିବୃତ୍ତି ପ୍ରାବରଃ ପୂଷ୍ୟପୂଜା

ଦୋଳ କେଳିର୍ଦ୍ଦମନକ ମହଦକ୍ଷପୂଜା ତୃତୀୟା

ଚୈତ୍ରଯାତ୍ରା ବିଧିନିଗଦିତା ଦ୍ୱାଦଶେଯଂ ନରେନ୍ଦ୍ର

ଉପରୋକ୍ତ ଦ୍ୱାଦଶ ଯାତ୍ରା ମଧ୍ୟରୁ ଦୁଇଟିର ଗୁରୁତ୍ୱ ଅଧିକ ସ୍ନାନ ଯାତ୍ରା ଓ ରଥ ଯାତ୍ରା । ଜ୍ୟେଷ୍ଠଭ୍ରାତା ବଳଭଦ୍ର, ଭଗ୍ନୀ ସୁଭଦ୍ରା ଏବଂ ଆୟୁଧ ସୁଦର୍ଶନଙ୍କ ସହ ଶ୍ରୀଜଗନ୍ନାଥ ରତ୍ନ ସିଂହାସନରୁ ସ୍ୱବିଗ୍ରହରେ ଏହି ଦୁଇଟି ଯାତ୍ରାରେ ଅଂଶ ଗ୍ରହଣ କରନ୍ତି । ଅନ୍ୟ ଯାତ୍ରା ଗୁଡିକରେ ମହାପ୍ରଭୁଙ୍କର ଚଳନ୍ତି ପ୍ରତିମାମାନେ ଭକ୍ତ ସମ୍ମୁଖରେ ପ୍ରତିନିଧିତ୍ୱ କରନ୍ତି। ଏହି ଭାବକୁ ଲକ୍ଷ୍ୟ କରି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ବର୍ଣ୍ଣନା କରିଛନ୍ତି ଯେ:

'ସ୍ନାନ ଗୁଣ୍ଡିଚା ଏବେନି ସ୍ୱୟଂ ଲୀଳା ଯାର

ପତିତପାବନେ ଅର୍ଥେ ପ୍ରସାଦୁ ବାହାର ।'

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଉପରୋକ୍ତ ଦୁଇଟି ଧାଡିରେ ଜଗନ୍ନାଥ ସଂସ୍କୃତିର ନିର୍ଯ୍ୟାସକୁ ବର୍ଣ୍ଣନା କରିବା ପାଇଁ ସମର୍ଥ ହୋଇ ପାରିଛନ୍ତି । ଅନେକ ଗବେଷକଙ୍କ ଦୃଷ୍ଟିରେ ରଥଯାତ୍ରାକୁ ପତିତପାବନ ଯାତ୍ରା କହିଲେ ତ୍ରୁଟି ହେବନାହିଁ ।

ରଥଯାତ୍ରାର ତାତ୍ତ୍ୱିକ ଭାବକୁ ଦୁଇଟି ଦୃଷ୍ଟିରୁ ଆଲୋଚନା କରାଯାଇପାରେ । ତାହା ଲୌକିକ ଓ ଭାଗବତ ଲୌକିକ ବା ଜଣେ ସାଧାରଣ ମଣିଷକୁ ରଥଯାତ୍ରାର ବିଶେଷତ୍ୱ ଜଣାଇବା ନିମିତ୍ତ ମାନବୀୟ ଲୀଳାର ଆଲୋଚନା କରାଯାଇଥାଏ । ଶ୍ରୀଜଗନ୍ନାଥ ସାଧାରଣ ମାନବ ବୋଲି ଗ୍ରୀଷ୍ମ ଋତୁରେ ଅଧିକ ଜଳ ସିଞ୍ଚନ ପୂର୍ବକ ସ୍ନାନ କରନ୍ତି । ପ୍ରଭୁମାନେ ଦେହ ଧାରଣ କରିଥିବାରୁ ଅଧିକ ଜଳ ସିଞ୍ଚନରେ କଂପରୋଗ ବା ଥଣ୍ଡା ରୋଗରେ ପୀଡିତ ହୋଇ ବୈଦ୍ୟଙ୍କ ଦ୍ୱାରା ଚିକିତ୍ସିତ ହୁଅନ୍ତି । ସାଧାରଣ ମାନବ ଜ୍ୱରଗ୍ରସ୍ତ ହୋଇଥିବା ବେଳେ ଯେଭଳି ଖାଦ୍ୟ ପଦାର୍ଥ ଗ୍ରହଣରେ ଶୃଙ୍ଖଳା ରକ୍ଷା କରିବାକୁ ପଡିଥାଏ ଓ କେବଳ ଚିକିତ୍ସକଙ୍କ ଦ୍ୱାରା ନିର୍ଦ୍ଦେଶିତ ଖାଦ୍ୟ ପାନୀୟ ଗ୍ରହଣ କରିଥାଏ, ଠିକ୍ ସେହିପରି ଶ୍ରୀଜଗନ୍ନାଥ ମହାପ୍ରଭୁ ସ୍ନାନ ଯାତ୍ରା ପରେ ଅଣସର ବା ଅନବସର ଗୃହକୁ ଯାତ୍ରା କରି ସେଠାରେ ବିଶ୍ରାମ ନିଅନ୍ତି ଓ ବର୍ଷର ଅନ୍ୟ ସମୟ ଭଳି ଛପନଭୋଗ ନ ହୋଇ ନିର୍ଦ୍ଧାରିତ ପଥି ଓ ଫଳମୂଳ ମହାପ୍ରଭୁଙ୍କୁ ଅର୍ପଣ କରାଯାଇଥାଏ । ମାନବ ଜ୍ୱରମୁକ୍ତ ହେବାପରେ ମନ ପରିବର୍ତ୍ତନ ନିମିତ୍ତ କୌଣସି ଶୈଳ ନିବାସ ବା ଅନ୍ୟ ରମଣୀୟ ସ୍ଥଳୀକୁ ଯାତ୍ରା କଲା ଭଳି ମହାପ୍ରଭୁ ନଅ ଦିନ ନିମିତ୍ତ ଶ୍ରୀମନ୍ଦିରରୁ ବାହାରି ରଥରେ ଗୁଣ୍ଡିଚା ଘରକୁ ଯାତ୍ରା କରି ପ୍ରତ୍ୟାବର୍ତ୍ତନ କରନ୍ତି ।

ମାନବ ଭ୍ରମଣ କାଳରେ ନିଜର ବଂଧୁ ବାନ୍ଧବଙ୍କୁ ଦର୍ଶନ କଲାଭଳି ଶ୍ରୀଜଗନ୍ନାଥ ନିଜର ମାଉସୀ ଅର୍ଦ୍ଧାସନୀ ଦେବୀଙ୍କୁ ଦର୍ଶନ ଦେଇ ତାଙ୍କ ଠାରୁ ଶ୍ରଦ୍ଧାରେ ପୋଡପିଠା ଗ୍ରହଣ କରନ୍ତି । ସାଧାରଣ ମାନବ ଯାତ୍ରା ସମୟରେ ସଙ୍ଗରେ ନେଇ ନଥିବାରୁ ନିଜର ପତ୍ନୀ ଅଭିମାନ କଲାଭଳି ବାହୁଡା ଯାତ୍ରା ପରେ ନୀଳାଦ୍ରୀ ବିଜେ ଅବସରରେ ମାତା ଲକ୍ଷ୍ମୀ ଜଗନ୍ନାଥଙ୍କୁ ବାଟ ଓଗାଳନ୍ତି ଓ ଅଭିମାନରେ ଅନେକ ଭତ୍ସନା ପୂର୍ଣ୍ଣ ବାକ୍ୟ ପ୍ରୟୋଗ କରନ୍ତି । ସାଧାରଣ ମାନବ ଉଦାର ହୃଦୟରେ ପତ୍ନୀଙ୍କର ଅଭିମାନକୁ ଅନୁଭବ କରି କ୍ଷମା ଦେବାଭଳି ମହାପ୍ରଭୁ ମହାଲକ୍ଷ୍ମୀଙ୍କର ସମସ୍ତ କଥନକୁ କ୍ଷମା କରନ୍ତି ଓ ପତ୍ନୀଙ୍କ ପାଇଁ ଆଣିଥିବା ଉପହାର ପ୍ରଦାନ କରନ୍ତି । ସ୍ୱାମୀ ଦୂରଯାତ୍ରାରୁ ଫେରିବା



ପରେ ଆଣିଥିବା ଶାଢୀ ଅଳଙ୍କାର ଇତ୍ୟାଦି ପାଇ ସାଧାରଣ ନାରୀ ଆନନ୍ଦିତ ହୋଇ ଯାତ୍ରା ସମୟରେ ନିଃସଙ୍ଗ ଦୁଃଖକୁ ଭୁଲିବା ପରି ମହାଲକ୍ଷ୍ମୀ ଦୀର୍ଘ ନଅ ଦିବସର କ୍ଳେଶକୁ ଭୁଲି ଶ୍ରୀଜଗନ୍ନାଥଙ୍କୁ ଶ୍ରୀମନ୍ଦିରକୁ ପାଛୋଟି ନିଅନ୍ତି । ସାଧାରଣ ଭାବରେ ଅଧିକ ଜ୍ଞାନ ଅର୍ଜନ କରି ନଥିବା ମାନବ ନିମିତ୍ତ ଏହାହିଁ ରଥଯାତ୍ରାର ଲୌକିକ କଥା ।

ରଥଯାତ୍ରା ପାଳନର ଜ୍ଞାନଦୀପ୍ତ ଭାବଟି ମାନବୀୟ ଉଚ୍ଚ ଚେତନାର ମହତ୍ତ୍ୱକୁ ପ୍ରମାଣିତ କରେ । ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଅନ୍ୟତମ ନାମ ପତିତପାବନ । ସମଗ୍ର ବିଶ୍ୱର ଯେ କୌଣସି ଜାତି, ଧର୍ମ ବା ବର୍ଣ୍ଣର ମାନବ ପତିତ ହୋଇପାରେ । ସାଧାରଣ ମାନବର ଜୀବନ ନିର୍ବାହ କରିପାରୁନଥିବା ବ୍ୟକ୍ତ ହିଁ ପତିତ ଓ ଦୁଃଖ ଜର୍ଜରିତ । ରୋଗ, ଦାରିଦ୍ର୍ୟ, ଅପମାନ, ସ୍ୱଜନଙ୍କ ମୃତ୍ୟୁ ନିରାନନ୍ଦର କାରଣ ହୋଇପାରେ । ସେହି ସମସ୍ତ ବ୍ୟକ୍ତମାନଙ୍କୁ ପାବନ ବା ଉଦ୍ଧାର କରିବା ନିମିତ୍ତ ଶ୍ରୀଜଗନ୍ନାଥ ମନ୍ଦିରକୁ ନିଜର ନାମକୁ ପତିତପାବନ ଭାବରେ ଗ୍ରହଣ କରିଛନ୍ତି । ମୋଗଲମାନଙ୍କର ଶାସନ ପୂର୍ବରୁ ଶ୍ରୀଜଗନ୍ନାଥ ମନ୍ଦିରକୁ ସମସ୍ତ ଜାତି, ଧମ ଓ ବର୍ଣ୍ଣର ଲୋକମାନଙ୍କର ଅବାଧ ପ୍ରବେଶ ଥିଲା । ପରେ ବିଭିନ୍ନ ସାମାଜିକ ଓ ପ୍ରଶାସନିକ କାରଣ ଯୋଗୁଁ ଜଗନ୍ନାଥ ମନ୍ଦିରକୁ ପ୍ରବେଶ ନିମିତ୍ତ ହିନ୍ଦୁମାନଙ୍କ ଛଡା ଅନ୍ୟମାନଙ୍କ ଅନୁମତି ଦିଆଗଲାନାହିଁ। ଶ୍ରୀମନ୍ଦରର ଗର୍ଭ ଗୃହ ମଧ୍ୟରେ ରତ୍ନ ସିଂହାସନ ଉପରେ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ମାତାସୁଭଦ୍ରା ଓ ସୁଦର୍ଶନଙ୍କର ଦର୍ଶନ କେବଳ ଉଚ୍ଚବର୍ଗର ହିନ୍ଦୁମାନଙ୍କର ନିମିତ୍ତ ସୀମିତ ହୋଇଗଲା । ତେଣୁ ଅନେକ ସମାଲୋଚକ ଶ୍ରୀଜଗନ୍ନାଥଙ୍କୁ ଜଗତର ନାଥ ନ କହି ପୁରୀ ନାଥ ବା ହିନ୍ଦୁ ନାଥ ଭାବରେ ଅଭିହିତ କରିବା ପଛାଘୁଞ୍ଚା ଦେଲେ ନାହିଁ ।

ଏହି ସଙ୍କଟରୁ ଉଦ୍ଧାର ନିମିତ୍ତ ରଥଯାତ୍ରା, ଘୋଷଯାତ୍ରା ବା ପତିତପାବନ ଯାତ୍ରାର ସୃଷ୍ଟି । ଜଗତର ସମସ୍ତ ଧର୍ମର ବ୍ୟକ୍ତିଙ୍କୁ ରଥଯାତ୍ରା ସମୟରେ ମହାପ୍ରଭୁ ବଡଦାଣ୍ଡ, ରଥ ଓ ଗୁଣ୍ଡିଚା ମନ୍ଦିର ଦର୍ଶନ ଦେଇ ଜଗତରନାଥ ଓ ପତିତପାବନ ନାମର ମର୍ଯ୍ୟାଦାକୁ ରକ୍ଷା କରିଛନ୍ତି । କେବଳ ଦର୍ଶନ ନୁହେଁ ରଥଯାତ୍ରା ସମୟରେ ଏ ପୃଥିବୀର ଯେକୌଣସି ବ୍ୟକ୍ତି ଜଗନ୍ନାଥଙ୍କୁ ପହଣ୍ଡି ବିଜେ ସମୟରେ ଏବଂ ରଥ ଉପରେ ଆସୀନ ହୋଇଥିବା ବେଳେ ତାହାଙ୍କର ଅଙ୍ଗକୁ ସ୍ପର୍ଶ କରିପାରିବେ । ଏହା ହିଁ ଜଗନ୍ନାଥ ସଂସ୍କୃତିରେ ବିଶ୍ୱ ଭାତୃତ୍ୱ ଏବଂ ସର୍ବଧର୍ମ, ସମନ୍ୱୟର ଧାରା ।

ରଥଯାତ୍ରାକୁ ମାନବ ଜୀବନର ଯାତ୍ରା ସହିତ ତତ୍ତ୍ୱଦର୍ଶୀମାନେ ପ୍ରତିପାଦନ କରନ୍ତି । ପ୍ରତ୍ୟେକ ମାନବର ଶରୀର ଗୋଟିଏ ରଥ । ଏହି ଶରୀରରୂପୀ ରଥରେ ଆତ୍ମା ହେଉଛି ରଥୀ ପାଞ୍ଚ ମନ ଓ ପଚିଶି ପ୍ରକୃତି ହେଉଛି ସେହି ରଥକୁ ଟାଣୁଥିବା ଘୋଡା ସଦୃଶ । ବିବେକ ଘୋଡାମାନଙ୍କୁ ଶୃଙ୍ଖଳିତ କରିବା ନିମିତ୍ତ ଚାବୁକ ସଦୃଶ। କଠୋପନିଷଦରେ ଏହି ଭାବକୁ ବିସ୍ତୃତ ଭାବରେ ବର୍ଣ୍ଣନା କରାଯାଇଛି । ଅନ୍ୟ ଦୃଷ୍ଟିରୁ ବିଚାର କଲେ ପ୍ରତ୍ୟେକ ଦେହ ରୂପକ ରଥରେ ଆତ୍ମା ରୂପୀ ଶ୍ରୀଜଗନ୍ନାଥ ବିଜେ କରିଛନ୍ତି।

ପିଣ୍ଡ ବ୍ରହ୍ମାଣ୍ଡତତ୍ତ୍ୱ ବା ଶରୀର ଭେଦତତ୍ତ୍ୱ ଅନୁସାରେ ପ୍ରତ୍ୟେକ ମାନବ ଶରୀର ଏକ ପିଣ୍ଡ । ଜଗତ ବା ପିଣ୍ଡର ଲୀଳା କ୍ଷେତ୍ର ହେଉଛି ବ୍ରହ୍ମାଣ୍ଡ ଓ ତହିଁରେ ଶ୍ରୀଜଗନ୍ନାଥ ବ୍ରହ୍ମ ରୂପରେ ବିଦ୍ୟମାନ । ବ୍ରହ୍ମର ନିର୍ଦ୍ଦେଶ ଅନୁସାରେ ପିଣ୍ଡ ବ୍ରହ୍ମାଣ୍ଡରେ ଶରୀର ଧାରଣ କରିବା ପାଇଁ ବା ଜୀବିତ ରହିବା ପାଇଁ ସକ୍ଷମ ହୋଇଥାଏ । ଏହି ଗୂଢ ରହସ୍ୟ ତତ୍ତ୍ୱଜ୍ଞାନୀମାନେ ରଥଯାତ୍ରାରୁ ଶିକ୍ଷା କରନ୍ତି । ରଥଯାତ୍ରା ପରେ ଜଗନ୍ନାଥ ମହାପ୍ରଭୁ ରଥରୁ ଓହ୍ଲାଇଲା ପରେ ରଥର ଯେଭଳି ଭାବେ କୌଣସି ବିଶେଷତ୍ୱ ନଥାଏ ସେହି ଭାବରେ ପିଣ୍ଡରୁ ବା ଶରୀରରୁ ଆତ୍ମା ଚାଲିଗଲାପରେ ତାହା ଅଲୋଡା ତେଜ୍ୟ ହୋଇଥାଏ । ତେଣୁ ମାନବ ଶରୀର ଭୋଗୀ ନ ହୋଇ, ନିଜର ଇନ୍ଦ୍ରିୟ ଗୁଡିକ ଉପରେ ବିବେକ ଦ୍ୱାରା ଶୃଙ୍ଖଳା ଭାବ ରକ୍ଷା କରିବାକୁ ସମର୍ଥ ହେଲେ ଜୀବନକୁ ଧନ୍ୟ କରିବାରେ ସମର୍ଥ ହୋଇପାରନ୍ତା । ଏହି ଭାବକୁ ନେଇ ଓଡିଆ କବିମାନଙ୍କର ନିମ୍ନ ବ୍ୟାଖ୍ୟାକୁ ଅନୁଧ୍ୟାନ କଲେ ପିଣ୍ଡ ସ୍ୱରୂପ ରଥର ତାତ୍ପର୍ଯ୍ୟ ଅଧିକ ପ୍ରମାଣିତ ହୁଏ ।

୧. ପିଣ୍ଡରେ ନଥାଇ ଯାହା ବ୍ରହ୍ମାଣ୍ଡରେ ଦୃଶ୍ୟ ହୁଏ ନାହିଁ<br>
ଏଣୁ ରଥ ଶୁଧୀ ଜନେ ପିଣ୍ଡ ବ୍ରହ୍ମାଣ୍ଡକୁ ଏକ କରୁଥାଏ ।<br>
(ବ୍ରହ୍ମାଣ୍ଡ ଭୂଗୋଳ-ବଳରାମ ଦାସ)

୨. ଯାହା ଦେଖୁଛ ଏ ବ୍ରହ୍ମାଣ୍ଡେ, ସମସ୍ତ ଅଛି ରଥ ପିଣ୍ଡେ,<br>
ବ୍ରହ୍ମାଣ୍ଡେ ଯେତେକ ଭିଆଣ, ରଥରେ ନାହିଁ ଭିନ୍ନାଭିନ୍ନ ।<br>
(ଅମର କୋଷ ଗୀତା-ବଳରାମ ଦାସ)

୩. ବ୍ରହ୍ମାଣ୍ଡ ତତ୍ତ୍ୱ ଏ ରଥ ଅଟେ ପିଣ୍ଡ ତତ୍ତ୍ୱ,<br>
ପିଣ୍ଡରେ ବ୍ରହ୍ମାଣ୍ଡରେ ପିଣ୍ଡ ସ୍ଥିତ<br>
(ଛୟାଳିଶ ପଟଳ- ଅଚ୍ୟୁତାନନ୍ଦ ଦାସ)

ବୃହତ୍ତ ଭାବେ ଆଲୋଚନା କଲେ, ଶ୍ରୀଜଗନ୍ନାଥଙ୍କର ରଥଯାତ୍ରା ସର୍ବଧର୍ମ ସମନ୍ୱୟ ଓ ବିଶ୍ୱ ଭାତୃତ୍ୱ ଭାବ ପ୍ରଦାୟକ ଯାତ୍ରା । ତଥାକଥିତ ସଂକୀର୍ଣ୍ଣ ଧର୍ମୀୟ ଧାରାର ଉର୍ଦ୍ଧ୍ୱରେ ରଥଯାତ୍ରା ପାଳନର ମହତ୍ତ୍ୱ ରହୁଥିବାରୁ ବିଶ୍ୱର ବିଭିନ୍ନ ସହରରେ ପ୍ରତ୍ୟେକ ବର୍ଷ ଅଧିକ ଜଗନ୍ନାଥ ମନ୍ଦିର ନିର୍ମାଣ ଓ ରଥଯାତ୍ରା ପାଳନ ହେବା ଦୃଷ୍ଟିକୁ ଆସିଛି । ଏହି ଭାବକୁ ଅଧିକ ପ୍ରଚାର ଓ ପ୍ରସାର କଲେ ସମଗ୍ର ବିଶ୍ୱରେ ଶ୍ରୀଜଗନ୍ନାଥ ସଂସ୍କୃତିର ବୈଶିଷ୍ଟ୍ୟ ପ୍ରତିପାଦନ ହେବା ସହିତ ବିଶ୍ୱ ଭାତୃତ୍ୱ ଓ ସର୍ବଧର୍ମ ସମନ୍ୱୟ ଚେତନାର ବିକାଶ ହୋଇପାରିବ ।

ସଚିବ<br>
ପାରାଦ୍ୱୀପ ବନ୍ଦର





# ଶ୍ରୀଜଗନ୍ନାଥ ଓ ନୀଳଚକ୍ରେ ପତିତପାବନ ବାନା

ସୁରେଶ କୁମାର ପ୍ରଧାନ



ନୀଳକନ୍ଦରାନନ୍ଦ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ହିଁ ଅଖିଳ ବିଶ୍ୱବ୍ରହ୍ମାଣ୍ଡର ସର୍ବଜନ ବନ୍ଦ୍ୟ ସ୍ରଷ୍ଟା। ବାଞ୍ଛା କଳ୍ପତରୁ ଭକ୍ତର ସକଳ ଅଭୀଷ୍ଟ ପୂର୍ତ୍ତ୍ୟାର୍ଥେ ନଭଶ୍ଚୁମ୍ବୀ ନୀଳଚକ୍ରେ ପତିତପାବନ ବାନା ଉଡାଇ ଅଧମ, ଅକ୍ଷମ, ପାମର ଓ ପତିତଙ୍କୁ ଉଦ୍ଧାର କରି ପତିତପାବନ ନାମର ସାର୍ଥକତା ପ୍ରତିପାଦନ କରିଅଛନ୍ତି। ତେତ୍ରିଶକୋଟି ଦେବତାର ମଉଡ଼ମଣି ପ୍ରଭୁ ଶ୍ରୀଜଗନ୍ନାଥ ହିଁ ନୀଳାଦ୍ରି ବିହାରୀ। ତାଙ୍କ ନିବାସସ୍ଥଳୀ ହିଁ ନୀଳସିନ୍ଧୁତୀର ନୀଳାଚଳ ଓ ଶ୍ରୀହସ୍ତ ସୁଦର୍ଶନ ହିଁ ଶ୍ରୀମନ୍ଦିର ଚୂଡ଼ାରେ ସୁଶୋଭିତ ନୀଳଚକ୍ର। ନୀଳଚକ୍ରରେ ଫରଫର ହୋଇ ଉଡୁଥିବା ନେତ ହିଁ ପତିତପାବନ ବାନା ଯିଏ ପତିତଜନଙ୍କ ଭବଯାତନାକୁ ଘୁଞ୍ଚାଇ ଦେବା ପାଇଁ ସତେ ଅବା ହସ୍ତପ୍ରସାରଣ ମୁଦ୍ରାରେ ଅନାଇ ରହିଛି। ଏହାକୁ ଦେଖି ଭକ୍ତକବି ଗାଇ ଉଠିଛନ୍ତି –

''ନୀଳଚକ୍ରେ ହୋ ଦେଖ ଉଡୁଛି ବାନା
ପତିତପାବନ ବାନାଟି ଯାର ନାଁ ।

ପତିତମାନଙ୍କୁ ପାବନ କରିବା ପାଇଁ ପ୍ରଭୁ ଶ୍ରୀଜଗନ୍ନାଥ ଆଷାଢ଼ ମାସ ଶୁକ୍ଳପକ୍ଷ ପୁଣ୍ୟା ନକ୍ଷତ୍ରଯୁକ୍ତ ଦ୍ୱିତୀୟା ତିଥିରେ ବର୍ଷକୁ ଥରେ ରତ୍ନସିଂହାସନ ପରିତ୍ୟାଗ କରି ଓହ୍ଲାଇ ଆସନ୍ତି, ଯାହା ରଥଯାତ୍ରା ବା ପତିତପାବନ ଯାତ୍ରା ନାମରେ ସୁବିଦିତ। ଏହି ଅବସରରେ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଅଗଣିତ ଭକ୍ତ ଶ୍ରୀଅଙ୍ଗ ସ୍ପର୍ଶର ସୁଯୋଗ ପାଇ ନିଜକୁ ଧନ୍ୟ ମନେ କରନ୍ତି। କବି ମୁଖେ ପ୍ରକାଶ ପାଇଛି –

'କାଳିଆ କାହ୍ନୁ, ଆଉ ବିଳମ୍ବ କର କାହିଁକି ?
ବରଷକେ ଥରେ ବିଜୟ ରଥରେ
ପତିତ ତାରିବା ପାଇଁକି ।

ସେହିପରି 'ନୀଳାଦ୍ରି ମହୋଦୟଃ'ରେ ଉଲ୍ଲେଖ ଅଛି–

'ପତିତୋଦ୍ଧାରଣାର୍ଥଂ ବୈ ଦୀନାନାଂ ହିତ କାରଣାତ୍।
କୁର୍ଯ୍ୟାତ୍ ପ୍ରତ୍ୟବ୍ଦମତୁଳଂ ଗୁଣ୍ଡିଚାଖ୍ୟଂ ମହୋତ୍ସବମ୍ ।।

(୧୬/୧୭୧)

(ଅର୍ଥାତ୍ ପାପୀ, ତପି, ପାମର, ପତିତ, ଦୀନଦୁଃଖୀ ସକଳ ଆର୍ତ୍ତଙ୍କୁ ଦର୍ଶନ ଦେଇ ଧନ୍ୟ କରୁଥିବା ଯାତ୍ରା ହିଁ ପତିତପାବନ ଯାତ୍ରା ବା 'ଶ୍ରୀଗୁଣ୍ଡିଚା')।

ଏ ସମ୍ବନ୍ଧରେ 'ବାମଦେବ ସଂହିତା'ରେ କୁହାଯାଇଛି –

'ପତିତାନାଂ ପାବନ ସ୍ତ୍ୱଂ ମ୍ଳେଚ୍ଛାଦୀନାଂ ଚ ମୋକ୍ଷଣମ୍।
କୁରୁଦେବ କଥିତ୍ୱାତୁ ଇନ୍ଦ୍ରଦ୍ୟୁମ୍ନ ପୁରଃସରଃ ।

(୧୬/୮)

(ହେ ଦେବ ! ଅଧମ ଅକ୍ଷମମାନଙ୍କୁ ଉଦ୍ଧାର କରିବା ପାଇଁ ଆପଣ ଆଗମନ କରି ଆମ୍ଭ ପ୍ରାର୍ଥନା ଗ୍ରହଣ କରନ୍ତୁ। ଏହା ରାଜା ଇନ୍ଦ୍ରଦ୍ୟୁମ୍ନ ମହାପ୍ରଭୁଙ୍କୁ ଜଣାଇଥିଲେ।

ଶ୍ରୀମନ୍ଦିର ଚୂଡ଼ାରେ ସୁଶୋଭିତ ନୀଳଚକ୍ର ମହାକାଳର ପ୍ରତୀକ ଶ୍ରୀସୁଦର୍ଶନ ରୂପେ ରତ୍ନସିଂହାସନରେ ଚତୁର୍ଦ୍ଧାମୂର୍ତ୍ତିଙ୍କ ସହ ବିଜେ କରିଅଛନ୍ତି। ଶ୍ରେଷ୍ଠ ସେବକ ସୁଦର୍ଶନଙ୍କୁ ବାଦ ଦେଲେ ମହାପ୍ରଭୁଙ୍କ ଐଶ୍ୱର୍ଯ୍ୟ ଓ ମାଧୁର୍ଯ୍ୟ ଲିଳା ଅସମ୍ପୂର୍ଣ୍ଣ। ଗୁରୁଭକ୍ତି ଗୀତାରେ ବଳରାମ ଦାସ ସୁଦର୍ଶନଙ୍କୁ ଅଥର୍ବବେଦର ମାନ୍ୟତା ଦେଇ ମହିମାନ୍ୱିତ କରିଅଛନ୍ତି–

'ବଳଭଦ୍ର ଯେ ସାମ ହୋଇ । ଋକ୍ ଯେ ସୁଭଦ୍ରା ଅଟଇ ।
ଯର୍ଜୁଃବେଦ ଶ୍ରୀଜଗନ୍ନାଥ । ଅର୍ଥବ ସୁଦର୍ଶନ ପାର୍ଥ ।

ସେହିପରି ମହାପୁରୁଷ ଅଚ୍ୟୁତାନନ୍ଦ ଦାସ 'ଶୂନ୍ୟସଂହିତା'ରେ ଚତୁର୍ଦ୍ଧାମୂର୍ତ୍ତିଙ୍କ କଥା ଉଲ୍ଲେଖ କରିଛନ୍ତି–

ଜଗନ୍ନାଥ ବଳଭଦ୍ର ସୁଭଦ୍ରା ସୁଦର୍ଶନ
ମହାମନ୍ତ୍ର ମନ୍ତ୍ରରାଜ ରୂପେ ଦାରୁବ୍ରହ୍ମ
ଐଶ୍ୱର୍ଯ୍ୟ ମାଧୁର୍ଯ୍ୟ ଘେନି ସିଂହାସନ ପରେ
ବିଜୟେ କରିଛନ୍ତି ଚତୁର୍ଦ୍ଧା ରୂପରେ ।

ଶ୍ରୀଜଗନ୍ନାଥଙ୍କ ଶ୍ରେଷ୍ଠ ଆୟୁଧ ସୁଦର୍ଶନ ଶ୍ରୀମନ୍ଦିରର ରକ୍ଷାକବଚ (ଉଡ଼ାହ) ରୂପେ ମୁକ୍ତି ପ୍ରଦାୟକ, ଦର୍ଶନ ମାତ୍ରକେ ସର୍ବପାତକ



ଦୂରୀଭୂତ ହୋଇଥାଏ । ଦାନବଙ୍କ ନିଧନ ପାଇଁ ସର୍ବଦେବଙ୍କ ମିଳିତ ତେଜପୁଞ୍ଜରୁ ସୃଷ୍ଟି ହୋଇଥିବା ସୁଦର୍ଶନଙ୍କ କଥା ବାମନ ପୁରାଣର ୧୯ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି । ସେହିପରି କପିଳ ସଂହିତା ଅନୁସାରେ ଭଗବାନ ତାଙ୍କର ସୁଦର୍ଶନ ଚକ୍ର ନିର୍ମାଣ କରି ଭଗବାନ ଶ୍ରୀବିଷ୍ଣୁଙ୍କୁ ପ୍ରଦାନ କରିଥିଲେ 'ଭକ୍ତପ୍ରିୟ ନମସ୍ତୁଭ୍ୟ ବିଷ୍ଣୁଚକ୍ର ପ୍ରଦାୟକ/ତ୍ରିପୁରଘ୍ନ ନମସ୍ତେସ୍ତୁ ବାଣାସୁର ବରପ୍ରଦ' ।

ନୀଳାଦ୍ରି ବିହାରୀଙ୍କ ଆୟୁଧ ରୂପେ ସେବା ନିରତ ଚକ୍ରରାଜ ସୁଦର୍ଶନ ଅହଂଭାବ ପ୍ରକଟ କରି ପ୍ରଭୁଙ୍କ ଅଭିଶାପରେ ସ୍ତମ୍ଭାକାରରେ ଶ୍ରୀମନ୍ଦିର ଚୂଡ଼ାରେ ଶୋଭାପାଇଲେ । ଏ ସମ୍ପର୍କରେ 'ଅଗ୍ନିପୁରାଣ'ରେ ବର୍ଣ୍ଣନା ରହିଛି –

'ପ୍ରଭୁଙ୍କ ଆଜ୍ଞାରେ ଚକ୍ରଶୂନ୍ୟକୁ ଗମଇ
ଦେଉଳ ଚୂଡ଼ାରେ ବସେ ମୂର୍ତ୍ତିମନ୍ତ ହୋଇ
ନୀଳକନ୍ଦର ଦେଉଳରେ ନୀଳଚକ୍ର ଟାଣ
ସଂସାରରେ ଖ୍ୟାତନାମ ନୀଳଚକ୍ର ଜାଣ' ।

ଶ୍ରୀମନ୍ଦିର ଶିଖରରେ ନୀଳଚକ୍ର ରୂପୀ ସୁଦର୍ଶନଙ୍କୁ ଦୂରରୁ ଦର୍ଶନ କଲେ ଶ୍ରୀଜଗନ୍ନାଥଙ୍କ ଦର୍ଶନର ପୁଣ୍ୟଫଳ ଲାଭ ହୋଇଥାଏ । ପ୍ରାତଃ କାଳରେ ଶ୍ୱେତବର୍ଣ୍ଣଯୁକ୍ତ ଓ ମଧ୍ୟାହ୍ନରେ ଗାଢ଼ ନୀଳବର୍ଣ୍ଣ ଧାରଣ କରୁଥିବା ନୀଳଚକ୍ରର ଉଚ୍ଚତା ଏଗାର ଫୁଟ ଆଠଇଞ୍ଚ । ବ୍ୟାସ ସାତଫୁଟ ନଅ ଇଞ୍ଚ । ଅଷ୍ଟଧାତୁ ସୁନା, ରୂପା, ତମ୍ବା, ଲୁହା, ଦସ୍ତା, ସୀସା, ପାରଦ ଓ ରଙ୍ଗରେ ନିର୍ମିତ ନୀଳଚକ୍ରରେ ଏକ ଫୁଟ ଦଶଇଞ୍ଚ ଉଚ୍ଚତା ବିଶିଷ୍ଟ ଆଠଖଣ୍ଡ ଅର ସଂଯୁକ୍ତ ହୋଇଛି । ଏହି ନୀଳଚକ୍ରର ସେବକମାନେ ଗରୁଡ଼ ସେବକ ରୂପେ ପରିଚିତ ।

ଜଗନ୍ନାଥ ଧର୍ମ ଓ ସଂସ୍କୃତିରେ ନୀଳଚକ୍ର ଓ ପତିତପାବନ ବାନା ମହାପ୍ରଭୁଙ୍କ ପ୍ରତିଭୂ ରୂପେ ସର୍ବଜନସ୍ୱୀକୃତ । ଯଥାର୍ଥରେ ପତିତପାବନ ବାନା ହେଉଛି ଶ୍ରୀଜଗନ୍ନାଥଙ୍କ ସ୍ୱରୂପ । ତେଣୁ ଜ୍ଞାନୀ ଗୁଣୀ, ଭକ୍ତ ଓ ତତ୍ତ୍ୱଦର୍ଶୀମାନେ ପତିତପାବନ ବାନାକୁ 'ଆରତ ନାଶନବାନା' 'ଅବଧୂତ ବାନା' 'ଭକ୍ତ ବତ୍ସଳ ବାନା' ଓ 'ପାପୀ–ପାବନ ପଞ୍ଝକ' ଆଦି ବହୁ ନାମରେ ନାମିତ କରିଅଛନ୍ତି । ଶ୍ରୀମନ୍ଦିର ପ୍ରବେଶ ପୂର୍ବରୁ ଉଡୁଥିବା ନେତକୁ ସର୍ବପ୍ରଥମେ ଭକ୍ତିପୂତ ଚିତ୍ତରେ ପ୍ରଣାମ ଜଣାଇବାକୁ ହୋଇଥାଏ । କୌଣସି କାରଣରୁ ଯଦି ନୀଳଚକ୍ରରେ ବାନା ନ ଥାଏ ତେବେ ଶ୍ରୀବିଗ୍ରହଙ୍କ ନିକଟରେ ଭୋଗ ଅର୍ପଣ କରିବା ନିଷେଧ ହୋଇଥାଏ । ତେଣୁ ନୀଳଚକ୍ର ଉପରେ ପ୍ରାୟ ୪୦ଫୁଟ ଉଚ୍ଚର ବାଉଁଶରେ ପରମ୍ପରା ଅନୁଯାୟୀ ଧଳା, ନାଲି ଓ ହଳଦିଆ ରଂଗର ତ୍ରିଭୁଜାକୃତି ନେତ ବନ୍ଧା ଯାଇଥାଏ । ନେତ ମଧ୍ୟରେ ହିନ୍ଦୁଧର୍ମ ଓ ଚେତନାର ପ୍ରତୀକ ଓଁ ର ଚନ୍ଦ୍ରବିନ୍ଦୁ ରହିବା ନିୟମ ରହିଛି । ଏହି ଚନ୍ଦ୍ରବିନ୍ଦୁକୁ ତନ୍ତ୍ର ଆଧାରରେ ବିରାଜଙ୍କ ନାଦ ଓ ପୁରୁଷୋତ୍ତମଙ୍କ ବିନ୍ଦୁ ଭାବେ ଗ୍ରହଣ କରାଯାଇ ମହିମାନ୍ୱିତ କରାଯାଇଅଛି । ବୈଷ୍ଣବ ମତରେ ଶ୍ରୀଲକ୍ଷ୍ମୀ ଓ ନାରାୟଣ ବା ରାଧା ଓ କୃଷ୍ଣଙ୍କୁ ନାଦ ଓ ବିନ୍ଦୁ ରୂପେ ମଧ୍ୟ ଗ୍ରହଣ କରାଯାଇ ତାତ୍ତ୍ୱିକ ବ୍ୟାଖ୍ୟା କରାଯାଇଅଛି । ଯଥାର୍ଥରେ ଏହି ଚନ୍ଦ୍ରବିନ୍ଦୁ ହିଁ ବିନ୍ଦୁଠାରୁ ମହାବିନ୍ଦୁଙ୍କ ପହଞ୍ଚିବାର କ୍ରମଗତିର ପ୍ରତୀକାତ୍ମକ ଅଭିବ୍ୟକ୍ତି । ତତ୍ତ୍ୱଦର୍ଶୀ ଋଷି, ମୁନି ସିଦ୍ଧ ଓ ବୃଦ୍ଧ ପତିତପାବନ ବାନାକୁ ମୁକ୍ତିର ପ୍ରତୀକ ଚିହ୍ନ ରୂପେ ବିଶ୍ୱାସ କରିଛନ୍ତି । ଏହି ନେତ ତିନିପୁରକୁ ପ୍ରତୀୟମାନ ହୋଇ ସକଳ ମୁକ୍ତିକାମୀଙ୍କୁ ଅଭୟ ମୁଦ୍ରାରେ ହସ୍ତପ୍ରସାରୀ ଆହ୍ୱାନ କରୁଛି । ଭକ୍ତ ମୁଖେ ଉଚ୍ଚାରିତ ହୋଇଛି– ''ଚଉବାହାକୁ ଚାହାଁ ଉର୍ଦ୍ଧ୍ୱକୁ, ଉଡୁଛି ପତାକା ତିନି ପୁରକୁ ।

ଭକ୍ତମାନେ ମାନସିକ ପୂରଣ ନିମିତ୍ତ ନୀଳଚକ୍ରରେ ନେତ ବାନ୍ଧିବାକୁ ଆଗ୍ରହୀ ହୋଇଥାନ୍ତି । ମାନସିକ ଅନୁଯାୟୀ ନେତ ବନ୍ଧା ହୋଇଥାଏ । ସବୁଠାରୁ ବଡ଼ବାନାର ନାମ ହେଉଛି 'ପାଦୁକଖିଆ ବାନା' । ଏହାକୁ ଭିତର ପୋଖରିଆର ପାଦୁକ କୁଣ୍ଡରେ ବୁଡ଼ାଇ ନୀଳଚକ୍ରରେ ବନ୍ଧାଯାଏ । ନୀଳଚକ୍ରର ନେତ ନୀଳସିନ୍ଧୁ (ମହୋଦଧି) ପଟକୁ ଉଡ଼ିବାର ନିୟମ ରହିଛି । ଅନେକ ଶ୍ରଦ୍ଧାଳୁ ଏହି ନେତକୁ ରକ୍ଷାକବଚ ଭାବେ ଘେର କରି ବେକରେ ଧାରଣ କରିଥାନ୍ତି । ଯଦି ଦୈବାତ୍ ନେତରେ ଗ୍ରନ୍ଥି ସୃଷ୍ଟିହୁଏ, ତେବେ ଏହି ଗ୍ରନ୍ଥିସିକ୍ତ ଜଳକୁ ପାନକଲେ ଗର୍ଭକଷ୍ଟ ଦୂରହୁଏ ବୋଲି ସାଧାରଣରେ ବିଶ୍ୱାସ ରହିଛି ।

ମୋଟ ଉପରେ କହିଲେ ନୀଳଚକ୍ରେ ଶୋଭିତ ବାନା କେବଳ ବାନା ନୁହେଁ, ଏହାହିଁ ବଳିଆର ଭୁଜଙ୍କ ଶ୍ରୀହସ୍ତ, ଯାହା ପାତକୀମାନଙ୍କୁ ମୁକ୍ତି ପ୍ରଦାନ କରିବାକୁ ହାତଠାରି ଡାକିଥାଏ ।

ଖୁଣ୍ଟୁଣୀ, ଆଠଗଡ
ଜି–କଟକ



# ଜଗବନ୍ଧୁ ହେ ଗୋସାଇଁ... !

ଇଂଜିନିୟର ରଘୁନାଥ ପାତ୍ର



ସାଲବେଗ ! ଜାଣେ ତବ ହୃଦୟ ବେଦନା
ଲାଲବେଗ ପୁତ୍ର ବୋଲି ଦୁଃଖ ତବ ମନେ
ବହୁ ଭକ୍ତି ଗୀତିକାରେ ପ୍ରକାଶିଛ ଦୁଃଖ
ତୁମ ପରି ହରି ଭକ୍ତ ଦେଖିନି ମୁଁ ଜଣେ ! ।।୧।।
ଏ ଠାକୁର ନାମ ପରା ଜଗତର ନାଥ
ଜାତି ଧର୍ମ ନିର୍ବିଶେଷେ ପାଆନ୍ତି ସେ ଭଲ
ବଡ଼ ଦାଣ୍ଡେ ସମସ୍ତଙ୍କୁ ଦିଅନ୍ତି ଦର୍ଶନ
ସାମାଜିକ ସଂକୀର୍ଣ୍ଣତା ଉର୍ଦ୍ଧ୍ୱରେ ଈଶ୍ୱର ।।୨।।
ଅପଲକ ନୟନରେ ସମନେତ୍ର ପାତ
ପାତର ଅନ୍ତର ତିଳେ ନାହିଁ, ସାଲବେଗ !
କୋଳେଇ ନେବାକୁ, ଭୁଜ ଅଛନ୍ତି ବିସ୍ତାରି
ଦେଖନ୍ତି କେବଳ ଜୀବ ହୃଦୟ ଆବେଗ ।।୩।।
ହିନ୍ଦୁ, ମୁସ୍‌ଲିମ୍, ଖ୍ରୀଷ୍ଟିଆନ୍ ସର୍ବେ ଏକ
ଏକ ପରମାତ୍ମାଙ୍କର ଅମୃତ ସନ୍ତାନ
ସକଳ ଜୀବ ହୃଦୟେ ଗୋବିନ୍ଦ ନିବାସ
ଭେଦଭାବ ସୃଷ୍ଟି କରେ କଳୁଷିତ ମନ ।।୪।।
ଆତ୍ମା ତ ପରମାତ୍ମାଙ୍କ ଅଂଶ ତୁମେ ଜାଣ
ଆତ୍ମାର ଏ ସଂକୀର୍ଣ୍ଣତା ଆସିବ କିପରି
ଯେ ଈଶ୍ୱର, ସେହି ଆଲ୍ଲା, ସେହି ଭଗବାନ
ନ ବୁଝି କଳହେ ରତ ଦିବସ ଶର୍ବରୀ ।।୫।।
ବୃନ୍ଦାବନ ଯାତ୍ରା ଆଗୁ କରିଲ ପ୍ରାର୍ଥନା
ତିନି ଦାରୁ କୃପା କଲେ ଯିବି ବୃନ୍ଦାବନ
ଦାରୁବ୍ରହ୍ମ କୃପାବଳେ ଯାତ୍ରା ହେଲା ଶୁଭ
ରାଇଶ୍ୟାମ ଦରଶନେ ପୁଲକିତ ମନ ।।୬।।
ଶ୍ରୀକ୍ଷେତ୍ରକୁ ବାହୁଡୁଛ ପଦବ୍ରଜେ ଭକ୍ତ
ନନ୍ଦିଘୋଷେ ଜଗନ୍ନାଥ ଦରଶନ ପାଇଁ,
ସାତଶ ପଚାଶ କୋଶ ଚାଲିବା ଦୁରୂହ
ଡାକିଲ ଆକୁଳେ ଜଗନ୍ନାଥ ହେ ଗୋସାଇଁ ! ।।୭।।
ଚାଲି ନପାରଇ ପ୍ରଭୁ ! ପ୍ରହଞ୍ଚିବା ଯାଏଁ
ନନ୍ଦିଘୋଷେ ଥିବ ରହି ନୀଳାଚଳ ଇନ୍ଦୁ ।
ନ ଚଳିଲା ରଥଚକ, ରହିଲେ ଅଟକି
ଚାରିଦିନ ଚାରିରାତି ପଦ୍ମାଳୟା ବନ୍ଧୁ ! ।।୮।।
ଏତେ ଦୂରରୁ ଶୁଭିଲା ଡାକ ତବ ଭକ୍ତ !
ପାଖରେ ଡାକିଲେ କେତେ ନଶୁଣନ୍ତି କର୍ଣ୍ଣେ
ଭକ୍ତ ଡାକରେ ବ୍ୟାକୁଳ ହେଲେ ଚିନ୍ତାମଣି
ରହିଗଲେ ବଡ଼ଦାଣ୍ଡେ, ନଚଳିଲେ କ୍ଷଣେ ।।୯।।
ଶବ୍ଦ ବ୍ରହ୍ମ ପ୍ରଣବ ଓ ପରଂବ୍ରହ୍ମ ଦୁହେଁ
ନୁହନ୍ତି ପୃଥକ, ଏହା କୋବିଦଙ୍କ ମତ
ଜଣକୁ ଛାଡିଲେ ଆନ ଚଳିବା ଦୁଷ୍କର
ତବ ପ୍ରଣବ ନିସ୍ୱନେ ଅଟକିଲେ ନାଥ !।।୧୦।।
ଶ୍ରୀକ୍ଷେତ୍ର ଫେରିବା ଯାଏଁ ପଦବ୍ରଜେ ଭକ୍ତ
ପ୍ରତୀକ୍ଷା କରିଲେ ଆହା ତ୍ରିଭୁବନ ସାଇଁ
ଦରଶନ କଲା ପରେ ରଥ ଗଲା ଗଡି
ଚାଲିଲେ ଆଗରେ ଭକ୍ତ, ଖଂଜଣି ବଜାଇ ।।୧୧।।
ଦାଣ୍ଡର ଭିକାରୀ ସାଲବେଗ ପଛେ ପଛେ
ଐଶ୍ୱର୍ଯ୍ୟ ପୁରୁଷୋତ୍ତମ କରିଲେ ଗମନ
ଭାବର ଅଧୀନ ହରି,ଭାବଶୂନ୍ୟ ହୃଦ
ଜାଣିବ କିପରି,ହରି ଭକ୍ତର ଅଧୀନ !।।୧୨।।
ସମର୍ପିତ ଜୀବ ପାଶେ ପରମାତ୍ମା ବଶ
ଭକ୍ତ ବିଶ୍ୱାସ ଭକ୍ତିରେ ବନ୍ଧା ଭାବଗ୍ରାହୀ
ଆଜି ମଧ୍ୟ ପୂର୍ବ ସ୍ମୃତି ଅନୁସରି କ୍ଷଣେ
ଅଟକି ଯାଆନ୍ତି ପ୍ରଭୁ, ଭକ୍ତ କଥା ଧ୍ୟାୟି ।।୧୩।।
ପଠାଣ ସନ୍ତାନ ତୁମେ ହୋଇପାର ଭକ୍ତ
ହିନ୍ଦୁ ଜଗତର ତୁମେ ପ୍ରାତଃ ସ୍ମରଣୀୟ
ତମ ନାମ, ତବ ଗାଥା ଆସିଲେ ସ୍ମରଣ
ମନ ମୁକୁରେ ଅଂକିତ ପ୍ରଭୁ କୃପାମୟ ।।୧୪।।
ଭଗବାନ ତ ସବୁରି, ଭେଦ ଭାବ ଶୂନ୍ୟ
ଜାତି ବର୍ଣ୍ଣ ବିଦ୍ୱେଷର ଉର୍ଦ୍ଧ୍ୱରେ ଗୋବିନ୍ଦ
ଭାବକୁ ନିକଟ ହରି, ଅଭାବରେ ଦୂରେ
ଜୀବ ହୃଦୟ ଦେଖନ୍ତି, ଭକ୍ତ ହୃଦାନନ୍ଦ ।।୧୫।।
ଜଗନ୍ନାଥ ହେ ଗୋସାଇଁ ! ଶୁଣିଲେ ଶ୍ରବଣେ
ପାଦ ନଚଳଇ ମୋର , ଚିତ୍ତ ହୁଏ ସ୍ଥିର
ବିଷୟ ବାସନା କାହିଁ ଚାଲିଯାଏ ଦୂରେ
କଠିନ ପାଷାଣ ହୃଦେ ଭକ୍ତିର ସଞ୍ଚାର ।।୧୬।।
କବି ରଘୁ ହୃଦ ଲଭେ ଅପୂର୍ବ ପ୍ରଶାନ୍ତି
ଧନ୍ୟ ସାଲବେଗ ତବ ଜଗବନ୍ଧୁ ଭକ୍ତି !!! ।।୧୭।।



ବୃନ୍ଦାବନ ଧାମ
ଲୋକନାଥ ରୋଡ
ପାଟଣାହାଟ ସାହି ଛକ, ପୁରୀ-୭୫୨୦୦୧



# ଉତ୍କଳର ପ୍ରଭୁ ଜଗତ ବିଖ୍ୟାତ

କାଞ୍ଚନ ମିଶ୍ର

ଉତ୍କଳର ପ୍ରଭୁ ଜଗତ ବିଖ୍ୟାତ
ଲୀଳାମୟ ଜଗନ୍ନାଥ
କେଉଁ କାଳୁ ବିଜେ ଶ୍ରୀକ୍ଷେତ୍ର ତୁମର
ଶ୍ରେଷ୍ଠ ଧାମ ବିବେଚିତ ।
ରାଜା ଇନ୍ଦ୍ରଦ୍ୟୁମ୍ନ ପାଇ ସ୍ୱପ୍ନାଦେଶ
ତିନିମୂର୍ତ୍ତି ଭିଆଇଲେ
ବଡ଼ ଦେଉଳରେ ନାନା ବିଧିମତେ
ତୁମକୁ ସ୍ଥାପନା କଲେ
ବଡ଼ଦାଣ୍ଡେ ବିଜେ ପାଉଅଛ ପୂଜା
ନୀଳ କନ୍ଦରରେ ରହି
ଷାଠିଏ ପଉଟି ଭୋଗ ନିତିଦିନ
ଖାଉଅଛ ଖୁସି ହୋଇ ।
କଳାଧଳା ଘୋଡ଼ା ଚଢ଼ି ବେନିଭାଇ
ଯୁଦ୍ଧ ଅଭିମୁଖେ ଯାଇ
ଶ୍ରୀକ୍ଷେତ୍ରର ରାଜା ପୁରୁଷୋତ୍ତମଙ୍କୁ
କାଞ୍ଚି ଯୁଦ୍ଧେ କଲ ଜୟୀ ।
ତୁମରି ଆଲୋକେ ଆଲୋକିତ ହୁଏ
ବଣ, ବିଲ, ମାଟି, ପାଣି
ଲଭନ୍ତି ଆନନ୍ଦ ସକଳ ସଜୀବ
ଧରାପୃଷ୍ଠେ ଯେତେ ପ୍ରାଣୀ ।
ବଡ଼ ଦେଉଳର ରତ୍ନ ସିଂହାସନେ
ତୁମେତ ବଡ ଠାକୁର



ସର୍ବଜନ ମୁଖେ ଶ୍ରେଷ୍ଠ ଦିଅଁ ରୂପେ
ରହିଛି ତୁମ ଆଦର ।
ରଥାରୂଢ଼ ପ୍ରଭୁ ବାମନ ଦର୍ଶନ
ଲାଭକରେ ଯେଉଁ ଜନ
ପୁନର୍ଜନ୍ମ କେବେ ହୁଏ ନାହିଁ ତା'ର
ଅଟଇ ସେ ଭାଗ୍ୟବାନ ।
ପୁରୀ ସ୍ୱର୍ଗଦ୍ୱାର ଶ୍ମଶାନ ତୁମର
ମୁକତିର ତୀର୍ଥସ୍ଥାନ
ମୃତ୍ୟୁପରେ ଯହିଁ ଚିତା ବସର୍ଜନ
ସ୍ୱର୍ଗପୁରେ ଅବସ୍ଥାନ
ଭକତ ତୁମର ସକଳେ ସମାନ
ନାହିଁ ଭେଦ ପରାପର
ବିଭିନ୍ନ ଧର୍ମର ମାନବ ତୁମକୁ
ମଣୁଛନ୍ତି ଆପଣାର
ସବୁଠାରୁ ବଡ ଉତ୍କଳ ଠାକୁର
ତୁମେ ପ୍ରିୟ ଜଗତର
ତୁମ ବିନା ନିଃସ୍ୱ ଅଟେ ଏହି ବିଶ୍ୱ
ତୁମେ ପୂର୍ଣ୍ଣ ଅବତାର ।

୧୦୧୧, ଜୟଦୁର୍ଗା ନଗର
ବମିଖାଲ, ଭୁବନେଶ୍ୱର

# ଜଗତ ଠାକୁର

କୃଷ୍ଣ ମିଶ୍ର

ସ୍ନେହ ପ୍ରେମରେ ହେଉ କି ବାଧବାଧକତାରେ ହେଉ
ତତେ କେହି କେବେ ଦୁଃଖ ଯାଚିବାର ଅପଚେଷ୍ଟା କରେନି
ତୁ ତ ସ୍ରଷ୍ଟା ଏତେ ବଡ଼ ସାହସ ଏ ସୃଷ୍ଟିରେ କାହାର କାହିଁ ?
ଦୁଃଖ କିନ୍ତୁ ତୋ ପ୍ରେମରେ ପଡ଼ି, ତୁ ଶତ୍ରୁ ହ ପଛେ,
ସୁଡ଼ଙ୍ଗ ବାଟେ ତୋ ଶିବିରକୁ ଗୋପନରେ ଯାଏ, ତୁ ବା ତାକୁ
ଯାହା, ଖାଲି ହାତରେ ଫେରେଇ ଦିଅନ୍ତୁ, ସୁଖ ବାଣ୍ଟି ବାଣ୍ଟି
ତୋ ଠେଇଁ ଯେଉଁ ଶୂନ୍ୟସ୍ଥାନ ସୃଷ୍ଟି ହୁଏ ତାକୁ ପୂରଣ କରିବାକୁ
ଏତିକି କ'ଣ ଆହୁରି ଦୁଃଖ ଲୋଡ଼ା ହୁଏ ଏବଂ
ପୃଥିବୀରେ ତିନି ଭାଗ ଜଳ ଏକ ଭାଗ ସ୍ଥଳ ଭଳି ସାରା ସଂସାରରେ
ତିନିଭାଗ ଦୁଃଖ ଏକଭାଗ ମାତ୍ର ସୁଖକୁ ଧାରଣ କରି
ଅନୁପାତରେ ତୁ କଳାଠାକୁର ବୋଲାଉ ।

ଯୋତ, ଅଲଣାହାଟ, ଜଗତସିଂହପୁର
ପିନ୍-୭୫୪୧୦୭

# ଏଇଠି ରହିବି ବସି

ଚନ୍ଦ୍ରଶେଖର ପଣ୍ଡା



ହଟିଆ ଠାକୁର ଶିରୀକ୍ଷେତ୍ରେ ଭଲା  ହାଟ ଲଗାଇଛି ବସି
କିଣା ବିକା କେତେ କରନ୍ତି ପାତକ  ପାତକୀ ସେ ହାଟେ ଆସି (୧)
ପତିତପାବନ ପତିତପାବନ  ନୀଳଚକ୍ରେ ହସି ହସି
ଉଡେ ଫରଫର ଡାକେ ଦେଇ ଠାର  ଆସ ପାପ ଦେବି ଧ୍ୱଂସି (୨)
ବାଇଶି ପାହାଚେ ଗଡେ କେ ତର୍ପଣ  କରେ ଜଳେ ଦେଇ ରାଶି
ମୁକ୍ତି ଲଭିବାକୁ ଗେଫେ କେ ଅବଢା  ହୋଇଥାଉ ଯେତେ ବାସି (୩)
ସ୍ତିରୀ, ଶିଶୁ ହତ୍ୟା ପାପ କିଏ ବିକେ  ଦାନ କରି ଧନ ରାଶି
ଗୋବଧ ପାତକ କିଏବା ଛଡ଼ାଏ  ଶିରୁ କାଢି କେଶରାଶି (୪)
ଜନ୍ମ ଜନ୍ମାନ୍ତର ପାପକାର ଦୂର  ମୁକତି ମଣ୍ଡପେ ବସି
ଧରମ କେ କିଣେ ଦୁଖୀ ରଙ୍କି ପତ୍ରେ  ଅବଢା ଡାଲି ପରଶି (୫)
ଛପନ ଭୋଗକୁ କିଏବା ସେବଇ  ବନ୍ଧୁ ପରିଜନେ ମିଶି
ଟଙ୍କ ତୋରାଣୀରେ ବଳଇ କା ମନ  କିଏ ବା ଛଡ଼ା ତୁଳସୀ (୬)
ହେ ଦୁଃଖୀ ସଂଖାଳୀ କରି ମୁଁ ଗଣ୍ଠିଲି  ଆଣିଛି ମୋ ପାପ ରାଶି
ଜଣା ବା ଅଜଣା ପଣେ ଯା ଅର୍ଜିଛି  ବିକି ଦେବି ଏଠି ବସି (୭)
ହାଟକିଣା ବିକା ସରେ ନାହିଁ ଏଠି  ଚାଲିଥାଏ ଦିବା ନିଶି
ସରିଗଲେ ବିକା ଗୋବର୍ଦ୍ଧନ ଟେକା  ଏଇଠି ରହିବି ବସି (୮)
ଆହେ ରଙ୍କନିଧି ପୂରିଲେ ଅବଧି  କରୁଣା ହେବ ଏତିକି
ଶିରୀ କ୍ଷେତ୍ରେ ଥିବି ଆଖି ମୁଁ ବୁଜିବି  ଉଡିଯିବ ପ୍ରାଣ ପକ୍ଷୀ(୯)

କ୍ୱାର୍ଟର ନଂ-ଟୁ.ଆର.ବି. ୪୨
ରୋଡ-୬, ଇଉନିଟ୍-୯, ଭୁବନେଶ୍ୱର



# ଦେଖ ସେ ଚକାନୟନ

ଶକୁନ୍ତଳା ଆଚାର୍ଯ୍ୟ



ଚକା ନୟନକୁ, ଦେଖରେ ମାନସ, ଚକାନୟନକୁ ଚାହଁ।
ଚଞ୍ଚଳା– ବରଦା, କର ଶମ୍ପା ଶୋଭା, ନବଘନ ବାରିବାହ ।୧।
ଚରଣ ଯୁଗଳ, ରମାକର ଲାଗି, ଅନନ୍ତ ଶୟନ ଶେଯ।
ଚମକି ଉଠଇ, ପ୍ରାଣ ସଙ୍ଗେ ତନୁ, ହରଇ ବାଳାର୍କ ତେଜ ।୨।
ଚନ୍ଦନ ଚର୍ଚ୍ଚିତ, ନୀଳ କଳେବର ଭୂଷା–ଭୂଷଣର ଶୋଭା।
ଚମ୍ପକ ମଲ୍ଲୀକା, ଶତଦଳ ମାଳ, ଗଳାରେ କି ମନ ଲୋଭା ।୩।
ଚହଳ ଦାଣ୍ଡରେ, ବିଜେ ନନ୍ଦିଘୋଷେ, କେଡାକଇ ଦୀନବନ୍ଧୁ
ଚକ୍ରପାଣି ହର, ସଂସାର ଯାତନା, ତିକ୍ତ ପ୍ରାଣେ ଦେଇ ମଧୁ ।୪।
ଚଉକତି ଘୂରି, ଆସନ୍ତି ଭକତେ, ଚାହିଁ ତୋ ଲାବଣ୍ୟ ମୁଖ।
ଚଞ୍ଚରୀକ ସମ, ଜଣାଏ ଛାମୁରେ, ଯା'ର ଦାନ ସୁଖ, ଦୁଃଖ ।୫।
ଚତୁରଙ୍ଗ ମାଗେ, ଚତୁର ପଣେକେ, ଦେଇ ଥାଅ ସଦା ଜାଣି।
ଚକ୍ରବାକ ଆର୍ତ୍ତ, ହରି ନିଅ ଯେବେ, ଚାତକକୁ ଦେଇ ପାଣି ।୬।
ଚନ୍ଦ୍ରବଂଶ ପାଇଁ, ଇତିହାସ ଲେଖା, ଚାଣକ୍ୟ କୂଟନୀତିରେ,
ଚପଳା ପରାୟ, ତୁମେ ଏକାନାଥ, ପ୍ରବେଶ ନର କତିରେ ।୭।
ଚନ୍ଦ୍ରମା ସ୍ୱର୍ଣ୍ଣଦୀ, ମସ୍ତକେ ଧାରଣ, କରି ଚିନ୍ତନ୍ତି ଛାମୁରେ ।
ଚନ୍ଦ୍ର ମୌଳ ତପ, ଘେନି ବାକୁ ନାଥ, ଜାଗ୍ରତ ହିଁ ତିନିପୁରେ ।୮।
ଚମତ୍କାର ତବ, ଲୀଳା ପ୍ରକଟିଛି, ଯୁଗ–ଯୁଗ ଯୁଗାନ୍ତରେ ।
ଚକା ନୟନକୁ, ଚାହିଁ ଦେଲେ ଯାର, ସରବ ସନ୍ତାପ ହରେ ।୯।
ଚରଣେ ତୋହର, ସଦା ନମସ୍କାର, 'ହେ ବିଶ୍ୱ ମୁକୁଟ ମଣି ।
ଚରିତାର୍ଥ ଜନ୍ମ, ଉତ୍କଳ ଭୁବନେ, ନୁହେଁ ଯେ' ସମ୍ପଦ ଗଣି ।୧୦।

ଖାକିମଠ ସାହି, ପୁରୀ–୨

